ମହୁଲ ଝରିଲା ବେଳ
ଅନ୍ନଦା ପ୍ରସାଦ ରକ୍ଷିତ

ପ୍ରକାଶକ
ଲାର୍କ ବୁକ୍ସ
ସୁବର୍ଣ୍ଣରେଖା ଚ୍ୟାମ୍ବର୍ସ
ଭୌମ ନଗର
ଭୁବନେଶ୍ୱର - ୭୫୧ ୦୦୧

ପ୍ରଥମ ପ୍ରକାଶ
୨୦୦୧

ପ୍ରଚ୍ଛଦ
ଅସୀମ ବସୁ

ଟାଇପ ସେଟିଂ ଓ ମୁଦ୍ରଣ
ସେକ୍‌ଟ୍ରମ୍ ପ୍ରିଣ୍ଟର୍ସ
୭୧ ଏ, ଫରେଷ୍ଟ ପାର୍କ୍
ଭୁବନେଶ୍ୱର - ୭୫୧୦୦୯

ପଞ୍ଚସ୍ତରୀ ଟଙ୍କା ମାତ୍ର

Mahula Jharila Bela

Written by
Annada Prasad Rakshit

Published by
LARK BOOKS
Subarnarekha Chambers
Bhauma Nagar,
Bhubaneswar -751 001

First Edition
2001

Cover
Asim Basu

Type Setting & Printing
Spectrum Printers
71A, Forest Park
Bhubaneswar-751009

Rupees Seventy Five only

ISBN 81-7375-088-2

# ମୁଖବନ୍ଧ

ସ୍ରଷ୍ଟାର ସାର୍ଥକ ସୃଷ୍ଟି ତାକୁ ଅମର କରି ରଖେ । ଜୀବନ ମୃତ୍ୟୁକୁ ଏକାକାର କରିପାରେ । ପ୍ରତିଭାଧରର ପ୍ରତିଭାକୁ ଯେତେ ହତ୍ୟା କରାଗଲେ ବି ସହଜରେ ତା'ର ମୃତ୍ୟୁ ହୁଏ ନାହିଁ ।

କବି ଓ କଥାକାର ଅନ୍ନଦା ପ୍ରସାଦ ରକ୍ଷିତ୍ ଜଣେ ଆଦର୍ଶ ଶିକ୍ଷକ ଭାବେ କର୍ତ୍ତବ୍ୟରତ ଥିବା ସଂଗେ ସଂଗେ ସମଗ୍ର ଜୀବନକାଳ ସାହିତ୍ୟ ସାଧନାରେ ସମୟ ବିତାଇଥିଲେ । ତାଙ୍କର ସାଧନାର ଫଳ ସ୍ୱରୂପ ତାଙ୍କ ଲେଖନୀରୁ ଝରି ପଡ଼ିଥିଲା ବଜ୍ର ଓ ବିଦ୍ୟୁତ୍, କେତେ କଣ୍ଟା କେତେ ଫୁଲ, ଅଶାନ୍ତ ପୃଥିବୀ, ନିଲମ ବିବି, କର୍ଣ୍ଣ କୁନ୍ତୀ ଅଳକା, ନୀଳ ଆକାଶ ଓ ସବୁଜ ଧରଣୀ, ଅନୁରାଗିଣୀ, ମରୁତୃଷ୍ଣା ଆଦି ରାଶି ରାଶି ଅମର କବିତା ଓ କାହାଣୀ । କିନ୍ତୁ ଦୁଃଖର କଥା ଅନ୍ନଦା ପ୍ରସାଦ ତାଙ୍କର ସାରସ୍ୱତ ସାଧନା ପାଇଁ ଯେଭଳି ଭାବେ ସମ୍ମାନିତ ହେବା କଥା ହୋଇପାରି ନାହାନ୍ତି । ଓଡ଼ିଶା ସାହିତ୍ୟ ଏକାଡେମୀ ମଧ୍ୟ ତାଙ୍କ ଜୀବଦ୍ଦଶାରେ ପୁରସ୍କାର ବା ସମ୍ବର୍ଦ୍ଧନାଟିଏ ତାଙ୍କୁ ଦେଇପାରି ନାହିଁ । କିନ୍ତୁ ତାଙ୍କ ସଂଭ୍ରମଶୀଳ ରଚନାର ପରିଚୟ ତାଙ୍କୁ ଏକ ସ୍ୱତନ୍ତ୍ର ଆସନରେ ସ୍ଥାନିତ କରାଏ ।

ଅନ୍ନଦା ପ୍ରସାଦଙ୍କ କବିତାର ଛନ୍ଦ ଓ ଲାବଣ୍ୟ ଯେପରି ମନଛୁଆଁ, କବିତାର ଭାବକଳ୍ପ ସେହିପରି ହୃଦୟସ୍ପର୍ଶୀ । ତାଙ୍କ କବିତାରୁ ଚାରି ଧାଡ଼ି ଗାଇଦେଲେ ଯେ କୌଣସି ବ୍ୟକ୍ତିର ପ୍ରାଣରେ ଅଫୁରନ୍ତ ଉଲ୍ଲାସର ପ୍ରବାହ ଖେଳିଯାଏ ।

କବିତାର ସିଦ୍ଧି ସହିତ ଜଣେ ପ୍ରବୀଣ କଥା ଶିଳ୍ପୀ ଭାବରେ ସ୍ୱର୍ଗତ ରକ୍ଷିତ୍ ନିଜର ସୃଷ୍ଟି ସମ୍ଭାର ଭିତରେ ନିଜର ପରିଚୟ ପ୍ରତିପାଦିତ କରିପାରିଛନ୍ତି । ତାଙ୍କ ଗଳ୍ପଗୁଡ଼ିକର ଚରିତ୍ର ଏଇ ଆମ ସମାଜର ତଥାକଥିତ ସାଧାରଣ ଚରିତ୍ର । ତାଙ୍କ କାହାଣୀର କଥା ବସ୍ତୁ ସାଧାରଣ ଜନଜୀବନର ଘଟଣାବହୁଳ ଜୀବନଚର୍ଯ୍ୟା । ତାଙ୍କ ଉପନ୍ୟାସର କାହାଣୀ ଓ ଚରିତ୍ର ପାଠକ ମନରେ ଇନ୍ଦ୍ରଜାଲ ସୃଷ୍ଟି କରେ । ତାଙ୍କ କଥାସୃଷ୍ଟିରେ ସେ କେତେବେଳେ ଘାସ ଓ ମାଟିକୁ ଦେଖିଛନ୍ତି ତ ପୁଣି କେତେବେଳେ ଆକାଶର ନୀଳିମାକୁ ଚାହିଁ ସ୍ୱପ୍ନିଳ ହୋଇଉଠିଛନ୍ତି । ତାଙ୍କ କାହାଣୀରେ ସେ କେତେବେଳେ ରାଜା ଜମିଦାରଙ୍କ ପ୍ରାଚୁର୍ଯ୍ୟମୟ ଜୀବନର

ପରିଚର୍ଯ୍ୟା ଭିତରେ ରଙ୍ଗୀନ୍ ଚିତ୍ର ଆଙ୍କିଛନ୍ତି ତ ପୁଣି କେତେବେଳେ ସାଧାରଣ ମଣିଷର ବେଦନା ଜର୍ଜରିତ ହା'ହୁତାଶର ଚିତ୍ର ପ୍ରଦାନ କରିଛନ୍ତି ।

'ମହୁଲ ଝରିଲା ବେଳ' ସ୍ୱର୍ଗତ ରକ୍ଷିତ୍‌ଙ୍କର ଏକ ପ୍ରଭାବଶାଳୀ ମନୋଜ୍ଞ ଗଳ୍ପ ସଂକଳନ । ଏଥିରେ ସର୍ବମୋଟ ୨୦ ଟି ଗଳ୍ପ ପତ୍ରସ୍ଥ ହୋଇଅଛି । ଗଳ୍ପଗୁଡ଼ିକର ଆବେଦନ ସ୍ୱତନ୍ତ୍ର ଏବଂ ସେଗୁଡ଼ିକ ଭିନ୍ନ ରସଚର୍ଯ୍ୟା ଯୁକ୍ତ ।

ଓଡ଼ିଶାର ଅନ୍ୟତମ ସଂଭ୍ରାନ୍ତ ପ୍ରକାଶନ ସଂସ୍ଥା ଇାର୍କ ବୁକ୍‌ସ୍, ଭୁବନେଶ୍ୱର ଉକ୍ତ ଗଳ୍ପ ସଂକଳନଟିର ପ୍ରକାଶନ ଦାୟିତ୍ୱ ବହନ କରିଥିବାରୁ ଏହି ଅବସରରେ ମୁଁ ସେହି ସମ୍ମାନନୀୟ ପ୍ରକାଶକ ଶ୍ରୀଯୁକ୍ତ ମହେନ୍ଦ୍ର ମିଶ୍ରଙ୍କୁ ଅନ୍ନଦା ରକ୍ଷିତ୍ ସ୍ମୃତି ସଂସଦ, ଭୁବନେଶ୍ୱର ପକ୍ଷରୁ କୃତଜ୍ଞତା ଜ୍ଞାପନ କରୁଛି ।

ଓଡ଼ିଶାର ଅନ୍ୟତମ ଖ୍ୟାତନାମା ଚିତ୍ରଶିଳ୍ପୀ ଶ୍ରୀଯୁକ୍ତ ଅସୀମ ବସୁ ଉକ୍ତ ପୁସ୍ତକର ପ୍ରଚ୍ଛଦ ଅଙ୍କନ କରିଥିବାରୁ ତାଙ୍କୁ ଏହି ଅବସରରେ ସାଧୁବାଦ୍ ଜଣାଉଛି ।

ଉପେନ୍ଦ୍ର ପ୍ରସାଦ ନାୟକ
ସଭାପତି
ଅନ୍ନଦା ରକ୍ଷିତ୍ ସ୍ମୃତି ସଂସଦ
ଭୁବନେଶ୍ୱର

# ସୂଚୀ

# ମହୁଲ ଝରିଲାବେଳ

ଏଇଟା ମହୁଲ ଅମଳ ସମୟ । ସକାଳୁ ସକାଳୁ ଗୋଦାମ ଘରେ ବସି ଡବାରୁ ପାନ ଖଣ୍ଡେ ବାହାର କରି ଚୋବେଇବାକୁ ଲାଗିଲେ ନୀଳମଣି ଗୌନ୍ତିଆ । ମନରେ ଦୁଶ୍ଚିନ୍ତା । ମହୁଲ ଧରି ଏଯାଏଁ ମାଇକିନିଆମାନେ ପହଞ୍ଚିଲେ ନାହିଁ । ହଠାତ୍ ନଜର ପଡ଼ିଗଲା - ଗୋହିରୀ ବାଣ୍ଡରେ ମହନି ଆସୁଛି । ତା' ଆଖି ନୁହେଁ ତ, ମହୁଲି ନିଶାରେ ସତେ ଯେମିତି ଦି'ଟା ଦରମୁଡ଼ା ମନ୍ଦାର । ହାତରେ କୁରାଡ଼ି । ସକାଳର ଖରାରେ ଚକ୍‌ଚକ୍ କରୁଥିଲା ଲୁହା କୁରାଡ଼ିଟା । ମହନି ଆଗେଇ ଆସୁଥିଲା । ମହନିକୁ ଗୌନ୍ତିଆ ରାତିରେ ପଠେଇଥିଲା ଜଙ୍ଗଲକୁ, ଚୋରାକାଠ ଆଣିବା ପାଇଁ । ମହନି କହିଲା, 'ବାଡ଼ିପଟେ କାଠ ରଖିଦେଲି ଗଉନ୍ତିଆ । ହେଲେ, ଝରି ଗଲା କୁଆଡ଼େ ? ସେ ତ ପଲାରେ ନାହିଁ ।'

ଛନକା ପଶିଗଲା ନୀଳମଣି ଗୌନ୍ତିଆର ମନଭିତରେ । ନ ଆସୁଣୁ ମହନି ପଚାରୁଛି ଝରି କଥା । ରାତି ପାହାନ୍ତାବେଳେ ଝରିର ପଲାରେ ଯେଉଁ ଘଟଣାଟା ଘଟିଗଲା, ତା'ରି ଛବି ଏଯାଏଁ ଗୌନ୍ତିଆର ମନ ଭିତରେ ଭଉଁରି ଖେଳୁଥିଲା । ଏବେ ମନରେ ସନ୍ଦେହର କଳାମେଘ ଘୋଟିଆସିଲା । ଜଙ୍ଗଲରୁ ଫେରିଲା ବାଟରେ ଝରି ସଙ୍ଗେ ଯଦି ମହନି କିସ୍‌କୁର ଦେଖାହୋଇଯାଇଥାଏ ଏବଂ ସେ ଟୋକୀ ଯଦି ତା' ମରଦ ଆଗରେ ସବୁକଥା ଫିଟେଇ ଦେଇଥାଏ, ତେବେ ?

ତଥାପି ବାଘ ଛାଲ ପିନ୍ଧା ଗଧ ଭଳି ହସିବାକୁ ଚେଷ୍ଟା କରି ଗୌନ୍ତିଆ କହିଲା, 'ତୁ ତ ଜାଣିଚୁ, ଏଇଟା ମହୁଲ ସାଉଣ୍ଟା ବେଳ । ନିତି ଝରି ବଣକୁ ଯାଏ । ଏଯାଏଁ କେହି ମହୁଲ ଧରି ଫେରିଲେ ନାହିଁ । ମଦଭାଟିବାଲା ସାହାବାବୁ ମହୁଲ ପାଇଁ ବସି ବସି ଗଲା । ଟିକିଏ ଦେଖିଲୁ, ଝରି ହେରିକା ଫେରୁଥିବେ ।'

ରାତି ଉଜାଗର । ଗଛ କାଟି କାଠ ଚୋରେଇବାରେ ହାଡ଼ଭଙ୍ଗା ମେହେନତ । ମହନି ଭାବିଲା, ଝରି ଥିଲେ, ଗଣ୍ଡେ ବାସି ପଖାଳ ବାଢ଼ି ଦେଇଥାନ୍ତା; ଗୌନ୍ତିଆ ଓଲଟି ବରାଦ୍ କରୁଛି, ଝରିକୁ ଖୋଜିବାକୁ ।

ରାଗରେ ଜଳି ଉଠିଲା ମୋହନ କିସ୍‌କୁ ।

କହିଲା, 'ଖରା ଆସି ମୁଣ୍ଡ ଉପରେ ହେଲାଣି । ଝରିର ଦେଖାନାହିଁ । ମତେ ଜଙ୍ଗଲକୁ ପଠାଇ ତୁ କାହିଁକି ଝରିକୁ....' ଏଇ କଥା ଉଚ୍ଚାରଣ କରୁ କରୁ ମହନି ଆଗେଇ

ଗଲା ଗୌନ୍ତିଆ ପାଖକୁ । ତା'ର ହାତର କୁରାଢ଼ିଟା ଖରାରେ ଚିକ୍ ଚିକ୍ କରୁଥିଲା ।

ଚମକି ଉଠିଲେ ନୀଳମଣି ଗୌନ୍ତିଆ । ଭାବିଲେ, ତାଙ୍କର ଆଶଙ୍କା ମିଛ ନୁହେଁ । ଝରି ହୁଏତ ସବୁକଥା କହିଦେଇଚି । ଏଣୁ ମହନି ରାଗି ନିଆଁ ।

ପରିସ୍ଥିତିକୁ ସେ କିପରି ମୁକାବିଲା କରିବେ, ସେଇକଥା ଭାବୁଥାନ୍ତି; ଏତିକିବେଳେ ଗୋହିରୀ ଦାଣ୍ଡରେ ଜିପ୍‌ଟା ଅଟକିଲା ଏବଂ ଫରେଷ୍ଟ ରେଞ୍ଜର ସାମଲବାବୁ ଡାକ ପକେଇଲେ: ନୀଳମଣିବାବୁ, ଓ ନୀଳମଣି... ।

ଗୌନ୍ତିଆ ସ୍ୱସ୍ତିର ନିଃଶ୍ୱାସ ମାଇଲେ । ବିପଦବେଳେ ରେଞ୍ଜର ସାମଲବାବୁ ପହଞ୍ଚିଗଲେ । ନୀଳମଣି ଆଜ୍ଞା, ଆଜ୍ଞା କହି ଧାଇଁଗଲେ ଜିପ୍ ପାଖକୁ । କିନ୍ତୁ ପର ମୁହୂର୍ତ୍ତରେ ତାଙ୍କର ମନେ ପଡ଼ିଗଲା । ମହନି ଜରିଆରେ କାଠଚୋରେଇବା ଖବର ବୋଧହୁଏ ରେଞ୍ଜର ସାଇବ ଜାଣି ପକେଇଚନ୍ତି । ଏଣୁ ସିଧାସଳଖ ସେ ଆସି ଏଠି ହାଜର ।

'ନୀଳମଣିବାବୁ, ମହନି କିସ୍‌କୁ ପରା ଆପଣଙ୍କ ପାଖରେ ରହେ ?'

ନୀଳମଣି ଗୌନ୍ତିଆ ସାମଲବାବୁଙ୍କୁ କ'ଣ ଜବାବ୍ ଦେବେ, ଭାବୁଛନ୍ତି । କିନ୍ତୁ ନିଜର ନାଆଁଟା ଶୁଣି ମୋହନ କିସ୍‌କୁ ଆଗେଇ ଆସି ଜୁହାର ହେଲା ରେଞ୍ଜର ସାଇବଙ୍କୁ ।

ସାମଲବାବୁ କହିଲେ, 'ଆରେ ଏଇ ତ ମହନି । ଯା'ହେଉ, ମହନି ସଙ୍ଗେ ଦେଖାହୋଇଗଲା, ଭଲ ହେଲା । ମୁଁ ମହନିକୁ ଖୋଜୁଥିଲି, ସେଥର ମୋର ଗୋଲାପ ବଗିଚାଟା ସେ ଖତସାର ଦେଇ ସୁନ୍ଦର ଭାବେ ସଜାଡ଼ି ଦେଇଥିଲା । ସେ କହୁଥିଲା, ତା' ଜମିରେ ଏବର୍ଷ ମହୁଲ ଗଛ ଲଗେଇବ ।'

ଗୌନ୍ତିଆ ସାମଲବାବୁଙ୍କ କଥା ଶୁଣି ଟିକିଏ ଆଶ୍ୱସ୍ତ ହେଲେ । ଯା'ହେଉ, କାଠଚୋରି କଥା ନୁହେଁ ।

ସାମଲବାବୁ କହୁଥିଲେ, 'ହଁ ଗୌନ୍ତିଆ, ମୁଁ ଆସିଲାବେଳେ ଆପଣଙ୍କ ବହୁଲ ବଗିଚା ଦେଖିଆସିଲି । ବର୍ଷ ଦୁଇଟା ଭିତରେ ଭାରି ସୁନ୍ଦର ବଢ଼ିଛି ଗଛଗୁଡ଼ିକ । ମହନି ଗଛର ଭଲ ଯତ୍ନ ନେଉଛି ନିଶ୍ଚୟ ।'

'ମହନି ସେ ଗଛ ଲଗେଇଛି । ସେ ଆଉ ତା'ଭାରିଯା ଗଛର ଯତ୍ନ ନିଅନ୍ତି ।' କହିଲେ ନୀଳମଣି ଗୌନ୍ତିଆ ।

'ହଁ ମହନିର କାମ ଭଲ । ହଇରେ ମହନି, ଏ ବର୍ଷ ତୁ ମହୁଲ ଗଛ ଲଗେଇବୁ ପରା ? ଚାଲ ତୋ'ଜମି ଦେଖିବା । ଗଛ ଲଗେଇବା ଆଗରୁ ଜମି କେମିତି ସଜିଳ କରିଛୁ, ଦେଖିବା ।'

'ହଜୁର, ତୁ ଯେମିତି କହିଥିଲା, ସେମିତି କରିଛି । ଗାତ ସବୁ ଖୋଳି ଦେଇ, ନଡ଼ାରେ ପୋଡ଼ିଦେଲି । ଖତମାଟି ଗାତରେ ଢାଳିଦେଲି ।'

'ହଁ ଚାଲ ଦେଖିବା । ମୋଠୁଁ ଲେଖା ନେଇଯିବୁ । ଆମ ଫାର୍ମରୁ ଚାଲ ଶହେଟା ଆଣି ଲଗେଇଦବୁ ।'

ରେଞ୍ଜର ସାଇବର କଥା ଶୁଣି ମହନିର ଖୁସି କହିଲେ ନ ସରେ । ସେ ଚାହିଁଲା ଗୌନ୍ତିଆ ମୁହଁକୁ । ଗୌନ୍ତିଆ ଅନୁମତି ଦେଲେ ସେ ରେଞ୍ଜରଙ୍କ ସଙ୍ଗେ ଯିବ ।

ନୀଳମଣି ଗୌନ୍ତିଆଙ୍କ ଆଖିର ଭ୍ରୂ କୁଞ୍ଚୁକୁଞ୍ଚିଆ ଦିଶିଲା । ସେ ଦେଖିଲେ, ନଈପାଣି କୁଆଡ଼ୁକୁ ବହିବାକୁ ବସିଲାଣି । ଆଉ ସାଲକୁ ମହନି ଆଉ ଗୋତି ଖଟିବ ନାହିଁ । ଦଶବର୍ଷ କଷ୍ଟ ପୂରିଯିବ । ସେ ନିଜ ଜମିରେ ମହୁଲ ଗଛ ପୋତିବା ସର୍ବନାଶ । ତା'ପରେ ସେମାନେ ନିଜ ଜମିରେ ଧାନ ବୁଣିବେ, ଗହମ ଚାଷ କରିବେ । ଆଉ ତା'ପରେ ନୀଳମଣି ଗୌନ୍ତିଆକୁ ପଚାରେ କିଏ ! ଗୌନ୍ତିଆର ପାଚିଲା ଧାନ ଭୂଇଁରେ ଶୋଇଯିବ । ଗହମ ଝରି ଝରି ମାଟିରେ ଗଛ ହେବ ।ଅମଲ କରିବାକୁ ଲୋକ ମିଳିବେ ନାହିଁ । ଆମ୍ବ ଗଛରେ ଆମ୍ବ, ମହୁଲ ଗଛରେ ଟୋଲ ଝୁଲୁଥିବ । ତୋଳିବାକୁ ଲୋକ ମିଳିବେ ନାହିଁ । ଆଖି ଆଗରେ ଉଆଁସ ରାତି ଘନେଇ ଆସିଲା ନୀଳମଣି ଗୌନ୍ତିଆଙ୍କର ।

ରାଗରେ ସେ ଜଳିଉଠିଲେ । ମହନିକି ପ୍ରଶ୍ନ କଲେ, 'ହଇବେ ମହନି, ମୁଁ କ'ଣ ଶୁଣୁଛି, ତୋ' ଜମିରେ ମହୁଲ ଗଛ ଲଗେଇବୁ ?'

'ହଁ ଆଜ୍ଞା, ଝରି ମନକରିଚି । କେଇଟା ମହୁଲ ଗଛ ଲଗେଇଦେବି ।'

'ହଇବେ, ତୁ ଲଗେଇବୁ ମହୁଲଗଛ ? ତୋ' ବାପ, ଗୋସବାପ ସାତ ପୁରୁଷରେ କେହି ମହୁଲଗଛ ଲଗେଇଥିଲେ ? ସେମାନେ କାହିଁକି ଲଗେଇ ନାହାନ୍ତି, ସେକଥା ତୋତେ ଜଣାଥିବ ।'

'ଜଣାଅଛି ଗୌନ୍ତିଆ । ହେଲେ ସେକଥା ମାନୁଛି କିଏ ? ମୁଁ ଆଶ୍ରମ ଇସ୍କୁଲରେ ପଢୁଥିଲି । ସେ ବଗିଚାରେ ସବୁ କିସମର ଗଛ ଲଗେଇଛି ।'

'ସ୍କୁଲରେ, ରେଞ୍ଜର ବଙ୍ଗଳାରେ, କି ପର ବାଡ଼ିରେ ଲଗାଇବା ଆଉ ନିଜ ଜମିରେ ମହୁଲଗଛ ଲଗାଇବା ଏକା କଥା ନୁହେଁ । ବୁଝିଲୁ ?'

ମହନି ଚାହିଁଲା ଗୌନ୍ତିଆ ମୁହଁକୁ । ସେ ବୁଝିପାରିଲାନି କଥାଟା । ଇସ୍କୁଲରେ, ଗୌନ୍ତିଆର ଜମିରେ ଲଗେଇଲେ ଦୋଷ ନାହିଁ । ନିଜ ଜମିରେ ଲଗେଇଲେ ଅଶୁଭ ହେବ ? ବଂଶ ବୁଡ଼ିଯିବ ?

ମହନିର ବାପ କଣ୍ଟ କରିଥିଲା, ନୀଳମଣି ଗୌନ୍ତିଆ ପାଖରେ ଦଶବର୍ଷ ଗୋତି ଖଟିବ । ଗୌନ୍ତିଆର ମହୁଲ ଗଛରୁ ଟୋଲ ଝଡୁଝଡୁ ଗଛରୁ ପଡ଼ି ସେ ଜୀବନ ଦେଲା । ବାପ ବଦଳରେ ମହନି ଆଉ ତା' ଭାରିଯା ଝରି ଦିହେଁ ଖଟୁଛନ୍ତି । ଏଇ ଚୈତଟା ସରିଗଲେ, କଣ୍ଟ ପୂରିଯିବ । ତା'ପରେ ମହନି ମୁକୁଳି ଯିବ । ଏକଥା ସେ ସାମଲବାବୁଙ୍କୁ କହିଥିଲା । ସାମଲବାବୁ ଆସିଛି, ଜମି ଦେଖିବ, ଗଛ ଦେବ । ମହନି ଚାହିଁଲା ଗୌନ୍ତିଆ ମୁହଁକୁ । ଗୌନ୍ତିଆ ଚାହିଁଲେ ସାମଲବାବୁଙ୍କ ମୁହଁକୁ । ସାମଲବାବୁ କହିଲେ, 'କ'ଣ ହେଲା ନୀଳମଣିବାବୁ ? ମହନି ମହୁଲ ଗଛ ଲଗେଇବାରେ କ୍ଷତି କ'ଣ ? ଆପଣ ରାଗୁଛନ୍ତି କାହିଁକି ?'

'ସାମଲବାବୁ, ଆପଣ ଏଥିରେ ମୁଣ୍ଡ ପୂରାନ୍ତୁ ନାହିଁ । ଆପଣ ଏ ଅଞ୍ଚଳରେ ନୂଆଲୋକ । ସେଇ ମହନିକି ପଚାରୁନାହାନ୍ତି, ତା' ବାପ, ଗୋସାବାପ, କାହିଁକି ମହୁଲଗଛ ଲଗେଇ ନାହାନ୍ତି ?'

'ଲୋକେ କହନ୍ତି, ମହୁଲ ଗଛ ଲଗେଇବା ଅଶୁଭ । ବଡ଼ପୁଅ ମରିଯିବ ।' କହିଲେ ସାମଲବାବୁ ।

'ଶୁଣନ୍ତୁ ସାମଲବାବୁ, ତଥାପି ମହନି କହୁଛି ମହୁଲ ଗଛ ଲଗେଇବ ।'

'କିନ୍ତୁ, ନୀଳମଣିବାବୁ ଏକଥାର ମୂଲ୍ୟ କ'ଣ ? ଏସବୁ ଅନ୍ଧ-ବିଶ୍ୱାସ, କୁସଂସ୍କାର କେତେଦିନ ରହିବ ? ମହୁଲ ଗଛରୁ ମହୁଲ ମିଳୁଛି, ତେଲ ମିଳୁଛି, ଡାଳ ମିଳୁଛି । ଏହା ଅର୍ଥକାରୀ ଗଛ । ସରକାର ସେଥିପାଇଁ ଏଗଛ କାଟିବାକୁ ନିଷେଧ କରିଛନ୍ତି ।'

'ରେଞ୍ଜର ସାହେବ, ଏଇଟା ଅନ୍ଧବିଶ୍ୱାସ ନୁହେଁ କି କୁ-ସଂସ୍କାର ନୁହେଁ । ଅନେ କିଭେଗଲା ଲୋକ ଏ ଗାଁରେ ଅଛନ୍ତି ।' ଗୌନ୍ତିଆ କହିଲେ ।

ଏତିକିବେଳେ ଦାଣ୍ଡରେ ଗୋଳମାଳ ଶୁଭିଲା । ମହୁଲ ଟୋକେଇ ମୁଣ୍ଡରେ ଧରି ମାଇକିନିଆମାନେ ଆସୁଥିଲେ । ମହନି ବ୍ୟସ୍ତ ହୋଇ ଖୋଜିବାକୁ ଲାଗିଲା ଝରିକୁ । ରେଞ୍ଜରବାବୁ ଦୟାକରି ଆସିଛି, ଜମି ଦେଖିବ, ଗଛ ଦବ । ଏ ଖବରଟା ଝରିକୁ ଦବାକୁ ହବ । କିନ୍ତୁ, ଝରି କାହିଁ ? ବରଂ ସେ ମାଇକିନିଆମାନେ ଝରି ନାଆଁ ଧରି କ'ଣ ସବୁ କହୁଛନ୍ତି ? ଝରି ଭାଲୁ ହାବୁଡ଼ରେ ପଡ଼ିଥିଲା ?

'ହଁ, ଝରି ଭାଲୁ ହାବୁଡ଼ରେ ପଡ଼ିଥିଲା । ହେଲେ, ସେ ଚୋଟେ ମାରିଛି, ତା' ଟାଙ୍ଗିଆରେ । ଟାଙ୍ଗିଆ ଚୋଟ ଖାଇ ଭାଲୁଟା ପଳେଇଲା । ଭାଲୁଟା ରାମ୍ପୁଡ଼ା ରାମ୍ପୁଡ଼ି କରି ଝରିକି ନହୁନୁହାଣ କରିଦେଇଚି ।' କହିଲା ଜଣେ ମାଇକିନିଆ ।

ମହନି ଦେଖିଲା, ଖଟିଆରେ ପକେଇ ଲୋକେ ଝରିକୁ ବୋହି ଆଣୁଛନ୍ତି । ନୀଳମଣି ଗୌନ୍ତିଆ ଧାଇଁଗଲା ଝରି ପାଖକୁ । କହିଲା, 'ଆଲୋ ଝରି, ତୋର କ'ଣ

ହେଲା ? ଗଲାବେଳେ ତୋତେ ମୁଁ କହି ନଥିଲି ? ଏଇଟା ମହୁଲ ଝରିଲା ବେଳ । ଜଙ୍ଗଲରେ ଭାଲୁ ମାତିଛନ୍ତି - ଟାଙ୍ଗିଆଟାଏ ଧରିଥିବୁ । ଟାଙ୍ଗିଆଟା ଧରିଥିଲୁ ବୋଲି ଆଜି ଜୀବନରେ ରକ୍ଷା ପାଇଗଲୁ କହ ।'

ଇଏ ଗୌନ୍ତିଆ ମନର ସହାନୁଭୂତି ନୁହେଁ, ତା'ମନରେ ସେଇ ଆଶଙ୍କାର ଭୂତ । କାଳେ ଝରି ମରଦକୁ କହିଦେବ ରାତିପାହାନ୍ତାର ଘଟଣାଟା । ନିଜେ ହାଜର ହେଲେ ଝରିର ମୁହଁ ଆପାତତଃ ବନ୍ଦ ହୋଇଯିବ, ସେଥିପାଇଁ .. ।

ଗୌନ୍ତିଆକୁ ଦେଖି, ଝରି ଘୃଣାରେ ମୁହଁ ବୁଲେଇନେଲା । ଛି ଛି, ଏମିତି ଲୋକର ମୁହଁ ଦେଖିଲେ ଖରାପ । ସକାଳୁ ଯାରି ମୁହଁ ଚାହିଁଥିଲା ଝରି ।

ଝରିର ଦୂରବସ୍ଥା ଦେଖି ମହନିର ଭେଳା ବୁଡ଼ିଗଲା ସତେ । ଏବେ ସେ କ'ଣ କରିବ, କିଛି ବୁଝିପାରିଲା ନାହିଁ । ଯେଉଁ ଗଉନ୍ତିଆ କବଳରୁ ନିଜେ ମୁକୁଳିବ ବୋଲି ବିଚାରିଥିଲା, ଏବେ ତା'ରି ପାଖରୁ ଋଣ କରଜ କରିବାକୁ ପଡ଼ିବ । ଗୋତି ଖଟିଲା ଲୋକର ଭାଗ୍ୟ ଭଲ ହୁଏନି ।

ସାମଲବାବୁ କହିଲେ, 'ବ୍ୟସ୍ତ ହେବାର କିଛି ନାହିଁରେ ମହନି । ଝରିର ଅବସ୍ଥା ସେମିତି କିଛି ଗୁରୁତର ହେଇନି । ଯାଠୁଁ ମାରାତ୍ମକ ଭାଲୁକାମୁଡ଼ା ରୋଗୀ ଭଲ ହେଉଛନ୍ତି । ଝରିକୁ ଧରି ଜିପ୍‌ରେ ବସ । ସହରର ଡାକ୍ତରଖାନାକୁ ଘେନିଯିବା । ଚିକିତ୍ସା କଲେ ଝରି ଭଲ ହେଇଯିବ ।'

ଯୁବତୀ ଝରି ଭଳି ଟୋକୀ ପାଇଁ ସାମଲବାବୁଙ୍କ ଦରଦ ଦେଖି ନୀଳମଣି ଗୌନ୍ତିଆର ଦେହ ଜଳିଗଲା । ସେ କହିଲେ, 'ହଁରେ ମହନି, ରେଞ୍ଜରବାବୁ ଅଛନ୍ତି ଯେତେବେଳେ, ଝରିପାଇଁ ତୋତେ ଚିନ୍ତା କରିବାକୁ ପଡ଼ିବନି ।'

ଝରିକୁ ଖଟିଆରୁ ଆଣି ଜିପ୍‌ରେ ବସେଇଲା ମହନି । ଧୂଳି ଉଡ଼େଇ ଜିପ୍‌ଟା ଚାଲିଗଲା । ଗୌନ୍ତିଆ ବିଚାରିଲା, ତା' ନାକ ଉପରେ ଜିପ୍‌ଟା ଚାଲିଗଲା ସତେ ! ବାଟରେ ରେଞ୍ଜରବାବୁ ମହନିକୁ କହିଲେ, 'ବୁଝିଲୁ ମହନି, ଗୌନ୍ତିଆ ସ୍ୱାର୍ଥପର । ତୋର ମଙ୍ଗଳ ପାଇଁ ଏ କଥା କହୁନାହିଁ । 'ବଂଶ ବୁଡ଼ିଯିବା' 'ପୁଅ ମରିଯିବା' ଏମିତି ଡର ତୁମ ମୁଣ୍ଡ ଭିତରେ ପୂରେଇ, ତୁମ ଦ୍ୱାରା ତାଙ୍କର କାମ ଉଠେଇବା ହେଲା ତାଙ୍କର ଉଦ୍ଦେଶ୍ୟ । ତୁ ତ ତା' ବଗିଚାରେ ମହୁଲ ଗଛ ଲଗେଇଛୁ, ଏବେ ତୋ' କ୍ଷେତରେ ଲଗେଇବୁ । ଫରକ କ'ଣ ?'

'ନାହିଁ ରେଞ୍ଜରବାବୁ, ମୋ' କ୍ଷେତରେ ମୁଁ ମହୁଲ ଗଛ ଲଗେଇବି ।' ମହନି କହିଲା । ଭାଲୁ ରାମୁଡ଼ା ଯୋଗୁ, ଝରି କଷ୍ଟ ପାଉଥିଲା । ହେଲେ, ଗୌନ୍ତିଆ କଥା ଶୁଣି, ସେ କହିଲା, 'ରେଞ୍ଜରବାବୁ, ତୁ ଗଛ ଦବୁ ଆମେ ଲଗେଇବୁ ଗଛ ଗଉନ୍ତିଆ କଥାରେ କି ଯାଏ ?'

'ଠିକ୍ କଥା କହିଛୁ ଝରି ।' ସାମଲବାବୁ କହିଲେ ।

ଗଉନ୍ତିଆ କଥା କହିଲାରୁ, ଝରିର ମନେ ପଡ଼ିଗଲା, ରାତିପାହାନ୍ତା ବେଳର କଥା । ହଁ, ଝରିର ନିଦ ଭାଙ୍ଗିଯାଇଥିଲା, ପଲାର ଟାଟି ଫିଟେଇବାର ଶବ୍ଦରେ । ଜହ୍ନ ଆଲୁଅ ପଡ଼ିଥାଏ । ବାଘ ନୁହେଁ କି ଭାଲୁ ନୁହେଁ । ଝରି ଦେଖିଲା ଖୋଦ୍ ଗଉନ୍ତିଆ ।

ଆଇଁଷ ବାସନାରେ ବିଲେଇ ଛକ୍ ଛକ୍ ହେଲାପରି କେତେଦିନ ହେଲା ଗଉନ୍ତିଆ ଛକରପକର ହେଉଥିଲା, ଝରି ପଛରେ । ସାନ୍ତାଣୀକି ବାପଘରକୁ ପଠେଇ ଦେଇଛି । ମହନିକି ଜଙ୍ଗଲକୁ ପଠେଇଛି । ଗଉନ୍ତିଆକୁ ଏଭଳି ଆସିବାର ଦେଖି, ଜାଣି ନ ଜାଣିଲା ପରି ଶୋଇ ରହିଲା ଝରି ।

ମହନିକୁ ବାହାହେଇ ଝରି ଏଠିକି ଆସିଲାବେଳେ, କନି ମାଉସୀ ତାକୁ ହୁସିଆର କରିଦେଇଥିଲା । କହିଥିଲା, ଗୌନ୍ତିଆକୁ ସାବଧାନ ଥିବୁ ଲୋ ଝରି । ମୋର ସେତେବେଳେ କଅଁଳ ବୟସ । ନୂଆ ବାହା ହେଇଥାଏ । ଗଉନ୍ତିଆ ନୁହେଁ ତ ଅଜଗରଟାଏ । ଯୋଉଦିନ ସେ ଚିପି ଧଇଲା ତା' ଛାତିରେ, ମୁଁ କହିଥିଲି, 'ମୁଁ ଅଛବ ଝିଅ ପରା; ଗଉନ୍ତିଆ ତୋ ଜାତି ଗଲା ।'

ଗଉନ୍ତିଆ ହସିଥିଲା । କନିର ଡଉଲଡାଉଲ ଦେହଟାକୁ ଭିଡ଼ିଧରି କହିଥିଲା, 'କ'ଣ କହିଲୁ କନି, ଜାତି ? ଜାଣିଥା, ଜମିର ଜାତି ନଥାଏ କି ମାଇକିନିଆର ଜାତି ନଥାଏ ।'

ଝରି ବିଚାରିଲା, ସ୍ୱର୍ଗକୁ ନିଶୁଣି ନାହିଁ କି ବଡ଼ଲୋକକୁ ଉତର ନାହିଁ । ଜାତି କଥା ଉଠେଇ କନି ଖସିଯାଇ ପାରି ନ ଥିଲା ଗଉନ୍ତିଆ ଦାଉରୁ ।

ସେତେବେଳକୁ ଗଉନ୍ତିଆର ଟାଆଁଶ ଲୋମଗୁଡ଼ାକ ଝରିର କଅଁଳ ଦେହରେ ବିଛୁଆତି ଭଳି ଲାଗୁଥାଏ । ଝରି କିଛି କହିବା ଆଗରୁ, ଗଉନ୍ତିଆ ଦି'ହାତରେ ଟାଣିନେଇଥିଲା ଝରିର ଦେହଟାକୁ । ତା'ର ପୂରିଲା ଛାତିରେ ଗଉନ୍ତିଆର ହାତ ମନେହେଲା ଗୋଖର ସାପର ଚୋଟ ପରି ।

କଡ଼ ଲେଉଟେଇଲା ଝରି । ଅଳସ ଭାଙ୍ଗି ସେ ଉଠିବସିଲା । ନିଜର ଢେଉଭଙ୍ଗା ଛାତି ଉପରେ ଶାଢ଼ୀର ପଣତଟା ଟାଣି, ବୁକୁର ସମ୍ପଦକୁ ଘୋଡ଼େଇବାକୁ ଚେଷ୍ଟା କଲା । ଛଳରେ ପଚାରିଲା, କିଏ, 'ଗଉନ୍ତିଆ ?'

ଟିକିଏ ହସିବାକୁ ଚେଷ୍ଟା କଲା ଗଉନ୍ତିଆ । କହିଲା, 'ହଁ ଲୋ, ଝରି ମୁଁ ।' ଝରି ଚମକି ପଡ଼ି କହିଥିଲା, 'ମାଲୋ, ମୁଁ କ'ଣ କରିବି ? ସାଆନ୍ତାଣୀ ଜାଣିଲେ ?' ଭଙ୍ଗା ଛପର । ଜହ୍ନ ଆଲୁଅରେ ଝରି ଦେଖିଲା, ସାଆନ୍ତାଣୀଙ୍କ ନାଆଁ ଶୁଣି ଗଉନ୍ତିଆର ମୁହଁଟା ପଲକରେ ଫିକା ପଡ଼ିଗଲା । ତଥାପି ଗଉନ୍ତିଆ କହିଥିଲା, 'କିଲୋ, ସାଆନ୍ତାଣୀ କି ମୁଁ କ'ଣ ରଖିଛି ? ମୁଁ ସେ ବାଟ ସଫା କରିଦେଇଚି । ପଠେଇ ଦେଇଚି ବାପଘରକୁ ।'

'ଏଇଥିପାଇଁ ସାଆନ୍ତାଣୀକି ତୁ ପଠେଇଦେଲୁ ବାପଘରକୁ ?' ପଚାରିଲା ଝରି ।

'ଦୂର୍ । ଏଥିପାଇଁ କାହିଁକି ? ତୁ କ'ଣ ଜାଣିନୁ ଝରି ? ତା' ପେଟରେ ପିଲା । ପୁଣି ମା' ହବ ପରା !'

ଝରଣା ଭଳି ହସିଥିଲା ଝରି । କହିଥିଲା, 'ଗଉନ୍ତିଆ, ତୁ ଡେରି କରିଦେଲୁ । ବହୁତ ଡେରି କରିଦେଲୁ ।'

'ଡେରି କରିଦେଲି ? ମାନେ ?' ଗଉନ୍ତିଆ ଚମକିପଡ଼ି ନିଠେଇ ଚାହିଁଲା ଝରିର ମୁହଁକୁ । ଜହ୍ନ ଆଲୁଅରେ ଝରିର ମୁହଁଟା ଲୋଭିଲା ଲୋଭିଲା ମନେହେଲା । ମନେ ମନେ କହିଲା, ଆହା ଟୋକିର ମୁହଁ ନୁହେଁ ତ, ପାଚିଲା ଆମ୍ବ ଭଳି ରଙ୍ଗ ହୋଇଆସୁଛି ।

ଝରି କହୁଥିଲା, ଡେରି ନୁହେଁ ଆଉ କ'ଣ ! ଝରିର ବଙ୍କା ଓଠ ତଳକୁ ଝରଣା ଭଳି ହସ ଝରିପଡୁଥାଏ ।

ଝରିକୁ ପାଖକୁ ଭିଡ଼ିନେଇ ଗଉନ୍ତିଆ କହିଲା, 'ଝରିଲୋ, ତୋର ଏଇ କଇଁଫୁଲିଆ ହସ, ଆହା ଝୁରିମରିଥାଏଁଲୋ । ହେଲେ, ତୋ କଥା ବୁଝିହଉନି ।'

'ବୁଝିଲୁ ଗଉନ୍ତିଆ । ମାଇକିନିଆ ଜାତିଟା ନଈପାଣି । ବହିଗଲା ନଈପାଣି ଫେରିଆସେନି ।'

'ଯାଃ, ତୁ କାହିଁକି ବହିଗଲା ନଈପାଣି ହେବୁ ?'

'ତୁ ସେକଥା ବୁଝିପାରିବୁନି ଗଉନ୍ତିଆ ।'

ହସିଥିଲା ଗଉନ୍ତିଆ । 'ନୀଳମଣି ଗଉନ୍ତିଆ ତୋ' କଥା ବୁଝିପାରିବ ନାହିଁ ? ମୁଁ ଠିକ୍ ବୁଝିଛି । ତୋ' ଭଳି ଚାଲାକ ଚତୁର ଝିଅ ଏ ମୁଲକରେ ନ ଥିବେ । ମୁଁ ପରା ମହୁଲପାଲି ଗାଁରୁ ଖୋଜିଆଣି .....'

କହୁଁ କହୁଁ, ଝରିର ମୁହଁକୁ ଚାହିଁ ଗଉନ୍ତିଆ ଅଟକିଗଲା ।

ଝରି କହୁଥିଲା, 'ସାଆନ୍ତାଣୀଙ୍କ ଭଳି ମୁଁ ପରା ମା' ହବାକୁ ଯାଉଛି । ପେଟରେ କାନ ଦେଇ ଶୁଣୁନାହୁଁ, ମହନିର ରକ୍ତ କିମିତି ଚକାଭଉଁରୀ ଖେଳୁଛି ।' ଝରି ଓଠରୁ ହସ ଝରିଯାଉଥାଏ ।

ଗଉନ୍ତିଆର ମନେହେଲା, ପଜାରେ ବଜ୍ରପାତ ହେଲା । ତା'ର ହାତ ଦି'ଟା ମନକୁମନ ହୁଗୁଳିପଡ଼ିଲା ଝରିର ପୂରିଲା ଛାତି ଉପରୁ ।

ଝରି ଜାଣିଛି, ଗରଭିଣୀ ମାଇକିନିଆର ଛାଇ ମାଡ଼ିବା ନୀଳମଣି ଗଉନ୍ତିଆର ଜାତକରେ ନାହିଁ । ସେ ମନେ ମନେ ଜୁହାର ହେଲା କନିମାଉସୀକୁ ।

ଝରିକୁ ଛାଡ଼ି ଉଠି ଠିଆ ହେଇଥିଲା ଗଉନ୍ତିଆ । ତା'ପରେ ସେ କହିଥିଲା, 'ମୁଁ କାହିଁକି ଆସିଥିଲି କି ଝରି, ରାତି ପାହିଗଲାଣି, ତୁ ମହୁଲ ସାଉଣ୍ଟି ଯିବୁ ପରା ? ଭାବିଲି ମହନି ନାହିଁ । ତୋର ନିଦ ଭାଙ୍ଗିବ କି ନାହିଁ । କାଳେ ନିଦ ଅଳସରେ ଶୋଇଯିବୁ...' କହୁଁ କହୁଁ ଗଉନ୍ତିଆ ଅଟକିଗଲା । ସେ ଦେଖିଲା, ଝରି ଅଣ୍ଟିରେ ଲୁଗାକାନି ଗୁଡ଼େଇ ତାଙ୍କରୁ ଟାଣିଆଣିଲା ଟାଙ୍ଗିଆଟାକୁ । ଝରିର କ'ଣ ମତଲବ କିଏ ଜାଣେ ?

'ଟାଙ୍ଗିଆଟା କ'ଣ କରିବୁ କିଲୋ ଝରି ?' ଥଙ୍ଗଥଙ୍ଗ ହୋଇ ପଚାରିଲା ଗଉନ୍ତିଆ ।

ଗଉନ୍ତିଆର ପ୍ରଶ୍ନ ଶୁଣି, ଶାଣଦିଆ ଦାଆ ଭଳି ବଙ୍କେଇ ହସି ପକେଇଥିଲା ଝରି । ସେ ଜାଣେ, ଗଉନ୍ତିଆର ଜୀବନକୁ ଭାରି ଡର । ସେ ଟାଙ୍ଗିଆଟାକୁ ପଥର ଦେହରେ ଘଷୁ ଘଷୁ କହିଲା, 'ମୁଁ ବଣକୁ ଯିବି ପରା, ମହୁଲ ସାଉଣ୍ଟିବାକୁ ।'

'ହଉ, ତୁ ଯା' ମହୁଲ ସାଉଣ୍ଟିବାକୁ । ମୁଁ ଯାଏଁ । ମୋର ତେଣେ ଢେର କାମ ପଡ଼ିଚି ।' ପଲାରୁ ବାହାରି ସ୍ୱସ୍ତିର ନିଃଶ୍ୱାସ ଛାଡ଼ିଲା ଗଉନ୍ତିଆ । ଗଲାବେଳେ ଗଉନ୍ତିଆ କହିଲା, 'ହଁ ଲୋ ଝରି, ଏଇଟା ମହୁଲ ଝରିଲା ବେଳ । ବଣରେ ଭାଲୁ ମାତିଲେଣି । ଟାଙ୍ଗିଆଟା ହାତରେ ଧରିଥିବୁ ।'

ଗଉନ୍ତିଆର କଥା ଶୁଣି, କୁଡ଼ିଆ ଭିତରୁ ଜୋରରେ ହସିଉଠିଥିଲା ଝରି ।

ଜିପ୍‌ରେ ଯାଉଁଯାଉଁ, ଝରିର ସେହିକଥା ମନେ ପଡ଼ିଗଲା । ଭାଲୁ ରାମ୍ପୁଡ଼ା କଷ୍ଟ ଭିତରେ ବି ଝରି ହସିପକେଇଲା ।

ମହନି ଆଉ ରେଞ୍ଜରବାବୁ ଦିହେଁ ପଚାରିଲେ, 'କ'ଣ ହେଲା ଝରି, ହସିଲୁ କାହିଁକି ?'

ଝରି କହିଲା, 'ରେଞ୍ଜରବାବୁ, ଜଙ୍ଗଲର ବାଘ ଭାଲୁଙ୍କୁ ଜବତ କରିବା ପାଇଁ ଟାଙ୍ଗିଆ ଅଛି, କୁରାଢ଼ି ଅଛି, ତୀର ଧନୁ ବନ୍ଧୁକ ବି ଅଛି । ହେଲେ, ଏଇ ଗଉନ୍ତିଆଙ୍କ ଭଳି ଜାନୁଆର ପାଇଁ ଏଯାଏ ଅସ୍ତ୍ର ବାହାରି ନାହିଁ ।'

ମହନି ଆଉ ରେଞ୍ଜରବାବୁ କହିଲେ, 'ଠିକ କହିଲୁ ଝରି ।'



# ନୂଆ' ଉ

ସେଇଟା ବୋଧହୁଏ ୧୯୫୨ର ଘଟଣା । ଅଧ୍ୟାପକ ହିସାବରେ ମୁଁ ନୂଆକରି କଲେଜରେ ଯୋଗ ଦେଇଥାଏ । ମୋ' ବାଲ୍ୟବନ୍ଧୁ ପଦୁ ଓରଫ ପଦ୍ମନାଭ ଜିପ୍‌ରେ ଆସି ହଠାତ୍ ସେଦିନ କଲେଜର ଷ୍ଟାଫ କମନରୁମ୍‌ରେ ପହଞ୍ଚିଲା । ବୁଝିଲି, ସେ ମଧ୍ୟ ଏଠାରେ ଡ଼େପୁଟି ମାଜିଷ୍ଟ୍ରେଟ ପଦରେ ଯୋଗଦେଲାଣି ।

ପ୍ରାଇମେରୀ ସ୍କୁଲଠାରୁ ମେଟ୍ରିକଯାଏ ଏକାଠି ପଢୁଥିଲୁ । କିନ୍ତୁ ୧୯୪୪ରେ ମେଟ୍ରିକୁଲେସନ ପାସ୍ କଲାପରେ ଆଉ ବିଶେଷ ଦେଖାସାକ୍ଷାତ୍ ନଥିଲା । ସେ ପାଠ ପଢ଼ିବାକୁ ଚାଲିଗଲା ଏଲାହାବାଦ ଆଉ ମୁଁ କଲିକତାକୁ । ମଝିରେ ମଝିରେ ଚିଠିପତ୍ରରେ ଯାହା ଯୋଗସୂତ୍ର ଥାଏ । ଦୀର୍ଘଦିନର ବ୍ୟବଧାନ ପରେ ପଦୁ ସାଙ୍ଗରେ ଦେଖାହେବାରୁ ଆମ ଦିହିଁକର ମନ ନାହିଁ ନଥିଲା ଖୁସିରେ ଡ଼ଗମଗ୍ କରିବାକୁ ଲାଗିଲା । ଦି'ଜଣଙ୍କ ମନଭିତରେ ଏତେକଥା ଜମି ରହିଥିଲା ଯେ କିଏ କ'ଣ କହିବ, କେଉଁଠୁ କଥା ଆରମ୍ଭ କରିବୁ କେହି ବୁଝି ପାରୁ ନ ଥିଲୁ । ପଦୁ ମୋତେ ତା' ଜିପ୍‌କୁ ଡାକିନେଇ ପଚାରିଲା, 'ହଇରେ ନୀର, ନୂଆବୋହୂଙ୍କୁ ତୋର ମନେପଡୁଛି ?'

ସତରେ, ଦୀର୍ଘ ଆଠ ବର୍ଷର ବ୍ୟବଧାନ । ମନେପକେଇବା କଷ୍ଟକର କଥା । କିନ୍ତୁ ନୂଆବୋହୂଙ୍କ ପାଇଁ ସେଦିନ ପଦୁ ହିଁ ଥିଲା ଯୋଗସୂତ୍ର । କଳାବାଦଲ ଫାଙ୍କରେ ପୂନେଇଁ ଜହ୍ନ ଭଳି ମୋ' ସ୍ମୃତିର ଆକାଶରେ ନୂଆବୋହୂଙ୍କର ସେହି ଲାବଣ୍ୟଭରା ମୁହଁଟି ଧୀରେ ଧୀରେ ଫୁଟି ଉଠିଲା । ପାନପତରିଆ ମୁହଁରେ ସୁନାର ନଥ ।

ବିସ୍ମୟରେ ମୁଁ ପଚାରିଲି, 'ପଦୁ, ତୁ ହଠାତ୍ ନୂଆ'ଉଙ୍କ କଥା ପଚାରିଲୁ ଯେ ? ସେ କେମିତି ଅଛନ୍ତି ? ମିଶ୍ରନନାଙ୍କ ଖବର କ'ଣ ?'

'ମିଶ୍ରନାଙ୍କ କଥା ଆଉ କ'ଣ ? ପକ୍ଷାଘାତରେ ପଡ଼ି ଦୁଇ ବର୍ଷତଳେ ସେ ଚାଲି ଯାଇଛନ୍ତି । ଗଲା କେତେଦିନ ହେଲା, ନୂଆ'ଉ ତୋ' କଥା ପଚାରୁଥିଲେ । ଅଫିସ କାମରେ ମୋତେ ଫୁରସତ୍ ମିଳୁ ନ ଥିଲା । ନୂଆ'ଉ ରାଣ ନିୟମ ପକେଇ ତୋତେ ଥରେ ଡ଼ାକି ଆଣିବାକୁ କହିଲେ ।'

ପଦୁ ଠାରୁ, ନୂଆ'ଉଙ୍କ ରାଣ ନିୟମ କଥା ଶୁଣି ମନ ଜଗତରେ ମୁଁ କ୍ଷଣିକରେ ଫେରିଗଲି ସେଇ ପିଲାଦିନର ଦୁନିଆକୁ । ସେଇ ତିକ୍ତ ମଧୁର ଅନୁଭୂତି ସବୁ ମୋ' ମନ ଆକାଶରେ କେତେବେଳେ ଆଙ୍କିଦେଲା ରଙ୍ଗିନ ଇନ୍ଦ୍ରଧନୁ ତ ପୁଣି କେତେବେଳେ ଘେନି

ଆଣିଲା କଳାହାଣ୍ଡିଆ ଭଦୁଅ ମେଘ । ସେଠି ନୂଆବୋହୂ, ସୁନା, ପଦୁ ଆଉ ମୁଁ । ବାଡ଼ିବଗିଚାର ଆମ୍ବ, ପିଜୁଳି, ଲିଚୁ, ବରକୋଳିର ସ୍ମୃତି । ପୂନେଇଁ ପରବରେ ନୂଆବୋହୂଙ୍କ ହାତତିଆରି ଛୁଞ୍ଚିପତର, ସରୁଚକୁଳି ଆଦି ପିଠା ଆଉ ବାସନା ଚାଉଳର ଖିରି । ତା' ସହିତ ମୋ ମନ ଭିତରେ ଫୁଟିଉଠିଲା, ଶ୍ରାବଣର ଜଳଭରା ନଈଭଳି ଢଳ ଢଳ ଯୋଡ଼ିଏ ଆଖି — ସେ ତ ସେଇ ନୂଆ'ଉଙ୍କର । ସେଥିରେ କେତେ ଲୁହ, କେତେ ବେଦନା ଭରି ରହିଥିଲା କିଏ ଜାଣେ ? ଆମେ ପିଲା ବୟସରେ ସେଥିରୁ କ'ଣ ବା ବୁଝୁଥିଲୁ ?

ଶୈଶବ କୈଶୋରର ଆବେଗଭରା ସ୍ମୃତି ବିଜଡ଼ିତ ଏଇ ସହର । ଆମ ଘରଠୁଁ ପଦୁର ଘର ଦୁଇମାଇଲ ଦୂର ହେବ । ମୁଁ ଦି'ଓଳି ଯାଉଥିଲି ପଦୁ ଘରକୁ, ସେଠି ଏକାଠି ପଢ଼ାପଢ଼ି କରିବାକୁ ।

ଆମେ ମାଇନର ପାସ୍ କରି ହାଇସ୍କୁଲରେ ଭର୍ତ୍ତି ହେଲୁ । ପଦୁ ଘରେ ଛୁଆପିଲାଙ୍କ ଭିଡ଼ ହେଲାରୁ ପଦୁର ବୋଉ ଆମକୁ ପଠେଇଦେଲେ ମିଶ୍ରଙ୍କ ଘରକୁ ।

ପଦୁଘର ପାଇରେ ମିଶ୍ରନନାଙ୍କ ମସ୍ତବଡ଼ କୋଠା । ବାହିର ଚାରିପଟେ ଚାଳ ଛପର ଘର ଭିତରେ ଏକମାତ୍ର ଚୂନ ଧଉଳା ବିରାଟ କୋଠାଟି ବାରିହୋଇ ପଡ଼େ । ମାଉସୀଙ୍କ କଥା ଅନୁସାରେ ବହିପତ୍ର ଧରି ଆମେ ଚାଲିଲୁ ମିଶ୍ରନନାଙ୍କ ପ୍ରକାଣ୍ଡ ଗେଟ୍ ଆଡ଼କୁ । ପଛପଟୁ ପଦୁ ମୋ ସାର୍ଟକୁ ଟାଣିଧରି କହିଲା, 'ଏଇ ନୀର, ସେ ପଟେ ନୁହେଁ, ବାରିପଟେ ।'

ଅସୁମାରି ଫୁଲ ଫଳର ବଗିଚା । ସେଇ ବଗିଚା ଭିତରେ ସକାଳୁ ଯୋଡ଼ିଏ ପିଲାଙ୍କୁ ପଶି ଆସିବାର ଦେଖି ଡ଼ାହାଣୀ ଭଳି ମାଡ଼ିଆସିଲା ଜଣେ ବୁଢ଼ୀ । ସେ ରଡ଼ି ଛାଡ଼ି କହିବାକୁ ଆରମ୍ଭ କଲା, ଦଶାଘାଟିଆ ଟୋକା ଦଳେ କୁଆଡୁ ମାଡ଼ି ଅଇଲେଣି । ଗଛରେ କଷି ପିଜୁଳିଟାଏ ଆଉ ରଖେଇ ଦେବେନି । ସେଇ କାଳି-କୋତରୀ, ହାଡ଼ ସରସର, ଚମ ଧୁଡ଼ୁଧୁଡ଼ୁ ବୁଢ଼ୀକି ଦେଖିଲେ ଯେ କେହି ଡ଼ରିଯିବ । ସେଥିରେ ପୁଣି ମୁଣ୍ଡର ବାଳ ଧଳାଖେଟ ଭଳି ଫୁରଫୁର ହେଇ ଉଡୁଥାଏ । ବୁଢ଼ୀକି ଦେଖି ଛାଏଁ ଛାଏଁ ଅଟକିଗଲା ମୋର ପାଦ ଯୋଡ଼ିକ ।

କିନ୍ତୁ ସେଇ ଅଡୁଆ ବେଳର ଜଣେ ଅଳ୍ପ ବୟସର ସ୍ତ୍ରୀ ଲୋକର ମିଠା କଥା ଶୁଭିଲା । ସେ କହିଲେ, 'ତୁ ଟିକିଏ ଚୁପ୍ କରୁ ସୁନା ମା । ସେ ପରା ଆମ ମହାପାତ୍ରଙ୍କ ଘର ପଦୁ ।' ତା' ପରେ ସେ ପଦୁକୁ ଡ଼ାକି କହିଲେ, 'ଆସ ପଦୁ ତୁମେ ଆସ । ମାଉସୀ କହିଥିଲେ ତୁମ୍ଭେମାନେ ଏଇଠି ପଢ଼ିବ । ଆଉ ସେ ତୁମର ସାଙ୍ଗ ? ନାଁ କ'ଣ ?'

ହସି ପକେଇ ପଦୁ କହିଲା, 'ତା' ନାଁ ନିରଞ୍ଜନ । ନୂଆ'ଈ ତମେ ତାକୁ ନୀର ବୋଲି ଡ଼ାକିବ ।'

ଯେଉଁ କିଶୋରୀ ବୟସର ବୋହୂଟିକୁ ପଦ୍ମ ନୂଆବୋହୂ ସଂବୋଧନ କଲା ମୁଁ ତାଙ୍କୁ ଚାହିଁ ଦେଖିଲି । ତାଙ୍କର ବୟସ ଅବା କେତେ ହେବ । ପନ୍ଦର କି ଷୋହଳ ହେବ । ସିନ୍ଥିରେ ଲାଲ ସିନ୍ଦୂର, ନାକରେ ନଥ ଆଉ ମଥାରେ ଓଢ଼ଣା ଦେଇଥିବାରୁ ନୂଆବୋହୂଙ୍କୁ ଟିକିଏ ବଡ଼ ମନେ ହେଉଥିଲା ।

ତା'ପରେ ନୂଆବୋହୂ ସେଇ ସୁନା ମା'ର ଝିଅ ସୁନାକୁ ଡ଼ାକି କହିଲେ, 'ଆଲୋ ହେଇ ସୁନା, ସେଇ ଘରଟା ଫିଟେଇ ସଫା କରିଦେ । ପଦ୍ମହେରିକା ସେଇଠି ପଢ଼ିବେ ।' ମୁଁ ମୁହଁ ବୁଲେଇ ଦେଖିଲି ସୁନା ବୋଲି ସେଇ ଝିଅଟିକୁ । ଆମଠୁଁ ବୟସରେ ଟିକିଏ ସାନ ହେବ । ସେ ଘର ଭିତରୁ ବାହାରି ଆସି ପଦ୍ମକୁ ଲକ୍ଷ୍ୟକରି ଖତେଇ ହେଲା । ମୁଁ ବୁଝିଗଲି, ପଦ୍ମ ସଙ୍ଗେ ସୁନାର ପରିଚୟ ଅଛି । ନୂଆବୋହୂ ଭିତରକୁ ଚାଲିଯାଇଥିଲେ । ଖତେଇ ହେବାର ଦେଖି ପଦ୍ମ କହିଲା, 'କିଲୋ ସୁନା ମାଙ୍କଡ଼ୀ ଭଳି ଖତେଇ ହେଉଛୁ କାହିଁକି ? ଚଞ୍ଚଳ ଘର ଫିଟେଇ ସଫା କରୁଛୁ ନା କହିଦେବି ପୁଣି ନୂଆ'ଉଙ୍କୁ ?'

ସେଇଦିନୁ ସେ ଘର ହେଲା ଆମର ପଢ଼ାଘର । ପାଠ ପଢ଼ିବା ପାଇଁ ବେଶ ଅନୁକୂଳ ଜାଗା । କେବଳ ସେତିକି ନୁହେଁ, ଆମର ମନେ ହେଲା, ଜନମାନବ ଶୂନ୍ୟ ସେଇ ବିରାଟ କୋଠାଘରେ ନୂଆବୋହୂଙ୍କୁ ନିତାନ୍ତ ଏକାଏକା ଲାଗୁଥିଲା । ସେ ଏବେ ଭଲ ସାଙ୍ଗ ପାଇଲେ । ଖରା ଦି'ପହରଯାକ ସେଇ ବଗିଚା ପୋଖରୀ ହୁଡ଼ା ହେଲା ଆମ ତିନିଜଣଙ୍କ ପାଇଁ ଚରାଭୂଇଁ । ଆମ୍ବ, ପିଜୁଳି, ଲିଚୁ, ଜାମୁକୋଳି ମନଇଚ୍ଛା ଖାଇବା ଥିଲା ଆମର କାମ । ଭଲ ଭଲ ଆମ୍ବ ବରକୋଳି ଆଣି ନୂଆ'ଉଙ୍କୁ ଦେବାରେ ଚାଲିଥିଲା ଆମ ଭିତରେ ପ୍ରତିଯୋଗିତା । ପୁଣି ପୂନେଇଁ ପରବରେ ବିଭିନ୍ନ କିସମର ପିଠା ଖୁଆଇ ଆନନ୍ଦ ପାଉଥିଲେ ନୂଆ'ଉ ।

ନୂଆବୋହୂ ଆଉ ସୁନାକୁ ଛାଡ଼ି ଦେଲେ ସେ ଉଆସରେ ଯେ ଜଣେ ରହୁଥିଲେ ସେ ହେଲେ ଖୋଦ୍ ମାଲିକ, ମିଶ୍ର ନନା । ହେଲେ ଆମେ କ୍ୱଚିତ ତାଙ୍କର ଭେଟ ପାଉଥିଲୁ ।

ସକାଳ ଓଳି ପାଠ ପଢୁ ପଢୁ ବଡ଼ ପାଟିରେ ଆମେ ଦୁହେଁ ଯୁକ୍ତି ତର୍କ କରୁଥିଲେ ସୁନା ଧାଇଁଆସି ଆମକୁ ସତର୍କ କରିଦେଉଥିଲା । ତା'ର ସ୍ୱାଭାବିକ ଢ଼ଙ୍ଗରେ ପାନ ଚୋବେଇ ଚୋବେଇ ଆଖି ଯୋଡ଼ିକ ବୁଲେଇ ବୁଲେଇ ଚାପା ଗଳାରେ କହୁଥିଲା, 'ଏଇ ପଦ୍ମ ଭାଇନା, ନୂଆ'ଉ କହିଲେ ତୁମ୍ଭେମାନେ ପାଟିତୁଣ୍ଡ କର ନାହିଁ । ବାବୁଙ୍କ ନିଦ ଭାଙ୍ଗିଯିବ ।'

ଦେଖିଲୁ ଦିନ ନଅଟା ବେଳକୁ ମଧ୍ୟ ନିଦ ଭାଙ୍ଗି ଯିବାର ଆଶଙ୍କାରେ ସମସ୍ତେ ଆତଙ୍କିତ । ଆମ ପାଠପଢ଼ା ଘରଟି ମିଶ୍ରନ୍ନାଙ୍କ ଶୋଇବା ଘରଠାରୁ ଅନେକ ଦୂର । ତଥାପି ତାଙ୍କର ସକାଳର ସୁଖ ନିଦ୍ରାରେ ବ୍ୟାଘାତ ଦେବାକୁ ଆମ୍ଭେ ସାହସ କରୁ ନ ଥିଲୁ ।

ତା' ଭିତରେ ଦୁଇ ତିନି ବର୍ଷ ବିତି ଯାଇଥାଏ । ଆମେ ସେତେବେଳେ ଏକାଦଶ

ଶ୍ରେଣୀର ଛାତ୍ର । ସେଦିନ ମେଟ୍ରିକ ପାଠ ପଢୁ ପଢୁ ରାତି ଦଶଟା ବାଜିଯାଇଥାଏ । ମୁଁ ଘରକୁ ଫେରିବାକୁ ବ୍ୟସ୍ତ ହେଉଥାଏ । ହଠାତ୍ ଆମ ପଢ଼ା ଘରକୁ ସୁନା ପଶି ଆସିଲା । ଏତେ ରାତିରେ ସୁନାକୁ ଆମ ପଢ଼ା ଘରେ ଦେଖି ମୋ ମନରେ ରୋମାଞ୍ଚ ସହିତ କୌତୂହଳ ସଞ୍ଚରିତ ହେଲା । ଦେଖିଲି ପଦୁ କାନରେ ଧୀରେ ଧୀରେ କ'ଣ ଦି'ପଦ କହି ସେ ଚାଲିଗଲା । ମୁଁ ସନ୍ଦେହର ଆଖିରେ ପଦୁକୁ ଚାହିଁଲି । ଗଭୀର ଗୋପନୀୟତାର ନୀଳ ଭଉଁରୀ ଖେଳେଇ ପଦୁ ମୋତେ କହିଲା, 'ନୀର, ତୁ ରାଣ ପକା, କାହାରି ଆଗରେ କହିବୁନାହିଁ । ତୋତେ ଗୋଟେ ଜିନିଷ ଦେଖେଇବି ।' ମୋ ମନ ଭିତରେ ହଠାତ୍ ଜଳି ଉଠିଲା ଏକ ତୀବ୍ର ଉତ୍ତେଜନାର ନିଶା । କୌତୂହଳର ଚରମସୀମାରେ ପହଞ୍ଚି ମୁଁ ପ୍ରତିଶ୍ରୁତି ଦେଲି, କାହାରି ଆଗରେ ପ୍ରକାଶ କରିବି ନାହିଁ ।

ପଢ଼ାଘର ଛାଡ଼ି ଆମେ ବାହାରି ପଡ଼ିଲୁଁ । ପଦୁ, ସୁନା ଆଉ ମୁଁ । ବଗିଚା ପୋଖରୀ ଆରପଟେ ଥିଲା ଗୋଟିଏ ବଡ଼ ଘର । ସେଇଟା ବହୁଦିନରୁ ଆମ ପାଇଁ ଏକ ରହସ୍ୟମୟ ଘର ଥିଲା କହିଲେ ଚଳେ । ପୋଖରୀ ହୁଡ଼ାରେ ସେଇ ଅନ୍ଧାର ରାତିରେ କଣ୍ଟାବୁଦା ଝୁଣ୍ଟିଝୁଣ୍ଟି ଆମେ ଚାଲିଥିଲୁ । ମନତଳେ ତେଜି ଉଠୁଥିଲା ଗୋଖରସାପର ଫଣା ଭଳି ପ୍ରବଳ ଉତ୍ତେଜନା ଆଉ ଅଦମ୍ୟ କୌତୂହଳର ଅଗ୍ନିଶିଖା । ମନରୁ ଭୟଭ୍ରାନ୍ତି ବେମାଲୁମ୍ ଉଭେଇ ଯାଇଥିଲା । ଦେଖିଲୁ ସେଇ ରହସ୍ୟମୟ ଘର ଭିତରୁ ଝରକା ଫାଙ୍କ ଦେଇ ଛିଟିକି ଆସୁଥିବା ଉଜ୍ଜ୍ୱଳ ଆଲୁଅର ରେଖା ଏବଂ ସେଇ ଆଲୁଅରେ ଚକ୍‌ଚକ୍ କରୁଥିଲା ପୋଖରୀ ଜଳର ଛୋଟ ତରଙ୍ଗସବୁ । ସେଇ ଘର ଭିତରୁ ନୀରବ ରାତିର ଆକାଶରେ ଖେଳି ଯାଉଥିଲା ମନମତାଣିଆ ସଙ୍ଗୀତର ମୂର୍ଚ୍ଛନା । ସେଇ ଉଦ୍‌ବେଳିତ ସ୍ୱରଝଙ୍କାର ଆମ କିଶୋର ପ୍ରାଣରେ ସୃଷ୍ଟି କରୁଥିଲା ଭୟଙ୍କର ଉନ୍ମାଦନା ।

ସୁନାର ନିର୍ଦ୍ଦେଶରେ ଆମେ ନୀରବରେ ଚଢ଼ିଗଲୁ ଆମ୍ବ-ପିଜୁଳି ଗଛର ଡ଼ାଳ ଉପରକୁ । ଝରକା ଫାଙ୍କ ଦେଇ ରୁଦ୍ଧ ଶ୍ୱାସରେ ଦେଖିଲୁ ସେଇ ନିଷିଦ୍ଧ ବାଗାନବାଡ଼ିର ଅଦ୍‌ଭୁତ ଦୃଶ୍ୟ ସବୁ । ଲମ୍ୱା ହଲ, ଘରର ଛାତରୁ ଓହଳୁଥିଲା ବତୀଝାଡ ସବୁ । ଝାଡର କାଚକୁ କାଚ ଲାଗି ସୃଷ୍ଟି ହେଉଥିଲା ଅଦ୍ଭୁତ ସ୍ୱର ଝଙ୍କାର । ଗଦି ଉପରେ ଆଉଜି ବସିଥିଲେ ଜଣେ ଭଦ୍ରବ୍ୟକ୍ତି । ସୁନା ଚିହ୍ନେଇ ଦେଲା, ସେ ହେଲେ ଖୋଦ୍ ମିଶ୍ରନନା । କିଞ୍ଚିତ ଆବ ରଣ ଥିବା ଗୋଟିଏ ଝିଅ ନାଚୁଥିଲା ଅଦ୍ଭୁତ ଭଙ୍ଗୀରେ । ଢୁଲୁଢୁଲୁ ଆଖିରେ ମିଶ୍ରନନା ଉପଭୋଗ କରୁଥିଲେ ସେ ଝିଅଟିର ନାଚକୁ । ଆଉ ମିଶ୍ରନନାଙ୍କ ସାଙ୍ଗ କେଇଜଣ ବାହାବା ଦେଉଥିଲେ ଅତି କୁତ୍ସିତ ଢଙ୍ଗରେ ।

ଆମେ ସହରରେ ବାଇଜୀନାଚ କଥା ଶୁଣିଥିଲୁ କିନ୍ତୁ କେବେହେଲେ ଆଖିରେ ଦେଖିବାର ସୁଯୋଗ ପାଇନଥିଲୁ । ଅଥଚ ଏଭଳି ନିଷିଦ୍ଧ ଜଗତ ପ୍ରତି ଆମେ ଅନୁଭବ କରିଥିଲୁ ଏକ ତୀବ୍ର ଆକର୍ଷଣ ।

ଏମିତି ରାତିପରେ ରାତି, ବଗିଚାର ଅନ୍ଧାର, ବଣ-ବୁଦା, ସାପ-ବିଛାର ଭୟକୁ ବେଖାତିର କରି ଆମେ ଧାଉଁଥିଲୁ ସେଇ ବାଗାନବାଡ଼ି ପାଖକୁ । ସେହି ନିଷିଦ୍ଧ ରାଇଜର ତୀବ୍ର ଆକର୍ଷଣ ଆମ ତିନିଜଣଙ୍କୁ ପାଗଳ କରି ପକେଇଥିଲା କହିଲେ ଚଳେ ।

ସେଦିନ ଆମେ ବାଗାନବାଡ଼ିର ଅଶ୍ଳୀଳ ଗୀତର କେଇପଦକୁ ଗୁଣୁଗୁଣୁ କରି ଗାଇ ଫେରିଥିଲୁ ପଢ଼ାଘରକୁ । ଆଖି ଆଗରେ ଭୂତ ଦେଖି ଆମେ ତିନିଜଣ ଯାକ ଚମକି ଉଠିଲୁ । ଲଣ୍ଠନରେ ଅନୁଜ୍ଜ୍ୱଳ ଆଲୁଅରେ ଆମେ ଦେଖିଲୁ, ପଢ଼ାଘରେ ଠିଆ ହୋଇଥିଲେ ସ୍ୱୟଂ ନୂଆବୋହୂ । ପାନପତରିଆ ଚକାମୁହଁରେ ନଅର ପଥର ଦେହରୁ ଠିକ୍‌ରି ଆସୁଥିଲା ଆଲୁଅର ଝଲକ । ଏତେ ରାତିରେ ଆମେ ପଢ଼ାଘରେ ରାଗ ଜର ଜର ହେଇ ଦେଖିବୁ ନୂଆ'ଉଙ୍କୁ ଏକଥା ଆମେ କଳ୍ପନା ଅବା କରିବୁ କାହିଁକି ? ସେ ଏକ ନିଦାରୁଣ ମୁହୂର୍ତ୍ତ । ଅଜଣା ଆତଙ୍କ ଆଉ ଅପରିସୀମ ଲଜ୍ଜାରେ ଆମେ ସମସ୍ତେ ଜୁବୁଥୁବୁ ହୋଇଗଲୁ । ନୂଆ'ଉ ଆମର ସମବୟସୀ ସାଙ୍ଗ ବୋଲି ଆମେ ଅନେକ ସମୟରେ ଥଟ୍ଟା-ପରିହାସ ଏପରିକି କଳି ତକରାଳ କରିବାକୁ କୁଣ୍ଠା ଅନୁଭବ କରୁ ନଥିଲୁ । ହେଲେ ସେଇ ମୁହୂର୍ତ୍ତରେ ଆମେ ବୁଝିପାରିଲୁ, ଆମ ମନ ରାଇଜରେ ଥିଲା ଏକ ଦୀର୍ଘ ବ୍ୟବଧାନ । କାରଣ ଆମର ଏ ପ୍ରକାର ଗର୍ହିତ ଅପକର୍ମକୁ ଆମେ ଚାହୁଁଥିଲୁ ତାଙ୍କ ଆଖିରୁ ଲୁଚେଇ ରଖିବାକୁ । କିନ୍ତୁ ଆମେ ଧରାପଡ଼ିଗଲୁ, ଏବଂ ସେଇ ଗ୍ଲାନିରେ ଆମେ ଦବିଗଲୁଁ । ସାଇରେ, ଘରେ ଆମେ ସୁନାପିଲା ରୂପେ ପରିଚିତ । ନୂଆ'ଉଙ୍କ ଆଖିରେ ଆମର ଭାବମୂର୍ତ୍ତି କ୍ଷୁଣ୍ଣ ହୋଇଯାଉ, ଏକଥା ଆମେ ଚାହୁଁନଥିଲୁ । ସେ ଏବେ ମୁରବୀ ଢଙ୍ଗରେ କଠିନ ସ୍ୱରରେ ପ୍ରଶ୍ନ କଲେ; 'ପଦୁ, ନୀର ତୁମେ ସବୁ କେବେଠୁଁ ଏମିତି ପାଇଚି ଗଲଣି ? ତୁମ ଭଳି ପିଲା ଶେଷକୁ ଏଇୟା କରୁଚ ? ଛି ଛି ।' ଆଶ୍ଚର୍ଯ୍ୟ ହୋଇ ଆମେ ଦେଖିଲୁ, ତୀବ୍ର ସ୍ୱରରେ ଆମକୁ ଭର୍ତ୍ସନା କରୁ କରୁ ନୂଆ'ଉଙ୍କ କଣ୍ଠ ଅବରୁଦ୍ଧ ହେଇଗଲା ଏବଂ ତାଙ୍କର ବି' ଆଖିରେ ଲୁହ ଜମି ଉଠିଥିଲା ।

ଲାଜ ଅପମାନରେ ଆମେ କାଠ ପାଇଚି ଗଲୁ । ଅନେକ ଦିନଯାଏ ଆମେ ବୁଝି ପାରି ନଥିଲୁ ଯେ ଭଲ ପିଲା ବୋଲି ଆମର ଯେଉଁ ସୁନାମ ଥିଲା ସେଇ ସୁନାମରେ ଆଞ୍ଚ ଲାଗିବ ବୋଲି ନୂଆ'ଉଙ୍କ ମନରେ କଷ୍ଟ ହେଲା ନାଁ ତାଙ୍କର ସ୍ୱାମୀ ମିଶ୍ରନନାଙ୍କ ନିଷିଦ୍ଧ ଜୀବନର ରହସ୍ୟର ପରଦା ଆମ ଆଖି ଆଗରୁ ଅପସରି ଯିବାର ଲଜ୍ଜାରେ ସେ ବିଚଳିତ ହୋଇ ପଡ଼ିଥିଲେ । ପଦୁ କିମ୍ବା ମୁଁ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇପାରି ନଥିଲୁ । ସେ ଯାହା ହେଉନା କାହିଁକି କ୍ଷଣିକରେ ନୂଆ'ଉଙ୍କର ସବୁତକ ରାଗ ଅଜାଡ଼ି ପଡ଼ିଲା ବିଚାରୀ ସୁନା ଉପରେ । ତା' ବାଳଗୋଛାକୁ ହାତମୁଠାରେ ଟାଣିଧରି ନୂଆ'ଉ ରଣଚଣ୍ଡୀ ଭଳି ଗର୍ଜି ଉଠିଲେ । କହିଲେ, 'ଏଇ ପୋଡ଼ାମୁହିଁ ସୁନାହିଁ ସବୁ ନଷ୍ଟର ମୂଳରେ । ଏଡ଼େବଡ଼ ଧାଙ୍ଗଡ଼ ମାଇକିନିଆ ହେଲାଣି, ବାହା ହେଇଥିଲେ ହେଂସରେ ହେଂସେ ପିଲା ଗଢୁଥାନ୍ତେ ।

ପୋଡ଼ାମୁହଁର ଟିକିଏ ହେଲେ ଅକଲ ଥାଆନ୍ତା । କାଲି ରାତି ନ ପାହୁଣୁ ତୋତେ ଯଦି ଏଠୁ ବିଦା କରି ନ ଦେଇଚି ତ ମୋ ନା ନାହିଁ ।'

ସେଇ ଭୟଙ୍କର ମୁହୂର୍ତ୍ତରେ ସୁନା ଉପରେ ବଜ୍ରପାତ ହେଲା । ଆମ୍ଭେ ଦୁହେଁ ନିସ୍କୃତି ପାଇଗଲୁ । ରାତିରେ ଏଡ଼େବଡ଼ ଦୁର୍ଘଟଣାଟାଏ ଘଟିଗଲା ହେଲେ ତା' ଆରଦିନ ପଦୁ ଆଉ ମୁଁ ଦେଖିଲୁ ଆକାଶରେ ମେଘର ଚିହ୍ନ ବର୍ଣ୍ଣ ନ ଥିଲା । ଝଡ଼ ବର୍ଷା ଶୀତ-କାକର ଭଳି ରାତିର ଘଟଣା ପ୍ରକୃତିରେ ହଜି ଯାଇଥିଲା । ନିତିଦିନିଆ ସକାଳେ ସୂର୍ଯ୍ୟ ସ୍ୱାଭାବିକ ଢ଼ଙ୍ଗରେ ଆକାଶରେ ଉଇଁଲା ଭଳି ସୁନାକୁ ଆମେ ଦେଖିଲୁ ନିର୍ବିକାର ଚିତ୍ତରେ ସେ ଉଆସର କାମରେ ଲାଗିଥିଲା ।

ହେଲେ ସେହି ଘଟଣାରୁ ମୋ' ଆଖି ଆଗରୁ ନୂଆଁବୋହୂଙ୍କ ଜୀବନର ଆଉ ଏକ ରହସ୍ୟର ପରଦା ଧୀରେ ଧୀରେ ଖୋଲି ଗଲା । ସେଇ କେତୋଟି ରାତିର ବାଗାନ ବାଡ଼ିର ଦୃଶ୍ୟକୁ ମୁଁ ମନରୁ ପାସୋରି ଦେଇ ପାରୁ ନଥାଏ । ସେଇ ବତୀଝାଡ଼ର କାଚରେ ଆଲୁଅର ଝଲମଲ ଦୃଶ୍ୟ ନୁହେଁ କିମ୍ବା ଅଶ୍ଳୀଳ ସଙ୍ଗୀତର ସ୍ୱର ଝଙ୍କାର ନୁହେଁ । ହାତୁଆ ହାତରେ ସୁନାକଢ଼ ଚମ୍ପାମାଳ ସାଙ୍ଗକୁ ଲମ୍ବା ବେକରେ ଧଳା ମଲିଫୁଲର ଗଜରାମାଳ, ଆଉ ମଠାକନାର ଢ଼ିଲା ପଞ୍ଜାବୀ ପିନ୍ଧିଥିବା ମିଶ୍ରନନାଙ୍କର ଚେହେରା ମୋ' ଆଖିରେ ନାଚିବାକୁ ଲାଗିଲା । ଗାଲର ସ୍ପଷ୍ଟ ହନୁହାଡ଼ ସାଙ୍ଗକୁ ନାକ ତଳର ପ୍ରକାଣ୍ଡ ମୁଛ ନିହାତି ବେମାନାନ ବୋଧ ହେଉଥିଲା । ମୁଁ ବୁଝି ପାରୁନଥିଲି, ସେଇ କଙ୍କାଳସାର ଲୋକଟିକୁ ସାଇ ପଡ଼ିଶାର ଲୋକେ କାହିଁକି ବାଘ ଭଳି ଭୟ କରୁଥିଲେ । ମୋର ବୟସ ଅଳ୍ପ । ସାଂସାରିକ ବୁଦ୍ଧି ହେଇନଥିଲା । କିନ୍ତୁ ଏତିକି ବୁଝିବାର ବୟସ ନିଶ୍ଚୟ ହୋଇଥିଲା ଯେ ନୂଆବୋହୂଙ୍କ ଭଳି ଅଳ୍ପ ବୟସର ଏମିତି ସୁନ୍ଦର ଝିଅଟିକୁ କୌଣସି ବାପ ମା ସେଇ ଲୋକଟି ହାତକୁ ମନ ଖୁସିରେ କେବେହେଲେ ଟେକିଦେବ ନାହିଁ ।

ମୁଁ ସମ୍ଭାଳି ପାରିଲି ନାହିଁ । ପଦୁକୁ ଏକାନ୍ତରେ ପଚାରିଦେଲି । କିନ୍ତୁ ପଦୁ ମୁହଁରୁ ଯାହା ଶୁଣିଲି ସେଥିରେ ମୁଁ ଆକାଶରୁ ଛିଡ଼ି ପଡ଼ିଲି । ଶୁଣିଲି, ଏଇ ନୂଆବୋହୂ ମିଶ୍ରନନାଙ୍କ ପ୍ରଥମ ପକ୍ଷର ସ୍ତ୍ରୀ ନୁହନ୍ତି, ତୃତୀୟ ପକ୍ଷର । ନୂଆବୋହୂଙ୍କୁ ଘରକୁ ଆଣିବା ଆଗରୁ ମିଶ୍ରେ କରଞ୍ଜଗଛ ସଙ୍ଗେ ବାହା ହୋଇଥିଲେ ଏବଂ ସେଇ ବିଶିଷ୍ଟ କରଞ୍ଜଗଛଟି ବଗିଚାରେ ପୋଖରୀ ହୁଡ଼ାରେ ଜୀବନ୍ତ ସାକ୍ଷୀ ହୋଇ ରହିଥିଲା । ଏକଥା ଜାଣି ନୂଆବୋହୂଙ୍କ ପାଇଁ ମୋ ମନରେ ନିଦାରୁଣ କଷ୍ଟ ସଂଚରିତ ହେବାକୁ ଲାଗିଲା । ମନେ ମନେ ମୁଁ କଳ୍ପନା କରି ନେଲି ଯେ ମିଶ୍ରନନାଙ୍କ ଆଗ ଦୁଇ ବୋହୂ ନଇସେପାରି ଗାଁର ଉଆସରେ ଏବେବି ରହିଛନ୍ତି । ଏବଂ ନୂଆ'ଉଙ୍କୁ ମିଶ୍ରେ ଏଠି ଆଣି ରଖିଛନ୍ତି । ମିଶ୍ରନନାଙ୍କ ବିରୁଦ୍ଧରେ ରାଗରେ ମୋ ମନ ଜଳିବାକୁ ଲାଗିଲା । କିନ୍ତୁ ପଦୁ କହିଲା, 'ନା, ସେ ବୋହୂମାନେ ଜୀବନରେ

ନାହାନ୍ତି । ଛୁଆପିଲା କାହାରି ନାହାନ୍ତି ଏବଂ ନୂଆ'ଉଙ୍କ ଛୁଆ ପିଲା ନ ହେଲେ ତାଙ୍କର ଅବସ୍ଥା କ'ଣ ହେବ କିଏ ଜାଣେ ?'

'ମାନେ ?' ମୁଁ ପଚାରିଲି ପଦୁକୁ । ପଦୁ ସ୍ପଷ୍ଟ କିଛି କହି ପାରି ନ ଥିଲା । ସାଇପଡ଼ିଶାର ମାଇପି ମହଲରୁ ଶୁଣିବା କଥା । ସୁନା ପାଖରୁ ଜାଣିବା କଥା । ଆଗ ଦି' ବୋହୂଙ୍କ ମୃତ୍ୟୁ ଅନ୍ତରାଳରେ କିଛି କିଛି ରହସ୍ୟ ଛପି ରହିଥିଲା ।

ସମବେଦନାରେ ଉତ୍‌କଣ୍ଠିତ ହେଇ ପଦୁ ମୋତେ କହିଥିଲା, 'ନୂଆବୋହୂଙ୍କର କଷ୍ଟ ତୁ ଠିକ୍ ବୁଝିବୁନି ନୀର ।'

ସେଇଟା ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟର ଇଂରେଜ ରାଜତ୍ୱର ଭୟଙ୍କର ଯୁଗ । କାଳମହରଗ । କଳାବଜାରୀ, କୀଳାପୋଡେଇର ଯୁଗ । ସହରରେ ଲୁଗା ନ ଥିଲା କି ଚାଉଳ ନ ଥିଲା । ଚିନି କିରାସିନି ସପନ । ସଞ୍ଜହେଲେ ସହରଟା ମଶାଣି ଭଳି ଅନ୍ଧାର । ଭାତ ମୁଠେ ଖାଇବାକୁ ନ ପାଇ ପୋକ ମାଛି ଭଳି ସଡ଼କ ଉପରେ ଦାଣ୍ଡର ଭିକାରି ପଡ଼ିମରି ରହିବାର ଆମେ ଦେଖୁଥିଲୁ । କିନ୍ତୁ ମିଶ୍ର ନନାଙ୍କ ଉଆସରେ ସେ ମହରଗ ସେ ଦୁର୍ଦ୍ଦିନର ଛାଇ ପଡ଼ି ନଥିଲା । ନାକରେ ନଥା, ମୁଣ୍ଡକୁ ସୁନାର ସିନ୍ଥି, କାନରେ ଝୁମୁକା, ବେକରେ ଚମ୍ପାକଢ଼ ସୁନାମାଳି । ନୂଆବୋହୂଙ୍କ ଗୋରାଦେହ ଛାଇ ଯାଇଥିଲା ସୁନାରୁପାର ଅଳଙ୍କାରରେ । ଏଭଳି ଉଆସରେ ମଧ ନୂଆବୋହୂଙ୍କର ଆତ୍ମାର କଷ୍ଟ ତାଙ୍କର ଯନ୍ତ୍ରଣା ପିଟି ହେଉଥିଲା ପଥରର ଚଟାଣରେ ଚୂନ ଧଉଳା କାନ୍ଥରେ ।

ନୂଆବୋହୂଙ୍କ ପାଇଁ ଆମ ମନ ମଧ କାନ୍ଦୁଥିଲା । ସେ ଏକ ଅକୁହା ବେଦନା, ଅପ୍ରକାଶ୍ୟ ଯନ୍ତ୍ରଣା । ପଦୁ ମୋତେ ଆଶ୍ୱାସନା ଦେଇ କହିଥିଲା, ଏଥର ନୂଆବୋହୂଙ୍କର ଦୁଃଖ ଦୂର ହେଇଯିବ । ଜଣେ କାପାଳିକ ମଶାଣି ଚଣ୍ଡୀ ପୂଜା ଅନୁଷ୍ଠାନ କରୁଛନ୍ତି । ପ୍ରତି ଶନିବାର ସଞ୍ଜକୁ ମୁଁ ଫଳମୂଳ ଧରି ଠାକୁରାଣୀଙ୍କ ପୂଜାପାଇଁ କାପାଳିକ ପାଖରେ ଦେଇ ଆସୁଛି । ସେ ମୋତେ ଆହୁରି କହିଥିଲା ଯେ ଆଗାମୀ ଶନିବାର ଦିନ ଉଆଁସ ପଡୁଛି । ସେଇଟା କୁଆଡ଼େ ନୂଆବୋହୂଙ୍କ ଜାତକରେ ଏକ ଅତି ପବିତ୍ର ଅତି ଅନୁକୂଳ ରାତି । ଆଜିକି ବର୍ଷେ ହେଲା ନୂଆବୋହୂ ଯେଉଁ ବ୍ରତ ପାଳନ କରୁଛନ୍ତି, ଏଇ ଶନିବାର ଉଆଁସ ରାତିରେ କାପାଳିକ ଶେଷ ପୂଜା କରିବେ । ସେ ପୂଜା ସଇଲେ, କାପାଳିକ ମନ୍ତୁରା ମନ୍ଦାର ଆ ଉ ସିନ୍ଦୁର ଦେଇଯିବେ ଏବଂ ନୂଆବୋହୁ ସେଇ ଫୁଲ ଆଉ ସିନ୍ଦୁ ର ମିଶ୍ରନନାଙ୍କୁ ଛୁଏଁଇ ଦେଲେ ସେ ବଶୀଭୂତ ହେବେ । କାପାଳିକ ଜବାବ ଦେଇଛି ବର୍ଷକ ଭିତରେ ନୂଆବୋହୂଙ୍କ କୋଳ ପୂରି ଉଠିବ ।

ପଦୁ କହିଲା, ୨ବୁଝିଲୁ ନୀର ସେଇ ଶନିବାର ଉଆଁସ ରାତିରେ ଆମେ ନୂଆବୋହୂଙ୍କୁ ସାଙ୍ଗରେ ନେଇ ମଶାଣିଚଣ୍ଡୀଙ୍କ ପାଖକୁ ଯିବା ।'

କାପାଳିକ ବିଷୟରେ ମୋ ମନରେ ଭୟଙ୍କର ଭୟ ଥିଲା । ପୁଣି ମଶାଣିଚଣ୍ଡୀ କଥା ଶୁଣି ମୁଁ ଆତଙ୍କରେ ଅସ୍ଥିର ହେଲି । ନୂଆବୋହୂଙ୍କୁ ସାଙ୍ଗରେ ନେଇ ଯିବା କଥା ଶୁଣି ମୁଁ ମୋଟେ ସମର୍ଥନ କରିପାରିଲି ନାହିଁ । ମୁଁ ପଦ୍ମକୁ ବାଧା ଦେଇ କହିଲି, 'ରାତିରେ ନୂଆବୋହୂ ଘର ଛାଡ଼ି ମଶାଣିକି ଯିବେ । ଏ କଥା ମିଶ୍ରେ ଜାଣିଲେ ଅବସ୍ଥା କ'ଣ ହେବ ତୁ ଜାଣିଛୁ ପଦ୍ମ ? ମିଶ୍ର ନନା ଯେଉଁ ରାଗୀଲୋକ ।'

ପଦ୍ମ ମୋତେ ଅଭୟବାଣୀ ଶୁଣେଇ କହିଲା, 'ତୁ ସେକଥା ଚିନ୍ତାକର ନାହିଁ, ମିଶ୍ରନ୍ନା ବାଗାନବାଡ଼ିରୁ ଫେରିବା ଆଗରୁ ନୂଆ'ଉ ସଂକଳ୍ପ ଟିକକ ସାରି ତୁରନ୍ତ ଉଆସକୁ ଫେରିଆସିବେ । କୁଆ-କୋଇଲି ଜାଣିବେ ନାହିଁ । ନୂଆ'ଉ ସଂକଳ୍ପ ଗୁଆ କାପାଳିକ ରାତିଯାକ ପୂଜା କରିବେ । ତା' ଛଡ଼ା, ସୁନା ଉଆସରେ ଜଗି ରହିବ । ସେ ଅବସ୍ଥା ସମ୍ଭାଳିନେବ ।'

ନୂଆବୋହୂଙ୍କ ଭଲ ପାଇଁ ଆମେ ସବୁ କିଛି କରିବାକୁ ତିଆର ଥିଲୁ । ସେହି ଶନିବାର ଉଆଁସ ରାତି ଆସିଲା । ସୁନା ଆମକୁ ସଙ୍କେତ ଦେଲା । ମିଶ୍ରନ୍ନା ବାହାରି ଗଲେଣି ବାଗାନ ବାଡ଼ିକି । ଯେଉଁ କାମ କଲେ ନୂଆବୋହୂଙ୍କ ଜୀବନରେ ମଙ୍ଗଳ ହେବ ସେ କାମକୁ ଆମେ ପଛେଇଲେ ଚଳିବ କାହିଁକି ? ସୁତରାଂ ଶ୍ୱେତ ମନ୍ଦାର, ଧଳା ଅପରାଜିତା ଭଳି ଦୁର୍ଲଭ ଫୁଲ ସବୁ ସଂଗ୍ରହ କରି ନୂଆବୋହୂଙ୍କୁ ସାଙ୍ଗରେ ଧରି ପଦ୍ମ ମୁଁ ଦିହେଁ ବାହାରି ପଡ଼ିଲୁ ମଶାଣି ଆଡ଼କୁ ।

ଆସ୍ଥାନରେ ପ୍ରାୟ ଉଲଗ୍ନ କାପାଳିକକୁ ଦେଖି ଆମର ଚେତା ବୁଡ଼ିଯିବା ଉପରେ । ସେ ଏକ ଭୟଙ୍କର ମୂର୍ତ୍ତି । ଛୋଟିଆ ନାଲି କନାର କୌପୀନ । ଗଳାରେ ହାଡ଼ ଆଉ ରୁଦ୍ରାକ୍ଷ ମାଳ । କପାଳରେ ଲାଲ ସିନ୍ଦୂର । ମୁଣ୍ଡରେ ଫୁବ୍ ଫୁବ୍ ଜଟା କଣ୍ଠରେ ଅବୁଝା ମନ୍ତ୍ର ଧ୍ୱନୀ, ଓଁ, ହ୍ରୀଂ, କ୍ଲୀଂ, ସ୍ୱାହା-ଫଟ୍ ସ୍ୱାହା । ଭୟରେ ଆମେ ଥର ହର । ଉପବାସରେ ଆଉ ଉତ୍ତେଜନାରେ ଥରୁଥିଲା ନୂଆ ବୋହୂଙ୍କ ସର୍ବାଙ୍ଗ । ନୂଆ'ଉକୁ ସଂକଳ୍ପ ଆସନରେ ବସେଇ ଅବୁଝା ଶବ୍ଦରେ ମନ୍ତ୍ର କହୁଥିଲେ କାପାଳିକ । କାପାଳିକର ଆଖି ଦି'ଟା ଜଳୁଥିଲା ମଶାଣିର ମଶାଲ ଭଳି । ଆମେ ଦିହେଁ ନଥିଲେ-ନୂଆବୋହୂ ଅଚେତ ହେଇ ପଡ଼ିଥାନ୍ତେ କି କ'ଣ !

ସଂକଳ୍ପରେ ବେଶ କିଛି ସମୟ ବିତି ଯାଇଥିଲା । ସଂକଳ୍ପର ଗୁଆ ଟେକି ଦେଇ ନୂଆବୋହୂ ଥରି ଥରି ଫେରିଲେ ଆମ ସାଙ୍ଗରେ । ଅଧା ହିନ୍ଦୀ ଅଧା ଓଡ଼ିଆରେ ନିର୍ଭର ପ୍ରତିଶ୍ରୁତି ଦେଉଥିଲା ସେଇ ଭୟଙ୍କର ମୂର୍ତ୍ତି କାପାଳିକ । 'କୁଛ୍ ପରୱାୟ ନେହୀ ମା । କାଲି ସୁବହ-ହାମ୍ ମନ୍ଦାରକୀ ଫୁଲ ଔର ସିନ୍ଦୂର ଦେଗା । ହମାରା ବଶୀକରଣ ମନ୍ତ୍ର ଦେଖୋ । ଔର ଜରୁର୍ ତୁମହାରୀ ଗୋଦ୍‌ମେ ବେଟା ଖିଲେଗା । ହଁ ଡରୋ ମତ୍ କୁଛ ନେହୀ ହୋଗା । ତୁମ ଚଲେଯାଓ । ହମ୍ ମନ୍ତ୍ର ବୋଲତା ହୈ ।'

ନୂଆବୋହୂ ପୁଣି ଜୁହାର କରି ଆମ ସାଙ୍ଗରେ ଆସିଲେ । ମଣିଷ ଖପୁରି, ମାଛ ମାଛ ହାଡ଼ ଭର୍ତ୍ତି ମଶାଣିର ନିର୍ଜନ ଆକାଶକୁ କମ୍ପେଇ ଭାସି ଆସୁଥିଲା କାପାଳିକର କଣ୍ଠରୁ ମନ୍ତ୍ରଧ୍ୱନୀ - ଓଁ ହ୍ରୀଂ କ୍ଲୀଂ କାଳୀକାଏ ନମଃ ।

ରାତି କେତେ କିଏ ଜାଣେ । ଅନ୍ଧାରରେ ମଣିଷ ଖପୁରି, ହାଡ଼, ଜୁଇର ଦରପୋଡ଼ା କାଠ ଏ ସବୁକୁ ଭ୍ରୂକ୍ଷେପ ନ କରି ଆମେ ଘରମୁହାଁ ଧାଇଁ ଥାଉ ଜୀବନ ବିକଳରେ । କିନ୍ତୁ ଭୋକ ଓପାସରେ ଦୁର୍ବଳ ନୂଆବୋହୂ ଆମସଙ୍ଗେ ଧାଇଁ ପାରିବେ କୁଆଡୁ ? ସେ ବାରମ୍ବାର ପଛରେ ପଡ଼ିଯାଉଥାନ୍ତି ।

ବାଡ଼ିପଟେ ଗେଟ୍ ପାରେଇ ଆମେ ଘରକୁ ପଶିବାକୁ ଯାଉଥାଉ । ମିଶ୍ରନନାଙ୍କ ଭୟଙ୍କର ଚିତ୍କାର ଶୁଣି ଆମେ ଚମକି ଉଠିଲୁଁ । ମିଶ୍ରନନାଙ୍କ ସେ ଭୟଙ୍କର ମୂର୍ତ୍ତି ଆଗରେ ସିନ୍ଦୂରବୋଳା ସେ କାପାଳିକର ଉଲଗ୍ନ ମୂର୍ତ୍ତି ମଧ ତୁଚ୍ଛ ମନେ ହେଲା ।

ମିଶ୍ରନନା ନୂଆ'ଉକୁ ଲକ୍ଷକରି ଘାଉଲା ବାଘ ଭଳି ଗର୍ଜି ଉଠିଲେ, 'ଏୟ ସେଇଠି ଠିଆ ହ ।'

ନୂଆବୋହୂ ଅଟକି ଗଲେ ।

ତାଙ୍କ ପଛରେ ଆମେ ମଧ ଅଟକି ଗଲୁ ।

'କାହା ଅନୁମତି ନେଇ ଉଆସରୁ ଗୋଡ଼ କାଢ଼ିଥିଲୁ ?'

'ଆଜି ଶନିବାର ଉଆଁସ, ପୂଜାପାଇଁ କାଳୀ ମନ୍ଦିରକୁ ଯାଇଥିଲି ।' ବିନୀତ କଣ୍ଠରେ ନୂଆ'ଉ କହୁଥିଲେ ।

'କ'ଣ କେହିଲୁ ପୂଜା ?' ଏତକ କହି ଅକସ୍ମାତ୍ ଗୋଇଠାଟିଏ ମାରିଲେ ମିଶ୍ରନା । ମଦ ନିଶାରେ ଟଳି ଟଳି ସେ କହୁଥିଲେ, 'ଯୋଉ ଘଇତା ପାଖକୁ ଯାଇଥିଲୁ ସେଠିକି ଚାଲିଯା । ଉଆସରୁ ଥରେ ପାଦ କାଢ଼ିଲେ ସେ ମାଇକିନିଆର ଥାନ ଆଉ ମିଶ୍ରଘର ଉଆସରେ ନଥାଏ ଏକଥା ମାଲୁମ୍ ନାହିଁ ?'

ଗୋଇଠା ମାଡ଼ ଖାଇ, 'ବୋଉଲୋ' କହି ଆର୍ତ୍ତ ଚିତ୍କାର କରି କଟା ଗଛ ଭଳି ନୂଆବୋହୂ ତଳେ ପଡ଼ିଗଲେ । ଅକୁହା ବେଦନାରେ ଆମେ ମଧ କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲୁ । ଅପ୍ରକାଶ୍ୟ ଯନ୍ତ୍ରଣାରେ ଚିତ୍କାର କଲା ଆମର କିଶୋର ପ୍ରାଣ ।

ତେଣେ ନିଶା ଘୋରରେ ନୂଆବୋହୂଙ୍କର ବାପ ଚଉଦପୁରୁଷକୁ ଉଦ୍ଧାର କରି ଚିତ୍କାର କରୁଥିଲେ ମିଶ୍ରନନା । କିନ୍ତୁ କିଏ ଜାଣିଥିଲା ପର ମୁହୂର୍ତ୍ତରେ ଏପରି ଦୁର୍ଘଟଣାଟି ଘଟିଯିବ ବୋଲି । ପାଗଳଭଳି ଚିତ୍କାର କରୁଁ କରୁଁ ମିଶ୍ରନନା ମଧ ଅଜ୍ଞାନ ହୋଇ ଭୂଇଁରେ ଲୋଟି ପଡ଼ିଲେ ।

ଆମେ ଆଉ କାନ୍ଦିବୁ କ'ଣ ? ସବୁ ଭୁଲିଗଲୁ । ନୂଆବୋହୂଙ୍କର ଅଚେତ ଦେହକୁ ଘରକୁ ଟେକି ନେଲୁ । ଟେକି ନେଇଗଲୁ ମିଶ୍ରନନାଙ୍କ ଅଚେତ ଦେହକୁ । ସୁନା ଜିମାରେ ଦି'ଜଣଙ୍କୁ ରଖି ସବୁଦିନ ପାଇଁ ଆମେ ଫେରି ଆସିଥିଲୁ ସେ ଉଆସ ହତାରୁ ।

ଜିପ୍‌ରେ ବସି ପଦୁ ପାଖରୁ ଶୁଣିଲି, କେଇବର୍ଷ ପକ୍ଷାଘାତ ରୋଗରେ ପଡ଼ି ମିଶ୍ରନା ଚାଲିଯାଇଥିଲେ । କାପାଳିକର ପ୍ରତିଶ୍ରୁତି ଅନୁସାରେ ମଶାଣି ଚଣ୍ଡୀଙ୍କ ମନ୍ଦାର ଆଉ ସିନ୍ଦୂର ଲଗାଇ ନୂଆବୋହୂ ମିଶ୍ରନନାଙ୍କୁ ବଶୀଭୂତ କରିଥିଲେ କି ନାହିଁ ସେ କଥା ପଦୁ କହିପାରିଲା ନାହିଁ । ହେଲେ, ନୂଆ'ଉଙ୍କ କୋଳ ସବୁଦିନ ପାଇଁ ଶୂନ୍ୟ ରହିଯାଇଥିଲା ।



# ବିଜୁଳି : କଳାମେଘରେ

ତୁଲୁର ଝିଅ, କଲ୍ୟାଣୀର ବାହାଘର । ନିମନ୍ତ୍ରଣ କରିବାକୁ ସୁଦୂର କୋରାପୁଟରୁ ଆସିଥିଲେ ତୁଲୁର ସ୍ତ୍ରୀ, ରୀନାଦେବୀ । ଖବର ଶୁଣି ମୁଁ ଖୁସିହେଲି । କିନ୍ତୁ ରୀନାଦେବୀ ଯେତେବେଳେ କହିଲେ, ତୁଲୁ ଘର ଛାଡ଼ି ନିରୁଦ୍ଦିଷ୍ଟ ହୋଇଯାଇଛି କିମ୍ବା ଆତ୍ମହତ୍ୟା କରିଛି, ମୁଁ ଚମକି ଉଠିଲି । ସେଇ ମୁହୂର୍ତ୍ତରେ ମୋ ଆଖିଆଗରେ ଭାସି ଉଠିଲା ଛ'ମାସ ତଳର ହରଦ୍ୱାରରେ ଦେଖିଥିବା ସେଇ ଗୌରବର୍ଣ୍ଣର ସନ୍ନ୍ୟାସୀର ରୂପଟି ।

ତୁଲୁ, ମୋ ପିଲାଦିନର ଅନ୍ତରଙ୍ଗ ସାଙ୍ଗ । ଏଇତ ସେଦିନର ଘଟଣା । ସେଦିନ ଘରୁ ରାଗକରି ପଳେଇ ଆସିଥିଲା ଆମ ଘରକୁ । ଶୁଖିଲା ମୁହଁ, ନୁଖୁରା ବାଳ, ଉଦାସ ଆଖି । ପରିବେଶକୁ ହାଲୁକା କରିବାପାଇଁ ମୁଁ ପଚାରିଲି, ତୁଲୁ ଚା ଖାଇବୁ ? ସେ ସଫା ଜଣେଇ ଦେଇଥିଲା, ନା, ଚା ଫା କିଛି ଖାଇବିନି । କିନ୍ତୁ ଚା ଥିଲା ତୁଲୁର ଅତି ପ୍ରିୟବସ୍ତୁ । ଏକଥା ସ୍ନେହକୁ ଜଣାଥିଲା । ତେଣୁ ଚା ଗିଲାସ ଧରି ସ୍ନେହ କହିଥିଲା, କି ଆଶ୍ଚର୍ଯ୍ୟର କଥା ଲୋ ମା, ତୁଲୁବାବୁ ଆଜି ଚା' ଖାଇବେନି ? ନିଶ୍ଚୟ ଘରୁ ରାଗି ଆସିଛନ୍ତି ।

ମୁଁ କହିଥିଲି, ଘରେ ରାଗିଛ ଭଲ କଥା । ହେଲେ ତୋ' ସ୍ନେହ ଭାଉଜଙ୍କ ହାତର ଚା'ଟା କି ଦୋଷ କଲା ? ପିଇ ଦେ ।

ସିଗାରେଟ୍ ଧୂଆଁର କୁଣ୍ଡଳି ଛାଡ଼ି ରୁକ୍ଷ ସ୍ୱରରେ ସେ କହିଲା, କହିଲି ପରା, ଚା ଫା କିଛି ଖାଇବିନି ।

କିନ୍ତୁ ତୋ' ରାଗର କାରଣଟାତ କହିବୁ ?

କାରଣ ଜାଣି ତୁ ଭଲା କ'ଣ କରିବୁ ? ଅଭିମାନର ମୁହଁକୁ ବିକୃତ କରି ମୋତେ ଚାହିଁଲା ତୁଲୁ ।

ତୁଲୁ, ଅର୍ଥାତ ତୁଷାରକାନ୍ତିର ସ୍ୱାଭାବିକ ଚେହେରା ଭାରି ସୁନ୍ଦର । ସ୍ୱଭାବ ମନୋମୁଗ୍ଧକର ତେଣୁ ଆମେ ସମସ୍ତେ ତାକୁ ଭଲ ପାଉଥିଲୁ । କିନ୍ତୁ ଗୋରା, ସୁନ୍ଦର ମୁହଁରେ ରଢ଼ ଅଭିବ୍ୟକ୍ତି ଭଲ ଦିଶେନି, ଏକଥା ତୁଲୁ ବୁଝିପାରେନି । ତାର ଏଭଳି ବିକୃତ ମୁହଁ ଦେଖିଲେ ମନରେ କଷ୍ଟ ହୁଏ ।

କିନ୍ତୁ ତୁଲୁ ଯେତେବେଳେ ତାର ମନ କଥା ଖୋଲି ଆମକୁ ଜଣେଇଦେଲା, ଆମେ ପଥର ପାଲଟି ଗଲୁ । କାରଣ ସେ ପରା ଟୀନା ମାଉସୀକୁ ଭଲପାଏ । ସେମାନଙ୍କ ପ୍ରେମ ଅତ୍ୟନ୍ତ ଗଭୀର । ଏବଂ ସେ ଟୀନା ମାଉସୀକି ବାହା କରିବ ନଚେତ୍ ଆତ୍ମହତ୍ୟା କରିବ !

ତୁଲୁ ଭଳି ପିଲାର ଏଭଳି ନିଷ୍ପତ୍ତି ଶୁଣି କିଏ ଭଲା ଆଶ୍ଚର୍ଯ୍ୟ ନ ହେବ ? ସ୍ନେହ ଆଉ ମୁଁ ତୁହେଁ ପଚାରିଲୁ, ଆତ୍ମହତ୍ୟା ?

ତୁଲୁ କହିଲା, ବାପାଙ୍କ ଡିକ୍‌ଟେଟରସିପ୍‌ରୁ ରକ୍ଷା ପାଇବା ପାଇଁ ଆଉ କିଛି ବାଟ ନାହିଁ । ସେ କହୁଛନ୍ତି, ମଫସଲ ଗାଁର ତାଙ୍କ ବାଲ୍ୟବନ୍ଧୁଙ୍କ ଝିଅ ରୀନାକୁ ବାହାହେବାକୁ ହେବ !

ଅନ୍ଧାର ଭିତରେ କିଞ୍ଚିତ ଆଲୁଅର ସନ୍ଧାନ ପାଇ ସ୍ନେହ କହିଥିଲା, ନରେନ୍ଦ୍ରପୁର ଗାଁର ରୀନା ତ ? ଇଂରାଜୀରେ ବି.ଏ. ଅନର୍ସ । ଭାରି ଚମତ୍କାର ଝିଅ । ରୂପ, ସତେ ଗୋଟିଏ ଚାଉଳରେ ଗଢ଼ା !

ତୁଲୁ ତା'ହେଲେ ତୋର ଆପତ୍ତିଟା ରହିଲା କେଉଁଠି ? ମୁଁ ପଚାରିଥିଲି ।

ମୋ' ପ୍ରଶ୍ନର ସିଧାସଳଖ ଉତ୍ତର ନଦେଇ ସେ କହିଥିଲା, ତୁ ତ ଟୀନା ମାଉସୀକୁ ଦେଖିଛୁ ! ତା' ରୂପ, ତା' ଚେହେରା ତା' ମୁହଁର ଚମତ୍କାର ଗଢ଼ଣ ତୁ ଦେଖିଥିବୁ ? ତା' ଅଭିନୟ କେତେ ପର୍‌ଫେକ୍‌ଟ କହିଲୁ ? ମୋନାଲିସା ଭଳି ମୁହଁର କଟ୍, ବିଶେଷ କରି ଏକ୍‌ସପ୍ରେସିଭ୍ କଳା ଆଖିରେ ମାଦକତା ନେଇ ସେ ଯେତେବେଳେ ମଞ୍ଚର ପାଦପ୍ରଦୀପ ଆଗରେ ଠିଆହୁଏ ସେତେବେଳେ ଶହଶହ ଦର୍ଶକଙ୍କ ମୁଣ୍ଡ ବୁଲିଯାଏ । ତୁ ଥରେ ଦେଖିଛୁ, କହିଲୁ ଏମିତି ବିଉଟୀ, ଏମିତି ଟାଲେଣ୍ଟେଡ୍ ଆର୍ଟିଷ୍ଟ ତୁ ଦେଖିଛୁ ?

ଟୀନାମାଉସୀ, ଆମ ସାଙ୍ଗ, ସୁବ୍ରତର ମାଉସୀ । କଲିକତାରୁ ନର୍ସିଂ ପାସ୍ କରି ସହରର ହାସପାତାଳରେ ଷ୍ଟାଫ ନର୍ସ ଅଛି । ସୌଖୀନ ଅଭିନେତ୍ରୀ ହିସାବରେ ତାର ବେଶ ଖ୍ୟାତି ରହିଛି ଏକଥା ଆମକୁ ଜଣା । କିନ୍ତୁ, ତୁଲୁ କହିଲାଭଳି ସେ ଯେ ଏଭଳି ଉଚ୍ଚକୋଟୀର ମଞ୍ଚଶିଳ୍ପୀ ସେ କଥା ମୋତେ ଜଣାନଥିଲା । ତଥାପି, ତୁଲୁ ମନରେ ଆଘାତ ନଦେଇ ମୁଁ କହିଥିଲି, ହଁ ଟୀନା ମାଉସୀ ଭଲ ଅଭିନୟ କରନ୍ତି, ସେଇଠୁ କ'ଣ ହେଲା ? ମୋର ଆଶଙ୍କା ଥିଲା ମୋ କଥାର ଶ୍ଳେଷ ସେ ବୁଝିବ । କିନ୍ତୁ, ତୁଲୁ କହିଥିଲା, ହେବ ଆଉ କ'ଣ ? ମୋର ସେଇ ଗୋଟିଏ କଥା । ମୁଁ ଯଦି କୌଣସି ଝିଅକୁ ବାହା ହେବି, ସେ ହେଲା ଟୀନା ମାଉସୀ, ନଚେତ୍... ।

ନଚେତ୍ ତୁ ସୁଇସାଇଡ୍ କରିବୁ ! ଏଇଆ ତ ? ମୁଁ ତୁଲୁର ଅଧା ବାକ୍ୟକୁ ସଂପୂର୍ଣ୍ଣ କରିଦେଲି । ମୋ' କଥା ଶୁଣି, ଦରପୋଡ଼ା ସିଗାରେଟ୍‌ଟାକୁ ଝରକାବାଟେ ଫିଙ୍ଗି ଦେଇ ତୁଲୁ କହିଥିଲା, ହଁ ସୁଇସାଇଡ୍, ତା'ଛଡ଼ା ମୋଆଗରେ ଅନ୍ୟ ରାସ୍ତା ଖୋଲା ନାହିଁ ।

ତୁଲୁ ମୁହଁରୁ ଯାହା ଶୁଣିଲି, ଏଥିରେ ଆମ ମନରେ ତିଳେ ସନ୍ଦେହ ରହିଲା ନାହିଁ ଯେ ତୁଲୁ, ଟୀନା ମାଉସୀଙ୍କ ଅଭିନୟରେ କେବଳ ମୁଗ୍ଧ ନୁହେଁ, ତା' ପ୍ରେମରେ ଆତ୍ମହରା

ହୋଇଯାଇଛି, ଏବଂ ସେଥିପାଇଁ ତା ମନରେ ଟୀନା ମାଉସୀ ପାଇଁ ଜଳ ପ୍ରପାତର ତୁମୁଳ ଉଚ୍ଛ୍ୱାସ । ତଥାପି ତୁଲୁକୁ ମୁଁ ପ୍ରଶ୍ନ କରିଥିଲି, ସୁଇସାଇଡ କରିବା ଛଡ଼ା ତୋ' ଆଗରେ ଅନ୍ୟ ରାସ୍ତା ଖୋଲା ନାହିଁ କାହିଁକି ?

ମୋର ପ୍ରଶ୍ନ ଶୁଣି ବିରକ୍ତ ହୋଇ ସେ ମୋ ମୁହଁକୁ ଚାହିଁଥିଲା । କିନ୍ତୁ ମୋଠୁଁ ନୈତିକ ସମର୍ଥନର କୌଣସି ସୂଚନା ନ ପାଇ ସେ କହିଥିଲା ତୁ କ'ଣ ମୋତେ ପିଲାଟିଏ ବିଚାରିଛୁ ?

ଉତ୍ତରରେ ମୁଁ କହିଥିଲି, ନା ଭାଇ, ତୁ ଜଣେ ବ୍ରିଲିୟେଣ୍ଟ ସ୍କଲାର, ପଲିଟିକାଲ ସାଇନ୍ସରେ ଏମ.ଏ. ରେ ଫାଷ୍ଟକ୍ଲାସ । ତୋ' ଆଖି ଆଗରେ ଓ.ଏ.ଏସ, ଆଇ.ଏ.ଏସ୍‌ର ରଙ୍ଗିନ ଇନ୍ଦ୍ରଧନୁ । ତୋତେ ମୁଁ ପିଲାଟିଏ ବିଚାରିବି ?

ସେ ମୋତେ ବାଧା ଦେଇ କହିଥିଲା, ତୁ ମୋ ଅବସ୍ଥାର ଗୁରୁତ୍ୱ ବୁଝି ପାରିବୁ ନାହିଁ । ଏଭଳି କ୍ରିଟିକେଲ୍ ସିଚୁଏସନ ତୁ କେବେ ଫେସ୍ କରିନାହୁଁ ।

ମୁଁ ନୀରବ ରହିଥିଲି ! ମୁଁ ଜାଣିଥିଲି, ତୁଲୁ ଭଳି ଜଣେ ପିଲା ଦୁନିଆରେ ଦୁର୍ଲଭ । ସେ ଗୋଟିଏ ଜୁଏଲ କିନ୍ତୁ ଭାରି ସେଣ୍ଟିମେଣ୍ଟାଲ । ଛୋଟ ଶିଶୁ ଭଳି ଅଭିମାନୀ, ତା'ର ମନ ନଈର ଅଜଣା ସୁଅରେ ବେଳେବେଳେ କୁଆଡ଼ିକୁ ଭାସିଯାଏ ସେ ଜାଣିପାରେନି । ସେଥିପାଇଁ ବନ୍ଧୁ ହିସାବରେ ମୋର ମନ କଷ୍ଟ ଅକୁହା ରହିଯାଏ । ସେଇ ତୁଲୁ କହୁଚି, ଟୀନା ମାଉସୀକି ବାହା ହେବ ନଚେତ୍ ସେ ଆତ୍ମହତ୍ୟା କରିବ ।

ମୁଁ ଆକାଶରୁ ପଡ଼ିଲି । ମୋର ବୁଦ୍ଧି ବଣା ହେଇଗଲା । ମୁଁ ତୁଲୁର ସେଇ ଲହୁଣୀ ଭଳି କଅଁଳ ମୁହଁ, କୁଆଁରୀ ଝିଅ ଭଳି ତା' ଦୁଇ ଆଖିର ତରଳ ଚାହାଣୀକୁ ଦେଖି ବୁଝି ପାରିଲି ନାହିଁ, ତା' ପ୍ରେମର ପରିଧିରେ ଟୀନା ମାଉସୀ ଆସିଲେ କେମିତି ?

ତୁଲୁକୁ ମୁଁ କହିଥିଲି, ତୁ କହୁଚୁ ଆତ୍ମହତ୍ୟା କରିବୁ ! ହେଲେ ଏପରି ସିଦ୍ଧାନ୍ତ ପଛରେ କୌଣସି ମହତ୍ କାରଣ ଥିବା ଦରକାର । ତୁ ପରା ମାଉସୀ ବୋଲି ସମ୍ବୋଧନ କରି ଡାକୁଛୁ ?

ମନେ ହେଲା, ବାରୁଦ ଘରେ ନିଆଁ ଲାଗିଲା । ରାଗରେ ଜଳିଉଠିଲା ତୁଲୁ । ସେ କହିଥିଲା, ଦେଖ୍ ବାପାଙ୍କ ଭଳି ଆଉଟ୍‌ଡେଟେଡ ମରାଲ ଆଉ ଝାଡିବୁ ନାହିଁ । ତୋର ସେ ଅର୍ଥୋଡକ୍ସ ମେଣ୍ଟାଲିଟି ଯିବ କେବେ ? ମୁଁ ବୁଝିପାରୁଚି ଟୀନାମାଉସୀ ଭଳି ପ୍ରଗ୍ରେସିଭ୍ ମନ ହେବାକୁ ତୁମ୍ଭମାନଙ୍କର ଆଉ କେଇଟା ଜେନେରେସନ ବିତିଯିବ । ତୋ' ହୃଦୟକୁ ପ୍ରସାରିତ ନ କଲେ ତୁ ଅନ୍ୟର ହୃଦୟକୁ ଠିକ୍ ବୁଝି ପାରିବୁନି ।

ତା'ପରେ ସେ ଯୁକ୍ତି କରିଥିଲା, ସୁବ୍ରତର ସେ ମାଉସୀ । ସେଇ ସୂତ୍ରରେ ଆମେ ତାକୁ ମାଉସୀ ବୋଲି ଡାକୁ । ନହେଲେ, ସେ କ'ଣ ସତରେ ଆମ ମାଉସୀ ?

ମୁଁ ଅବଶ୍ୟ ଟୀନା ମାଉସୀଙ୍କ ବୟସ କଥା ଉଠେଇ ନଥିଲି । ବରଂ କହିଥିଲି, ସେ କଥା ମୁଁ ମାନିନେଇ । କିନ୍ତୁ ବାହାଘର ପର୍ଯ୍ୟନ୍ତ କଥାଟା ଗଲା କେମିତି ?

ଦେଖିଲି, ପ୍ରେମର ବନ୍ୟାରେ ତୁଲୁ ଉବୁଟୁବୁ ହେଉଥିଲା । ସେ ଯାହା ପ୍ରକାଶ କରିଥିଲା, ସେଥିରେ କିଛି କଳ୍ପନାର ଦ୍ରବଣ ମିଶାଇଲେ ଘଟଣାଟି ଏହିପରି !

ତୁଲୁ ମଝିରେ ମଝିରେ ଟୀନା ମାଉସୀଙ୍କ ଘରକୁ ଯାଉଥିଲା । ସେଦିନ ସଞ୍ଜବେଳେ ତୁଲୁ ଯାଇ ଦେଖିଲା, ସନ୍ଧ୍ୟାର ପ୍ରସାଧନରେ ଟୀନା ମାଉସୀ ଦିଶୁଥିଲା ଅପୂର୍ବ । ସେ ପ୍ରସ୍ତୁତ ହେଉଥିଲା ରିହାର୍ସାଲକୁ ଯିବା ପାଇଁ । ନାଟକ ବହିଧରି ସେ ମନକୁ ମନ ସଂଳାପ ମୁଖସ୍ଥ କରୁଥିଲା । ତୁଲୁ ମୁଗ୍ଧ ହେଇଯାଇଥିଲା, ଟୀନା ମାଉସୀର ମଧୁର କଣ୍ଠସ୍ୱରରେ । କିନ୍ତୁ ସଂଳାପର ପରିବେଷଣରେ କିଛି ଭୁଲ ତ୍ରୁଟି ଦେଖି ତୁଲୁ ମନରେ କଷ୍ଟ ହେଲା । ତୁଲୁ କହିଥିଲା, ଟୀନା ମାଉସୀ ନାଟକର ଏଇ ସଂଳାପ କିପରି କହିଲେ ସୁନ୍ଦର ହେବ ସେ କଥା ମୁଁ ବତେଇ ଦେବି । ତା'ପରେ ଡ଼ାଇଲଗ୍ କିପରି ଉଚ୍ଚାରଣ କରିବାକୁ ହେବ, ଟୋନ୍‌କୁ କିପରି ମଡ୍ୟୁଲେଟ୍ କରିବାକୁ ହେବ ସେ ଦେଖେଇ ଦେଇଥିଲା । ବତେଇ ଦେଇଥିଲା ମନ ସମୁଦ୍ରରେ ଗଭୀର ଆବେଗକୁ ଭାଷାରେ କିପରି ରୂପ ଦେବାକୁ ହେବ । ତୁଲୁର ଏଭଳି ଚମତ୍କାର ନିର୍ଦ୍ଦେଶନାରେ ସଂପୂର୍ଣ୍ଣ ମୁଗ୍ଧ ହୋଇଯାଇଥିଲେ ଟୀନାମାଉସୀ । ସେ କହିଥିଲେ, ବାଃ ତୁମେ କେଡେ ସୁନ୍ଦର ଭାବେ ଡ଼ାଇଲଗ କହିଲ ତୁଲୁ ! ଭାରି ଚମତ୍କାର- ଏକଥା କହୁ କହୁ ଭାବାବେଗରେ ବିହ୍ୱଳ ହୋଇ ଟୀନା ମାଉସୀ କୁଣ୍ଢେଇ ପକାଇଥିଲେ ତରୁଣ ତୁଲୁକୁ ।

ସେଦିନ ସଂଧ୍ୟାରେ ଜଣେ ରୂପସୀ ତରୁଣୀର ନିବିଡ଼ ସ୍ପର୍ଶରେପ୍ରଥମ ରୋମାଞ୍ଚକର ଅନୁଭୂତିରେ ତାର ଧମନୀ, ରକ୍ତରେ ଏକ ଅଦ୍ଭୁତ ଝଡ଼ର ସଞ୍ଚରଣ ଉପଲବ୍ଧି କରିଥିଲା ତୁଲୁ ।

ତା'ପରେ, ଦିନେ ତୁଲୁ ବିସ୍ମିତ ହୋଇଥିଲା, କାରଣ ନାଟକର ସ୍ୱୟଂ ନିର୍ଦ୍ଦେଶକ ଡଃ ମିଶ୍ର ତୁଲୁକୁ ଅନୁରୋଧ କରିଥିଲେ, ଟୀନା ମାଉସୀଙ୍କ ଡ଼ାଇଲଗ ପ୍ରମ୍ପଟିଙ୍ଗ କରିବା ପାଇଁ । ଡକ୍ଟର ମିଶ୍ର ମଧ୍ୟ ଖୁସି ହୋଇଥିଲେ ତୁଲୁର ପ୍ରମ୍ପଟିଙ୍ଗ ଶୁଣି । ଶେଷରେ ସଂପୂର୍ଣ୍ଣ ନାଟକରେ ପ୍ରମ୍ପଟିଙ୍ଗ କରିବାକୁ ଡକ୍ଟର ମିଶ୍ର ତୁଲୁକୁ ଅନୁରୋଧ କରିଥିଲେ । କାରଣ, ସେ ବୁଝିଥିଲେ, ନାଟକର ସଫଳତା ବହୁପରିମାଣରେ ନିର୍ଭର କରେ ଭଲ ପ୍ରମ୍ପଟିଙ୍ଗ ଉପରେ; ଏବଂ ତୁଲୁର ସେ ଦକ୍ଷତା ସେ ଆବିଷ୍କାର କରିଥିଲେ ।

ଏଣୁ ନାଟକର ରିହାର୍ସାଲ, ଷ୍ଟେଜ ରିହାର୍ସାଲ ପୁଣି ଶେଷ କେଇଦିନ ଷ୍ଟେଜ ପାରଫରମେନସ୍ ସବୁଥିରେ ତୁଲୁବାବୁ ଟୀମ୍‌ର ଜଣେ ଅପରିହାର୍ଯ୍ୟ ବ୍ୟକ୍ତି । ସବୁ ରାତିରେ ଘରକୁ ଫେରିବା ତୁଲୁ ପକ୍ଷରେ ସମ୍ଭବ ନଥିଲା । ତେଣୁ ତାକୁ ଟୀନାମାଉସୀଙ୍କ କ୍ୱାର୍ଟର୍ସରେ ରହିବାକୁ ପଡୁଥିଲା ।

ଟୀନା ମାଉସୀଙ୍କ ପାଖରେ ଏକା ଶେଯରେ ଶୋଇବାକୁ ଡୁଲୁ ସଂକୋଚ କରୁଥିଲା ନିଶ୍ଚୟ । ସୁତରାଂ ଟୀନାମାଉସୀ କହିଥିଲେ ଡୁଲୁ ତୁମର ସେଇଟା ଗୋଟାଏ କମ୍ପ୍ଲେକ୍ସ ମାତ୍ର । ତୁମେ ଏମ.ଏ ପାଠ ପଢ଼ିଚ, ଏକଥା ସତ, ହେଲେ ଏଇଭଳି ମନୋଭାବ ନେଇ ଦେଶର ପ୍ରଗତିରେ ସାହାଯ୍ୟ କରିପାରିବ ନାହିଁ । ତୁମର ଏ ପ୍ରକାର କମ୍ପ୍ଲେକ୍ସକୁ ଭାଙ୍ଗିବା ଦରକାର । ତୁମର ଏଭଳି ସଂସ୍କାରକୁ ଚୂନା କରିଦେବା ଆବଶ୍ୟକ ।

ଏଣୁ ଟୀନା ମାଉସୀର ଉଦାରତା ଯୋଗୁଁ ଦୁହେଁ ଗୋଟିଏ ବୋତଲରୁ ହୁଇସ୍କିର ସ୍ୱାଦ ଆସ୍ୱାଦନ କରି କୁସଂସ୍କାରର ପାଚେରୀର ଉର୍ଦ୍ଧ୍ୱକୁ ଉଠିବାକୁ ଚେଷ୍ଟା କରିଥିଲା ଡୁଲୁ । ଟୀନା ମାଉସୀର ପ୍ରେରଣା ହିଁ ତାର ଉନ୍ନତିର ରିଭଲ୍ୟୁସେନରୀ ମାର୍ଗରେ ଏକ ବତିଘରର ଉଜ୍ଜ୍ୱଳ ଆଲୋକ ସ୍ୱରୂପ ।

ଟୀନା ମାଉସୀ ସଙ୍ଗେ ମାନ ଅଭିମାନର କଥା ମଧ କହିବାକୁ ଭୁଲିନଥିଲା ଡୁଲୁ । ନାଟକରେ ପ୍ରମ୍ପଟିଙ୍ଗ କରୁଁ କରୁଁ ତା ମନରେ ମଧ ପ୍ରବଳ ଆଗ୍ରହ ଜନ୍ମିଥିଲା, ଅଭିନେତା ରୂପେ ମଞ୍ଚର ପାଦପ୍ରଦୀପ ଆଗରେ ଠିଆ ହେବା ପାଇଁ । ଡ଼କ୍ଟର ମିଶ୍ର ମଧ ଗୋଟିଏ ଭଲ ରୋଲ ଅଫର କରିଥିଲେ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ, ସେଥିରେ ବାଧା ଦେଲେ ଟୀନା ମାଉସୀ । ତେଣୁ ଡୁଲୁ ମନରେ କ୍ଷୋଭ ଜନ୍ମିବା ସ୍ୱାଭାବିକ । ସେଦିନ ରାତିରେ, ଡୁଲୁକୁ ଦୁଇ ବାହୁରେ ବେଷ୍ଟନ କରି ଟୀନା ମାଉସୀ ପଚାରିଥିଲେ, ଡୁଲୁ, ତୁମେ ମୋ' ଉପରେ ରାଗିଛ ?

ଡୁଲୁ ସଫାସଫା ଜଣାଇ ଦେଇ କହିଥିଲା ରାଗିବିନି ? ଡକ୍ଟର ମିଶ୍ର ରାଜି ଥିଲେ ମୋତେ ଗୋଟିଏ ସୁଟେବଲ ରୋଲ ଦେବାକୁ । ଆଉ କେହି ବାଧା ଦେଇଥିଲେ ମୋର ଦୁଃଖ ନଥିଲା । ଶେଷକୁ ତୁମେ ବାଧା ଦେଲ ? ତୁମଠୁ ଏଭଳି ଆଚରଣ ମୁଁ ଆଶା କରି ନଥିଲି ଟୀନା ମାଉସୀ ।

ଦାରୁଣ ଅଭିମାନରେ ଡୁଲୁକୁ ଭାଙ୍ଗି ପଡ଼ିବାର ଦେଖି ଟୀନା ମାଉସୀ କହିଥିଲେ, ତୁମେ ମୋତେ ଭୁଲ ବୁଝୁଚ ! ମୁଁ ତୁମକୁ କେତେ ଭଲ ପାଏ, ବୋଧହୁଏ ତୁମକୁ ସେ କଥା ଜଣା ନାହିଁ ।

ରାଗରେ ଡୁଲୁ ମଧ କହି ଦେଇଥିଲା, ମୋତେ ଭଲ ପାଅନା ଛେନା ! ମୁଁ ଠିକ୍ ଜାଣିଛି, ତୁମେ ମୋତେ ଈର୍ଷା କରୁଚ । ତୁମେ ଚାହଁନା, ମୁଁ ତୁମ ଭଳି ଷ୍ଟେଜ ଓ୍ୱାର୍ଲଡ଼ରେ ଖ୍ୟାତି ଅର୍ଜନ କରେ ।

ଟୀନା ମାଉସୀ ବୁଝେଇଥିଲେ, ନା ଡୁଲୁ, ସେ କଥା ନୁହେଁ । ମୁଁ ପୁଣି ତୁମକୁ ଈର୍ଷା କରିବି ? ଶୁଣ, ମୁଁ ଚାହେଁନା, ତୁମେ ସେଇ ଝିଅମାନଙ୍କ ସଙ୍ଗେ ଅଭିନୟ କରିବ । ତୁମକୁ ତ ଜଣାନାହିଁ, ସେମାନେ କେତେ ନିମ୍ନସ୍ତରର ଝିଅ । ଶେଷରେ ସେ ମନ୍ତବ୍ୟ

କରିଥିଲେ, ବୁଝିଲ ଡୁଲୁ, ସେମାନେ ଝିଅ ନୁହଁନ୍ତି, ଜଣେ ଜଣେ କଞ୍ଚା ଡାଆଣୀ ! ସେମାନେ ତୁମର ଏଇ କଅଁଳ ମୁଣ୍ଡଟାକୁ ଚୋବେଇ ଖାଇବେ, ଏକଥା ମୁଁ ସହି ପାରିବି ନାହିଁ । ଏ କଥା କହି ସେ ଟାଣି ନେଇଥିଲେ ଡୁଲୁକୁ ନିଜର ଦେହଉପରକୁ ଏବଂ ଚୁମାରେ ଭରି ଦେଇଥିଲେ ଡୁଲୁର ଗାଲ, ମୁହଁ, ସର୍ବାଙ୍ଗ ଡୁଲୁର ଅଭିମାନକୁ ତୁଟେଇବା ପାଇଁ । ଶେଷକୁ ଡୁଲୁ ମୋତେ କହିଥିଲା, ତୁ ନିଶ୍ଚୟ ଏବେ ବୁଝି ପାରୁଥିବୁ ଟୀନା ମାଉସୀ ମୋତେ କେତେ ଗଭୀର ଭାବେ ଭଲ ପାଏ । ତୁ କହ, ବାପାଙ୍କ କଥା ମାନି ମୁଁ ଯଦି ସେହି ମଫସଲୀ ଝିଅ ରୀନାକୁ ବାହା ହୁଏ ଟୀନା ମାଉସୀର ଅବସ୍ଥା କ'ଣ ହେବ, ତୁ ଥରେ ଅନୁମାନ କଲୁ !

ମୁଁ କିଛି ଅନୁମାନ କରିପାରୁ ନଥିଲି । କିନ୍ତୁ ମୁଁ କ'ଣ କହିବି ନକହିବି ସେକଥା ପ୍ରତି ଭୃକ୍ଷେପ ନକରି ଡୁଲୁ କହିବାକୁ ଲାଗିଲା, ରୀନାକୁ ମୁଁ ବାହାହେଲେ ଟୀନା ମାଉସୀ ନିଶ୍ଚୟ ଜୀବନ ହାରିଦେବ ।

ଉପସଂହାରରେ ଡୁଲୁ କହିଥିଲା, ବୁଝିଲୁ ଭାଇ, ବୋଉକୁ ମୋ ନିଷ୍ପତ୍ତି ଶୁଣେଇ ଦେଇଛି । ହେଲେ ବାପାଙ୍କୁ ପାରିବା ସହଜ ନୁହେଁ । କେବଳ ସ୍ନେହ ଭାଉଜ ପାରିଲେ ପାରିବେ, କିନ୍ତୁ ... ଏତିକି କହି ଡୁଲୁ ନୀରବ ରହି ଯାଇଥିଲା ।

ଡୁଲୁର ମୋ ପାଖକୁ ଆସିବାର ଉଦ୍ଦେଶ୍ୟ ଏଥର ଜାଣିପାରିଲି । ଏଣୁ ମୁଁ କହିଥିଲି, ଏବେ ମୁଁ ବୁଝୁଛି, ତୋର ଏ କାମ ପାଇଁ ସ୍ନେହର ସାହାଯ୍ୟ ଲୋଡ଼ା । କିନ୍ତୁ... !

ମୋର 'କିନ୍ତୁ' ପ୍ରତି ଭୃକ୍ଷେପ ନକରି ଡୁଲୁ ଚଟ୍‌କିନା କହିଥିଲା, ଠିକ୍ କହିଛୁ । ସ୍ନେହଭାଉଜ ଏତକ କରିଦେଲେ ଆମେ ଦୁହେଁ ତାଙ୍କ ପାଖରେ ଚିର ଜୀବନ ଋଣୀ ହୋଇ ରହିବୁଁ ଏବଂ... ।

ଡୁଲୁର କଥାକୁ ଶେଷ କରିବାକୁ ନଦେଇ ସ୍ନେହ କହିଥିଲା, ନାହିଁ, ନାହିଁ ଡୁଲୁବାବୁ, ମୁଁ ତୁମମାନଙ୍କ ଋଣର ଭାର ବଢ଼େଇବାକୁ ଚାହୁଁ ନାହିଁ । ହେଲେ, ଡୁଲୁ ବାବୁଙ୍କ ପାଇଁ ମୁଁ କ'ଣ ଏତକ କରିପାରିବି ନାହିଁ ? ଖାସ୍ ତମ ପାଇଁ ଏତକ କରି ପାରିଲେ ମୁଁ ନିଶ୍ଚୟ ଖୁସୀ ହେବି, ଜାଣିଥାଅ !

ସ୍ନେହର ନାଟକୀୟ ପ୍ରତିଶ୍ରୁତି ଶୁଣି ଡୁଲୁ ନ ହସି ରହିପାରିଲା ନାହିଁ । ସ୍ନେହ ଭାଉଜଙ୍କ ମୁହଁରୁ ନିର୍ଭର ପ୍ରତିଶ୍ରୁତି ଆଦାୟ କରି ଡୁଲୁ ସେଦିନ ଆମ ଘରୁ ବିଦାୟ ନେଇଥିଲା ସତ, ହେଲେ, ପାରିବାରିକ ଜୀବନରେ ଅନେକ 'କିନ୍ତୁ' ରହିଯାଏ । ଡୁଲୁର ବାପା-ବୋଉଙ୍କ ଆଗେ ଷ୍ଟାଫନର୍ସ, ସୌଖୀନ ଅଭିନେତ୍ରୀ, ଟୀନା ମାଉସୀଙ୍କ ନାଁ ଉଚ୍ଚାରଣ କରିବାକୁ ଆମର କାହାରି ସାହସ ନଥିଲା । ତା'ଛଡ଼ା, ଟୀନାମାଉସୀଙ୍କ ବିଷୟରେ ମୋ ମନରେ ଗୋଟିଏ ସନ୍ଦେହ ଲୁଚକାଳି ଖେଳୁଥିଲା । ଡୁଲୁ ଭଳି ରୂପ ଗୁଣର ପିଲାକୁ ଭଲପାଇବାରେ

କିଛି ସନ୍ଦେହ ନଥିଲା କିନ୍ତୁ ସତରେ କ'ଣ ଟୀନାମାଉସୀ ଚାହୁଁଥିଲେ ଟୁଲୁକୁ ବାହା ହେବାକୁ ? ସେ ପ୍ରଶ୍ନ ମଧ୍ୟ ସିଧାସଳଖ ଟୁଲୁକୁ ପଚାରିବା ମୋ ପକ୍ଷରେ ସମ୍ଭବ ନଥିଲା ।

ଅବଶ୍ୟ ଅଳ୍ପଦିନ ମଧ୍ୟରେ ସେ ପ୍ରଶ୍ନର ଉତ୍ତର ମୁଁ ପାଇ ଯାଇଥିଲି । କାରଣ ନୂଆବୋଉକୁ ସାଙ୍ଗରେ ଧରି ସ୍ୱୟଂ ଟୁଲୁ ପୁଣି ଆସିଥିଲା । ନୂଆବୋଉ ସୁଦୃଶ୍ୟ ନିମନ୍ତ୍ରଣ ପତ୍ରଟିଏ ବଢ଼େଇଦେଇ ନିମନ୍ତ୍ରଣ ଜଣେଇ କହିଥିଲେ, ଟୁଲୁ ବାବୁଙ୍କର ବାହାଘର । କାହା ସାଙ୍ଗେ ସେ କଥା ପଚାରିବାକୁ ମୋ ତୁଣ୍ଡ ଲେଉଟି ନଥିଲା । କିନ୍ତୁ ନିମନ୍ତ୍ରଣ ପତ୍ରରେ ଆଖିବୁଲେଇ ସେଥିରେ ଟୀନାମାଉସୀଙ୍କ ନାଁ ପାଇଲି ନାହିଁ । ଆଶ୍ଚର୍ଯ୍ୟହୋଇ ଦେଖିଲି, ସେଇ ଗ୍ରାମ୍ୟ ତରୁଣୀ ରୀନାଦେବୀଙ୍କ ନାଁ ଲିପିବଦ୍ଧ ହୋଇଛି ।

ଏଭଳି ଅଘଟନ କେମିତି ସମ୍ଭବ ହେଲା, ବୁଝି ନପାରି ମୁଁ ଚାହିଁଲି ଟୁଲୁର ମୁହଁକୁ । ଦେଖିଲି, ତାର ଗୋରାମୁହଁଟି ଆରକ୍ତ ହୋଇ ଉଠିଥିଲା । ସେ ଜଣେଇଥିଲା, ଟୀନାମାଉସୀର ଇଚ୍ଛାରେ ହିଁ ସେ ରୀନାକୁ ବାହାହେବା ପାଇଁ ସମ୍ମତି ଦେଇଛି । ଟୀନାମାଉସୀ କୁଆଡ଼େ କହିଥିଲେ, ଟୁଲୁ, ଭଲପାଇବା ଗୋଟିଏ କଥା ଆଉ ବାହାହେବା ଭିନ୍ନ କଥା । ଜାଣିଥାଅ ଭଲପାଇବା ବିବାହରେ ସୀମିତ ନୁହେଁ । କାରଣ ଭଲପାଇବାର ପରିଣତି ବାହାଘର ନୁହେଁ ।

ଟୀନାମାଉସୀ ମୁହଁରୁ ଏଭଳି ଅଡୁଆ କଥା ଶୁଣି ଟୁଲୁ ବିସ୍ମୟରେ ପଚାରିଥିଲା, ମାନେ ?

ମାନେ ଖୋଜିବାକୁ ଯେଉଁ ଅଭିଧାନ ଦରକାର ସେ ଅଭିଧାନ ପଢ଼ିବାକୁ ତୁମକୁ ସମୟ ଲାଗିବ । ଭଲ ପାଇବାର ମହତ୍ତ୍ୱ ତୁମେ ଏଯାଏ ବୁଝିପାରିଲ ନାହିଁ । ତାର ଗଭୀରତା କଳ୍ପନା କରିହୁଏନା । ଶେଷକୁ ଟୀନାମାଉସୀ ପରା କହିଥିଲା, ଟୁଲୁ ତୁମେ ଯଦି ମୋତେ ସତରେ ଭଲପାଅ, ମୋ' କଥା ରଖ । ମୁଁ ରୀନାକୁ ଭଲକରି ଜାଣେ । ମୋର ଏକାନ୍ତ ଇଚ୍ଛା, ତୁମେ ରୀନାକୁ ବାହାହୁଅ । ନହେଲେ... । ଟୀନାମାଉସୀ କଥାଟିକୁ ସମ୍ପୂର୍ଣ୍ଣ କରି ପାରିନଥିଲେ । କାରଣ ତାଙ୍କ ଦୁଇ ଆଖିରେ ଟଳମଳ କରିଥିଲା, ମୁକ୍ତାବିନ୍ଦୁ ଭଳି ଲୁହବିନ୍ଦୁ ।

ଟୀନାମାଉସୀଙ୍କ ମନରେ ଟୁଲୁ କଷ୍ଟ ଦେବାକୁ ଚାହିଁନଥିଲା ଏବଂ କେବଳ ଟୀନାମାଉସୀଙ୍କୁ ଖୁସି କରିବା ପାଇଁ ରୀନା ଭଳି ଝିଅର ହାତ ଧରିବା ଥିଲା ଟୁଲୁର ଉଦ୍ଦେଶ୍ୟ ।

ଟୁଲୁ ଜୀବନରେ ଏଭଳି ବିରଳ ତ୍ୟାଗର ଅନ୍ତରାଳରେ ଟୀନାମାଉସୀଙ୍କ ଅବଦାନ ବିଷୟ ଜାଣି ଆମେ ଖୁସି ହୋଇ ଟୁଲୁର ବାହାଘରେ ଯୋଗ ଦେଇଥିଲୁ ।

କିଛି ବର୍ଷ ଗଲାପରେ, ଟୁଲୁ ଆଉ ରୀନାଦେବୀଙ୍କ ସଙ୍ଗେ ପୁଣି ସାକ୍ଷାତ୍ ହୋଇଥିଲା ବଲାଙ୍ଗୀରରେ । ତୁଷାରକାନ୍ତି ସେତେବେଳେ ବି.ଡି.ଓ. ସାହେବ । ମୋ' କ୍ୱାର୍ଟରସ୍ କୁ

ଫେରି ସେଦିନ ଦେଖିଲି ଛୋଟ ଝିଅ କଲ୍ୟାଣୀକୁ ସାଙ୍ଗରେ ଧରି ରୀନାଦେବୀ ଉପସ୍ଥିତ । ଡୁଲୁର ଖବର ପଚାରିବାରୁ ବ୍ୟଙ୍ଗ କରି ରୀନାଦେବୀ ଓଲଟି ମୋତେ ପ୍ରଶ୍ନ କରିଥିଲେ, ବାଃ, ଆପଣଙ୍କ ବନ୍ଧୁଙ୍କ ଖବର ଆପଣ ରଖିନାହାନ୍ତି ?

କାହିଁକି, କ'ଣ ହେଲା ? ମୁଁ ଶଙ୍କିତ ବିସ୍ମୟର ମୁଦ୍ରାଆଙ୍କି ପଚାରିଲି । ରୀନାଦେବୀ କହିଲେ, ଦି'ମାସ ହେଲା ମୁଁ ବାପଘରକୁ ଯାଇଥିଲି । ଆଜି ଫେରି ଘରେ ଯାହା ଦେଖିଲି ସେଥିରେ ମୋର ଦେହ ଜଳିଯାଉଚି । ତୁମ ବି.ଡ଼ି.ଓ. ସାହେବଙ୍କ କୀର୍ତ୍ତିକଳାପ କହିଲେ ନ ସରେ । ହେଲା ଅବା ତୁମର ମାଉସୀଲେଖା ! ତା' ବୋଲି, ଘରେ ଝିଅମାନଙ୍କ ଆଗରେ ତୁମେ ଏକାଠି ଉଠିବ, ବସିବ, ଖାଇବ, ଶୋଇବ ? ଏ ଲାଜକଥା କହିବି କାହା ଆଗେ ? ମୁଁ କଲ୍ୟାଣୀକୁ ଧରି ପଳେଇ ଆସିବାକୁ ବାଟ ପାଇଲି ନାହିଁ । ଚାଲିଆସିଲି ସ୍ନେହଅପାଙ୍କ ପାଖକୁ । ବିଚାରୁଛି, ଝିଅକୁ ନେଇ ମୁଁ ଗାଁକୁ ଲେଉଟିଯିବି । ସେ ତାଙ୍କ ମାଉସୀଙ୍କି ନେଇ ରହନ୍ତୁ, ଘର କରନ୍ତୁ ।

ପୁଣି ସେହି ଟୀନାମାଉସୀ ? ମୁଁ ପରମ ବିସ୍ମୟରେ ଭାବୁଥିଲି । କାରଣ, ଡୁଲୁର ବାହାଘର ପରେ ପରେ ଆମେ ଟୀନା ମାଉସୀଙ୍କ ବାହାଘର କଥା ଶୁଣିଥିଲୁ । ଡ଼କ୍ଟର ମିଶ୍ରଙ୍କ ସଙ୍ଗେ ରେଜେଷ୍ଟ୍ରୀ ବାହାଘର ହୋଇଥିଲା । ସହରର ବଡ଼ ହୋଟେଲରେ ବଫେ ଡ଼ିନର ଦେଇ ଟୀନାମାଉସୀ ଡକଟର ମିଶ୍ରଙ୍କ ସଙ୍ଗେ ଆମେରିକା ଚାଲି ଯାଇଥିଲେ । ଆମେ ସ୍ୱସ୍ତିର ନିଃଶ୍ୱାସ ମାରିଥିଲୁଁ । ଭାବିଥିଲୁ, ଯାହାହେଉ, ଡୁଲୁର ଜୀବନ ଆକାଶରୁ ଟୀନାମାଉସୀ ଅସ୍ତ ହୋଇଗଲେ ସବୁଦିନ ପାଇଁ ।

କିନ୍ତୁ ମଣିଷ ଜୀବନରେ ଅନେକ କିଛି ବିସ୍ମୟ ଅପେକ୍ଷା କରି ରହିଥାଏ । କାରଣ ରୀନାଦେବୀ ଜଣେଇଲେ ଯେ ଟୀନାମାଉସୀ ଡ଼କ୍ଟର ମିଶ୍ରଙ୍କୁ ଛାଡ଼ପତ୍ର ଦେଇ ଝିଅ ଲୋପାମୁଦ୍ରାକୁ ଧରି ଚାଲି ଆସିଛନ୍ତି ଭାରତକୁ ।

ଭାବିଲି, ଫୋନ୍ କରି ଡୁଲୁକୁ ଜଣେଇ ଦେବି, ରୀନାଦେବୀ ଏଇଠି ଅଛନ୍ତି । ମାତ୍ର ସେଠି ଟୀନାମାଉସୀ ରହିଛନ୍ତି । ଦ୍ୱିଧାରେ ପଡ଼ିଲି । ଭାବିଲି ହୁଏତ ଝିଅ କଲ୍ୟାଣୀକୁ ଖୋଜି ଖୋଜି ଡୁଲୁ ମୋ ପାଖକୁ ଫୋନ କରିବ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ, ଦୁଇଦିନ ବିତିଗଲା । ଏଣେ ରୀନାଦେବୀ ଜିଦ୍ କଲେ, ଗାଁକୁ ଚାଲିଯିବେ । ସୁତରାଂ ବାଧହୋଇ ମୁଁ ବାହାରିଲି ଡୁଲୁ ପାଖକୁ ଯିବା ଉଦ୍ଦେଶ୍ୟରେ । ହଠାତ୍ ଦେଖିଲି ବି.ଡ଼ି.ଓ.ଙ୍କ ଜିପ୍ ଆସି ପହଞ୍ଚିଲା ଏବଂ ସିଗାରେଟ୍ ଟିଣଟିଏ ଧରି ପୂରା ସାହେବୀ ଢଙ୍ଗରେ ଡୁଲୁ ଓହ୍ଲେଇଲେ । ଆମକୁ କିଛି କହିବାକୁ ସୁଯୋଗ ନଦେଇ ଡୁଲୁ ଆକ୍ରମଣ କଲା, ଦେଖ ଯେ ସ୍ତ୍ରୀ ଲୋକମାନେ କି ଭୟଙ୍କର ଭାବେ ଜେଲସ୍ । ଜଣେ ଆଉ ଜଣକୁ ସହି ପାରୁନି । ଆରେ ଟୀନା ମାଉସୀ ଡ଼କ୍ଟର ମିଶ୍ରଙ୍କୁ ଡ଼ାଇଭୋର୍ସ କରି ଚାଲି ଆସିଛି । ଟୀନା ମାଉସୀ ପାଇଁ ତୁମ ମନରେ

ସିମାଥ୍ ହେବା କଥା । ଓଲଟି କଣନା ସ୍ୱୟଂ ଘରର ମାଲିକାଣୀ ପଳାଇ ଆସିଲେ ଘର ଛାଡ଼ି । ତା'ପରେ ଟୁଲୁ ରୀନାକୁ କହିଥିଲା, ଶୁଣ ରୀନା, ମନେ ରଖ, ତୁଷାରକାନ୍ତିର ଗୋଟାଏ ପ୍ରେଷ୍ଟିଜ ଅଛି । ଟୀନାମାଉସୀ ଆଗରେ ତୁମେ ଯେମିତି ବିହେଭ୍ କଲ, ଛିଃ, ସେ ମନରେ କଣ ଭାବିଥିବେ ? ତମେ ଜାଣିଛ, ସେ ସଦ୍ୟ ଷ୍ଟେଟସରୁ ଫେରିଚି ।

ରାଗ ତମ ତମ ରୀନଦେବୀ ଫାଟି ପଡ଼ିଲେ, ତୁମର ପ୍ରେଷ୍ଟିଜ ଘେନି ତୁମେ ଯାଅ । ଟୀନା ମାଉସୀକି ନେଇ ଘର କର । ମୁଁ କଲ୍ୟାଣୀକି ନେଇ ଗାଁକୁ ଯାଉଛି । ମୁଁ ଯାହା ପାଠ ପଢ଼ିଚି, ସେଥିରେ ମୋ ପେଟ ଅପୋଷା ରହିବ ନାହିଁ, ଏକଥା ଜାଣି ଥାଅ !

ରୀନାଦେବୀଙ୍କ ନିଷ୍ପତ୍ତି ଶୁଣି ଦବିଗଲା ଟୁଲୁ । କହିଲା ଗାଁକୁ ଯିବ କାହିଁକି ? ଲୋପାକୁ ନେଇ ଟୀନା ମାଉସୀ ଭୁବନେଶ୍ୱର ଚାଲି ଗଲାଣି । ମୋ କଥା ମାନ । ଘରକୁ ଚାଲ ।

ସେମାନଙ୍କ କଳି ମେଣ୍ଟାଇବାକୁ ସେ ଦିନ ସ୍ନେହ ଝାଳନାଳ ହୋଇଯାଇଥିଲା ।

ନଈର ସୁଅ ଫେରେ ନାହିଁ । ସମୟ କାହାରିକି ଅପେକ୍ଷା କରେନି । ଯା ଭିତରେ ଚାକିରି ଦୁନିଆରେ ସଂଗ୍ରାମ କରୁ କରୁ ମୁଁ ଭୁଲି ଯାଇଥିଲି ଯେ ଏଇ ସମୟ ଭିତରେ ଦଶ ବାର ବର୍ଷ ବିତିଗଲାଣି । ମୋର ପୋଷ୍ଟିଙ୍ଗ ହୋଇଥାଏ ସମ୍ବଲପୁର । ଅକସ୍ମାତ୍ ଡ଼ାକ ବଙ୍ଗଳାରୁ ଟୁଲୁର ଫୋନ ପାଇଲି । ସେ ଥିଲା କୋରାପୁଟର ତହସିଲଦାର, କ'ଣ ଅଫିସ କାମରେ ଆସିଥାଏ ସମ୍ବଲପୁରକୁ । ଟୁଲୁ କହିଲା, ଶୀଘ୍ର ଆସିବୁ । ଏଇଠି ମୋ ସଙ୍ଗେ ଡ଼ିନର ଖାଇବୁ । ଜରୁରୀ କଥା ଅଛି ।

ଡ଼ାକ ବଙ୍ଗଳାରେ ପହଞ୍ଚି ଦେଖିଲି, ଅଫିସ୍ କାମ ସରୁ ସରୁ ରାତି ଦଶଟା ବାଜି ଗଲା । ସମସ୍ତେ ବିଦାୟ ନେଲେ । ଡ଼ିନର ପରେ ଟୁଲୁକୁ ଏକୁଟିଆ ପାଇ ମୁଁ ପଚାରିଲି, ଟୁଲୁ, କହ, କଥା କ'ଣ ?

ଦେଖିଲି, ଟୁଲୁ ପୂରାପୂରି ବଦଳି ଯାଇଚି । ମୋ ପ୍ରଶ୍ନ ଶୁଣି ଥରେ ମାତ୍ର ମୋ ମୁହଁକୁ ଚାହିଁଲା । କିନ୍ତୁ କିଛି ଉତ୍ତର ଦେଲା ନାହିଁ । କେବଳ ବୋତଲଟିଏ ଫିଟେଇ ନୀରବରେ ହୁଇସ୍କି ପିଇବାକୁ ଲାଗିଲା । ମୁଁ ଅତିଷ୍ଠ ହୋଇ ପଡ଼ିଲି । କାହିଁକି ମୋତେ ଡ଼ାକିଥିଲା, ସେ କଥା ପଚାରିବାରୁ ସେ ବିରକ୍ତ ସ୍ୱରରେ କହିଥିଲା, ଦେଖ୍, ତୁ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ । ମୋ ଜୀବନର ଚରମ ଦୁଃଖର ମୁହୂର୍ତ୍ତରେ ତୁ ଆସି ମୋ ପାଖରେ ବସିଛୁ । ସେଥିପାଇଁ ମୁଁ ଗ୍ରେଟ୍‌ଫୁଲ !

ଟୁଲୁର ଏଭଳି କଥାର କିଛି ଅର୍ଥ ବୁଝି ନପାରି ମୁଁ ଉଦ୍‌ବିଗ୍ନ ହୋଇ ପଚାରିଥିଲି, ଚରମ ଦୁଃଖ ? କଣ କହୁଚୁ ଟୁଲୁ, ରୀନା ଦେବୀଙ୍କ ଖବର କ'ଣ ? କଲ୍ୟାଣୀ ଭଲ ଅଛି ତ ?

ମୋ ପ୍ରଶ୍ନରେ, ମୁହଁକୁ ବିକୃତ କରି ତୁଲୁ ଫିଙ୍ଗିଦେଲା ଏକ ତୁଚ୍ଛ ବିଦ୍ରୂପର ହସ । କହିଥିଲା, ରୀନା ? ତହସିଲଦାରଙ୍କର ଅର୍ଦ୍ଧାଙ୍ଗିନୀ, ତା'ର ପୁଣି ଦୁଃଖ କ'ଣ ? ଜ୍ୟୋତି ବିହାରରେ ଏମ୍.ଏ କରୁଛି କଲ୍ୟାଣୀ । କିନ୍ତୁ, ମୁଁ ? ଏଇ ତୁଷାରକାନ୍ତି, ଜଳୁଛି । ମୋର ସାରା ଅନ୍ତର ଜଳୁଛି, ହେଲେ ତୁମେ କେହି ଦେଖି ପାରୁନ ସେ ଦହନ !

ମୁଁ ବିରକ୍ତ ହୋଇ କହିଲି, ତୋର ସେ ନାଟକୀୟ ସଂଳାପ ଛାଡ଼ି କ'ଣ ହେଇଚି ସଫା ସଫା କହିଲୁ !

ମୋ ମୁହଁକୁ ଚାହିଁଥିଲା ତୁଲୁ । ସେ ଦୃଷ୍ଟି ଭାରି କରୁଣ । ଏବଂ କହିଥିଲା, ନାଟକର ସଂଳାପ ନୁହେଁ । ବନ୍ଧୁ,ଏହା ଏଇ ତୁଷାରକାନ୍ତିର ଜୀବନ ନାଟକର ଅବ୍ୟକ୍ତ କାହାଣୀ । ହଠାତ୍ ସେ କହିଥିଲା, ଜାଣିଚୁ, ଭାରି ବିପଦରେ ପଡ଼ିଯାଇଚି ମୀନାମାଉସୀ !

ପୁଣି ସେଇ ମୀନା ମାଉସୀ ଉପାଖ୍ୟାନ ? ମନକୁ ମନ ବିରକ୍ତ ହେଲି । ତଥାପି ମୁଁ ପଚାରିଲି, କାହିଁକି, କ'ଣ ହେଲା ମୀନାମାଉସୀଙ୍କର ?

ମୀନାମାଉସୀ ନୁହେଁ । ତା'ର ଝିଅ ଲୋପା । ଜାଣିଚୁ, ଲୋପା ସୁନ୍ଦର ନାଚି ପାରେ । ଶାସ୍ତ୍ରୀୟ ସଂଗୀତରେ ଡିଗ୍ରୀ ହାସଲ କରିଚି । ଦେଖିବାକୁ ଅସୁନ୍ଦରୀ ନୁହେଁ । ତଥାପି, ତା' ପାଇଁ ମୀନାମାଉସୀ ଉପଯୁକ୍ତ ପାତ୍ରଟିଏ ପାଉନି । କାରଣ, ଲୋପା ଶାସ୍ତ୍ରୀୟ ନୃତ୍ୟ ଆଉ ସଙ୍ଗୀତ କଳାର ଜଣେ ଉଚ୍ଚକୋଟୀର ଶିଳ୍ପୀ ଏବଂ ସେଇଟା ଲୋପାର ସବୁଠାରୁ ବଡ଼ ଦୋଷ । ଆଉ ଲୋପା ପାଇଁ ମୀନାମାଉସୀର ଆଖିରେ ନିଦ ନାହିଁ ।

ତୁଲୁର ମନ୍ତବ୍ୟ ଶୁଣି, ମୁଁ ବିଚାରିଲି ତୁଲୁକୁ ଆଘାତ ନ କଲେ ତା'ର ଚେତନାର ଉଦୟ ହେବ ନାହିଁ । ଏଣୁ ମୁଁ ପଚାରିଥିଲି, ତୁଲୁ ତୁ ସେଥିପାଇଁ ଏତେ ଉଦ୍‌ବିଗ୍ନ କାହିଁକି ?

ପେଗ୍‌ରେ ହୁଇସ୍କି ଢ଼ାଳୁଢ଼ାଳୁ ସେ କହିଲା, ଲୋପାର ବାହାଘର ନ ହେଲାଯାଏ ଏଇ ତୁଷାରକାନ୍ତିର ଜୀବନରେ ଶାନ୍ତି ନାହିଁ ।

ମୁଁ ବିରକ୍ତି ପ୍ରକାଶ କରି କହିଲି, ମୁଁ ଦେଖୁଛି ତୁଲୁ, ପର ଝିଅ ପାଇଁ ତୁ ଭାରି ବ୍ୟସ୍ତ । କହିଲୁ, ତୋ ନିଜ ଝିଅ କଲ୍ୟାଣୀ ପାଇଁ କାହା ମୁଣ୍ଡ ବଥଉଛି ?

ମୋ କଥା ଶୁଣି ହୁଇସ୍କିର ବୋତଲଟାକୁ ତୁଲୁ ଥପ୍ କିନା ରଖିଦେଲା ଟେବୁଲ ଉପରେ । ମୋ ମୁହଁକୁ ଚାହିଁ ରାଗରେ ପଚାରିଲା, କ'ଣ କହିଲୁ, ଲୋପା ପରର ଝିଅ ? ଯଦି ମୁଁ କହେ, ଲୋପା ମୋ' ଝିଅ, ତୁ କ'ଣ ଅବିଶ୍ୱାସ କରିବୁ ?

ଏହା କହି, ମଦର ବୋତଲଟାକୁ ତଳେ କଚାଡ଼ି ଦେଇ ତୁଲୁ ଶୋଇ ପଡ଼ିଲା ଖଟ ଉପରେ । ତୁଲୁର କଥା ଶୁଣି ମୁଁ ପଥର ପାଲଟି ଗଲି ।

ହଁ, ତୁଲୁ କଥା ପଡ଼ିଥିଲା । ପ୍ରାୟ ତିନି ବର୍ଷ ପରେ ରୀନାଦେବୀ ଆସି ନିମନ୍ତ୍ରଣ

ଜଣେଇଥିଲେ । କହିଥିଲେ, କଲ୍ୟାଣୀର ବାହାଘର । ସ୍ନେହଅପା ଆଉ ଆପଣ ଦିହେଁ ଆଗରୁ ଛୁଟି ନେଇଯିବେ । କାରଣ ଏ ବାହାଘରର ସବୁକାମ ଆପଣ ଦି'ଜଣଙ୍କୁ ହିଁ ତୁଲେଇବାକୁ ପଡ଼ିବ ।

ରୀନା ଦେବୀଙ୍କ ନିମନ୍ତ୍ରଣର ଢଙ୍ଗରେ ମୁଁ ହସି କହିଥିଲି, କୋରାପୁଟର ତହସିଲଦାର ସାହେବଙ୍କ ଏକମାତ୍ର ଝିଅର ବାହାଘର । ଆପଣଙ୍କର କ'ଣ ଲୋକର ଅଭାବ ହେବ ?

ଦେଖିଲି, ସେତେବେଳକୁ ରୀନାଦେବୀଙ୍କ ମୁହଁ ଶୁଖି ଯାଇଥିଲା । ସେ ଦୁଃସମ୍ବାଦଟି ଜଣେଇ କହିଥିଲେ, ଆପଣଙ୍କ ତହସିଲଦାର ମହାଶୟ ବର୍ଷେ ହେବ ନିରୁଦ୍ଦିଷ୍ଟ । କିଏ କହୁଚି ସେ ସନ୍ନ୍ୟାସ ଗ୍ରହଣ କରିଚନ୍ତି । ବୁଝିଲେ ଭାଇ, ମୋର ଦୁର୍ଭାଗ୍ୟ ! କେତେ କଷ୍ଟକରି ମୁଁ କଲ୍ୟାଣୀର ବାହାଘର ଠିକ୍ କରିଛି । କିନ୍ତୁ, ପାଞ୍ଚ ଲୋକଙ୍କ ପଚିଶ କଥାରେ ପାତ୍ରଟି ଯଦି ହାତଛଡ଼ା ହୋଇଯାଏ ! ରୀନାଦେବୀଙ୍କ କଣ୍ଠ ରୁଦ୍ଧ ହୋଇଗଲା । ଲୁଗା ପଣତରେ ସେ ଲୁହ ପୋଛିଲେ ।

ରୀନାଦେବୀଙ୍କ କଥା ଶୁଣି ମୁଁ ଚାହିଁଲି ସ୍ନେହର ମୁହଁକୁ । ଛ'ମାସ ତଳର ହରଦ୍ୱାରର ସେଇ ଦୃଶ୍ୟଟି ଭାସି ଉଠିଲା ମୋ ଆଖି ଆଗରେ । ହରକିପେଡ଼ୀର ଲୁହା ଶିକୁଳି ଧରି ଗଙ୍ଗାର ସେଇ ତୁଷାର ଶୀତଳ ଜଳରେ ମୁଁ ବୁଡ଼ ପକାଇବାକୁ ଚେଷ୍ଟା କରୁଥାଏ । ସେତିକିବେଳେ ସ୍ନେହ ମୋତେ ଡାକ ପକାଇଥିଲା ! ଦେଖିଲ, ଦେଖିଲ, ଆମ ତୁଲୁବାବୁଙ୍କ ଭଳି ଦିଶୁଛନ୍ତି । ମୁଁ ସ୍ନେହର ଦୃଷ୍ଟି ପଥକୁ ଅନୁସରଣ କରି ଭୋର ବେଳର କୁହୁଡ଼ିଆ ବାତାବରଣ ଭିତରେ ଦେଖିଲି, ସାଧୁସନ୍ଥ ଆଉ ଅସଂଖ୍ୟ ତୀର୍ଥଯାତ୍ରୀଙ୍କ ଗହଳି ଭିତରେ ସିଡ଼ୀର ପାହାଚରେ ଉଠିଯାଉଥିଲେ ଜଣେ ସନ୍ନ୍ୟାସୀ । ଲଣ୍ଡାମୁଣ୍ଡ, ଗୋରା ଟକଟକ ଗୋଲଗାଲ ଦେହ । ମେଘର ପରଦା ଭିତରେ ଅଷ୍ଟମୀର ଜହ୍ନ ଲୁଚିଗଲା ଭଳି ସେଇ ସନ୍ନ୍ୟାସୀ ଜଣକ ମୁହୂର୍ତ୍ତକ ଭିତରେ ଉଭେଇ ଯାଇଥିଲେ ଲୋକ ଗହଳିରେ । ସେ ଠିକ୍ ତୁଲୁ ଭଳି ଦିଶୁଥିଲେ । କିନ୍ତୁ ସେ କାହିଁକି ତୁଲୁ ହେବ ? ତୁଷାରକାନ୍ତି ତ ସେତେବେଳେ କୋରାପୁଟର ତହସିଲଦାର । ମୁଁ ସେଦିନ ସେହି କଥାହିଁ ସ୍ନେହକୁ ବୁଝେଇଥିଲି ।

ହେଲେ ଏଇ ମୁହୂର୍ତ୍ତରେ ରୀନାଦେବୀଙ୍କ ମୁହଁରୁ ତୁଲୁ କଥା ଶୁଣି ମୋ ମୁହଁ ଫିଟିଲା ନାହିଁ । କେବଳ ଝରକା ବାଟେ ମୁଁ ଚାହିଁଲି ମେଘାଛନ୍ନ ଆକାଶକୁ । ଆକାଶ ର କଳା ମେଘ ପୁଞ୍ଜ ଭିତରେ ଚମକି ଉଠିଥିଲା ବିଜୁଳିର ଧଳା ରେଖାଟିଏ । ବୁଝିଲି, ମୁହୂର୍ତ୍ତକ ଭିତରେ ବଜ୍ରପାତ ହେବ; ଥରି ଉଠିବ ସମସ୍ତ ଆକାଶ ଆଉ ପୃଥିବୀ ।

ମୁଁ ନୀରବରେ ଅପେକ୍ଷା କଲି ସେଇ ଦାରୁଣ ମୁହୂର୍ତ୍ତ ପାଇଁ ।



# ଲିଲିଅପା

ଲିଲିଅପା କହିଲେ, ଦେଖିଲୁ ଚେନ୍ନମ୍, ଆକାଶରେ ହାତୀଙ୍କ ଭଳି କେମିତି କଳାମେଘ ଘୋଟି ଆସୁଛି । ଶୁଣ୍ଢ ହଲେଇ ଦାନ୍ତରେ ମାଟିକୁ ଖୋଳିତାଡ଼ି ମନଖୁସିରେ ସତେ ଯେମିତି ସେମାନେ ଖେଳୁଚନ୍ତି । ପୁଣି ଦେଖିଲୁ କଳାମେଘ ପାଖେ ଉଡ଼ିଯାଉଚନ୍ତି ମାଳମାଳ ଧଳାବଗ । ଆଃ, କେଡ଼େ ସୁନ୍ଦର ଦିଶୁଚି କହିଲୁ ?

ଲିଲିଅପାଙ୍କ ଏଭଳି ବିଚିତ୍ର କଥା ଶୁଣି ବୋକା ଆଖିରେ ଚାହିଁଲା ରିକ୍ସାବାଲା ଚେନ୍ନମ୍ । ସେ ଆଜି ବଡ଼ିସକାଳୁ ବ୍ୟଗ୍ର ହୋଇ ଧାଇଁଆସିଥିଲା ଲିଲିଅପାଙ୍କ ପାଖକୁ । ଶେଷଥର ପାଇଁ ସେ ଜାଣିବାକୁ ଚାହେଁ, ଅଭିଭାବକମାନେ ତା'ରିକ୍ସାରେ ପିଲାଙ୍କୁ ସ୍କୁଲକୁ ପଠେଇବେ କି ନାହିଁ ? ଚେନ୍ନମର ସେ କଥାରେ ସିଧାସଳଖ ଜବାବ ନଦେଇ ଲିଲିଅପା କହୁଚନ୍ତି କ'ଣନା ହାତୀ, କଳାମେଘ, ଧଳାବଗ ? ଚେନ୍ନମର ମଗଜରେ ସେସବୁ କିଛି ପଶୁନଥିଲା । ସେ ପଚାରିଲା, କ'ଣ କହିଲ ଲିଲିଅପା ?

କ'ଣ କହିଲି ତୁ ବୁଝିପାରୁନାହୁଁ ଚେନ୍ନମ ? ପାଠଶାଠ ଦି' ଅକ୍ଷର ପଢ଼ିଥିଲେ ସିନା ବୁଝନ୍ତୁ ? ଆକାଶକୁ ଥରେ ଚାହାଁ କିମିତି କଳାମେଘ, ଧଳାବଗ ! ହେଇ ଦେଖିଲୁ, ସୁନାରଙ୍ଗର କଦମ୍ବଫୁଲରେ ସେ ଗଛଟା କେଡ଼େ ସୁନ୍ଦର ଦିଶୁଚି । କହିଲେ ଲିଲିଅପା ।

ପିକାଟାକୁ କଳାଦାନ୍ତରେ କାମୁଡ଼ି ଚେନ୍ନମ ନିଠେଇ ଚାହିଁଲା ଆକାଶକୁ । କଳାହାଣ୍ଡିଆ ମେଘରେ ହଠାତ୍ ଚମକି ଉଠିଲା ରୁପାପାତିଆ ବିଜୁଳି ଗାରସବୁ । ତା'ପରେ ମେଘର ଗୁରୁ ଗୁରୁ ଗର୍ଜନ ସାଙ୍ଗକୁ ଘଡ଼ଘଡ଼ି ଶବ୍ଦରେ ଚେନ୍ନମ ଚମକି ପଡ଼ିଲା । ଥରିଗଲା, ଆକାଶ-ମାଟି ସମସ୍ତ ପୃଥିବୀ । ଟପ୍ ଟପ୍ ଝରିବାକୁ ଲାଗିଲା ଜାମୁକୋଳିଆ ବର୍ଷାଟୋପା ସବୁ । ବର୍ଷାରୁ ରକ୍ଷା ପାଇବା ପାଇଁ ଚେନ୍ନମ୍ ଉଠିଆସିଲା ବାରନ୍ଦା ଉପରକୁ । ଚାହୁଁ ଚାହୁଁ ପାଣିସୁଅ ବହିଗଲା ନାଲିଗୋଡ଼ିର ସଡ଼କ ଚିରି । ଚେନ୍ନମ୍‌ର ମନେହେଲା, ନିଜ ଛାତି ଚିରି ପାଣି ବହିଯାଉଛି । କାରଣ, ତା' ଆଖି ଆଗରେ ଭାସିଉଠିଲା ରାତିରେ ତା' ଝୁମ୍ପୁଡ଼ିର ସେଇ କରୁଣ ଛବି । ମନଭିତରଟା ତାର କ'ଣ ହୋଇଗଲା । କୋହ ଉଠିଲା । ସେ ଜାଣେ ଲିଲିଅପା ବୁଝିପାରିବେନି ଚେନ୍ନମର ଦୁଃଖ । ଇଂଜିନିୟର ମିଶ୍ରବାବୁଙ୍କର ସେ ଝିଅ । କେଡ଼େ ବଡ଼ଲୋକର ଝିଅ ରହୁଛନ୍ତି ଏଇ ନୂଆ କୋଠାଘରେ । ସେ କାହୁଁ ବୁଝିବେ ଯେ ମେଘ-ଝଡ଼ି ପାଖରେ ଝୁମ୍ପୁଡ଼ିବାଲାଙ୍କ ଦୁଃଖ ? କିନ୍ତୁ ଲିଲିଅପାଙ୍କୁ ଦେଖି ଚେନ୍ନମ ଏତକ ବୁଝିଗଲା, ଏଇ ବର୍ଷାରେ ଲିଲିଅପାଙ୍କୁ ଭାରି ମଜା ଲାଗୁଚି । ମେଘ ବିଜୁଳି ସଙ୍ଗେ ସେଇ ଧଳାବଗ ଭଳି ଆସମାନରେ ଉଡ଼ିଯାଉଛି ତାଙ୍କର ମନଟା । ବଣମୟୂରୀ ଭଳି ସେ

ନାଚୁଛନ୍ତି । ସେଥିପାଇଁ ସେ ଦେଖିବାକୁ କହୁଚନ୍ତି, ମେଘକୁ, ବିଜୁଳିକୁ, ଗଛର କଦମ୍ବଫୁଲକୁ । ସେ ଚିଡ଼ିଚିଡ଼ା ହୋଇ ଲିଲିଅପାଙ୍କୁ ତେଣୁ କହିଲା, ଇଏତ ଝଡ଼ି-ବର୍ଷା ଦିନ । ଆସ୍‌ମାନର କାଳା ବାଦଲକୁ ଆଉ ଦେଖିବି କ'ଣ ? ଏମିତି ମେଘକୁ ମୁଁ ଢ଼େର ଦେଖିଚି ।

ଲିଲିଅପା କିନ୍ତୁ ହସି ହସି ପୁଣି କହିଲେ, ବୁଝିଲୁ ଚେନ୍ନମ ଏମିତି ବଢ଼ିଆ କଳାବାଦଲ, ଧଳାଧଳା ବଗସବୁ, କଳାମେଘରେ ବିଜୁଳିର ଚମକ, ଗଛରେ ସୁନାରଙ୍ଗର କଦମ୍ବଫୁଲ, ଏସବୁକୁ ଦେଖି, ତୋ ମନଟା ଖୁସୀ ହେଉନାହିଁ ? ତୋର ମନଟା କ'ଣ କିରେ ? ଏଡ଼େ ସୁନ୍ଦର ଦୃଶ୍ୟକୁ ତୁ ସୁନ୍ଦର ବୋଲି କହିପାରୁନୁ ? ଏମିତି ଛବି ଦେଖି, ତୁମ ଗାଁର କବି ଉପେନ୍ଦ୍ର ଭଞ୍ଜଙ୍କ ଭଳି ଗୀତ ଗାଇବାକୁ ମୋର ମନହେଉଚି ।

ଚେନ୍ନମ ଦେଖିଲା, ଲିଲିଅପା ମନଖୁସିରେ, 'ଦେଖି ନବକାଳିକା ବକାଳିକା ମାଳିକା ଆଳି କାଳିକା କାନ୍ତ ସ୍ମରି' ଗୀତ ଗାଇବାକୁ ଆରମ୍ଭ କରିଦେଲେ । ଚେନ୍ନମର ମନ ଚିଡ଼ିଉଠିଲା । ଲିଲିଅପାଙ୍କୁ ସେ ଆଉ କହିବ କ'ଣ ? ସେ ଲିଲିଅପାଙ୍କ କଥାରୁ କିଛି ବୁଝିପାରୁନି । ଏ ବର୍ଷା ପାଗରେ ଝୁମ୍ପୁଡ଼ି ବାସିନ୍ଦା ଚେନ୍ନମର ଦୁଃଖ ଲିଲିଅପା ମଧ ବୁଝିପାରୁ ନାହାନ୍ତି । ଝୁମ୍ପୁଡ଼ିରେ ସବୁଠି ରାତିଯାକ ପାଣିଗଳୁଚି । ଚାଉଳ ମୁଠାକ ବି ପାଣି ସରସର । ରାତିରେ ନିଦ ନାହିଁ । ଲିଲିଅପାଙ୍କ ମୁହଁରୁ ଏତିକିବେଳେ ଗୀତ ଶୁଣି ତା'ର ଧୈର୍ଯ୍ୟ ତୁଟିଗଲା । ସେ ରାଗରେ କହିଲା, ଲିଲିଅପା, ଏ ବର୍ଷାପାଗରେ ତୁମେ କାହିଁକି ଗୀତ ନ ଗାଇବ ? ତୁମର ଅଭାବ କ'ଣ କହିଲ ? ବଢ଼ିଆ କୋଠାଘର, ମୋଜେଇକି ଚଟାଣ, ଶାଗୁଆନ କାଠର ପଲଙ୍କ । ତୁମ କୋଠାର ଝରକାବାଟେ ମେଘ, ବିଜୁଳି, ବଗ ଦେଖି ତୁମର ମନ ଖୁସୀ, ତୁମେ କେମିତି ବୁଝିବ ମାଟିକାନ୍ଥ ସରସର ଝୁମ୍ପୁଡ଼ି କଥା ? ଲୁଗାପଟା, ପେଡ଼ିପୁଟୁଳାକୁ ଏପଟସେପଟ କରୁ କରୁ ରାତି ପାହି ଯାଉଚି ।

ଚେନ୍ନମ ତାର ଦୁଃଖକଷ୍ଟର କାହାଣୀ ଶୁଣେଇ ଥରେ ଚାହିଁଲା, ଲିଲିଅପାଙ୍କ ଆଖିପତାରୁ ହୁଏତ ଝରିପଡ଼ିବ ଟୋପେ ଦିଟୋପା ଲୁହ । କିନ୍ତୁ ସେ ନିରାଶ ହେଲା । ଲିଲିଅପାଙ୍କ ଶାନ୍ତ ମୁହଁରେ ଦୁଃଖର ଚିହ୍ନ ନଥିଲା । ବରଂ ଚେନ୍ନମ କଥା ଶୁଣି ଲିଲିଅପା କହିଥିଲେ, ନିଶାପାଣି ପିଇ ପଇସାତକ ମଉଜ କରି ଉଡ଼େଇଦେଲେ ଝଡ଼ିବର୍ଷାରେ ହଇରାଣ ହରକତ ତୁ ନହେବୁ ତ ଆଉ ହବ କିଏ ? ନିଶାରେ ବେହୁସ ହେଇ ଭାରଯା ଲଛମୀକୁ ଛେଚିଦେଇ ଯେବେ ଘରୁ ତଡ଼ିଦେଲୁ ସେତେବେଳେ ସେ କଥା ଭାବିଥିଲୁ ? ଝିଅ ପାର୍ବତୀକୁ ଜ୍ୱର । ସାନପୁଅଟା ଝାଡ଼ାରେ କାଇଲ୍ । ଓଷଦ ପାଣି ଦୂରେ ଥାଉ ଦିଟା ରୋଗିଣା ପିଲାଙ୍କୁ ଧରି ମାଇକିନିଆ ଲୋକଟା ଗଲା କୁଆଡ଼େ ? ଏ ମେଘପାଣିରେ କେଉଁଠି ମୁଣ୍ଡ ଗୁଞ୍ଜିବ ?

ଲିଲିଅପାଙ୍କ କଥା ଶୁଣି ଚେନ୍ନମର ତୁଣ୍ଡ ଲେଉଟିଲା ନାହିଁ । ସେ ତୁନି ରହିବାର

ଦେଖି ଲିଲିଅପା ପୁଣି କହିଲେ, ପିଲାଛୁଆଙ୍କ ପାଇଁ ତୋ ମନରେ ଦୟାମାୟା ବୋଲି କିଛି ନାହିଁ ? ତୁ କ'ଣ ମଣିଷ ନା ପଶୁ ? ଚେନ୍ନମ ବୁଝିପାରିଲା ନାହିଁ କଣ ଜବାବ ଦେବ । ସତକଥା ସାତଦିନ ବିତିଗଲାଣି, ଲଛମୀର ଖବର ନାହିଁ, ପିଲା ଦି'ଟାର ବି ପତା ନାହିଁ । ଝିଅ ପାର୍ବତୀକୁ ଚାରିପାଞ୍ଚବର୍ଷ ହେବ । ସାନ ପୁଅଟାକୁ ବର୍ଷେ ପୂରିଯିବ । ସେମାନଙ୍କୁ ନଦେଖି ମନ କଣ ହେଉଚି ସେକଥା ଲିଲିଅପାଙ୍କୁ କ'ଣ କହିହବ ? ହେଲେ, ଗୋଟିଏ କଥା ସତ ! ଆଜିକାଲି ଲଛମୀର ମିଜାଜ୍‌ଟା କେମିତି କ'ଣ ପାଲଟି ଯାଇଚି । ସେ ଆଗ ଆଗ ମାଡ଼ଗାଳି ଖାଇ ସବୁ ସହିଯାଉଥିଲା । କିନ୍ତୁ ଏବେ ମୁହେଁ ମୁହେଁ ଜବାବ ଦଉଚି ? ପୁଣି କୈଫିୟତ ତଲବ କରୁଚି ?

ଚେନ୍ନମ ମୁହଁରୁ ସେକଥା ଶୁଣି ସେଥର ଲିଲିଅପା କହିଥିଲେ, ଆରେ ଚେନ୍ନମ ଯୁଗ ବଦଳିଗଲାଣି ମାଇକିନିଆ ହେଲେ ବୋଲି ମାଡ଼ଗାଳି ଖାଇ ସବୁକଥା ମୁହଁପୋତି ସହିଯିବ ସେକଥା ଆଉ ନାହିଁ ।

ଚେନ୍ନମ କିନ୍ତୁ ଭାବେ ଭିନ୍ନରକମ । ଯଉ ହାଡ଼ଭଙ୍ଗା ଖଟଣି ! ସଞ୍ଜକୁ ନିଶାପାଣି ଟିକିଏ ନହେଲେ ନ ଚଳେ । ସେଥିରେ ପୁଣି ରାତି ଅଧରେ ମାଇପ ଗାଳି ଫଜିଦ୍ କରିବ । ଝିଅର ଡ୍ରେସ୍ ନାହିଁ, ମାଇପର ଶାଢ଼ି ଲୋଡ଼ା, ଏଟା ଆଣ, ସେଇଟା ନାହିଁ । ମଶା ଡାଆଁଶ ଭଳି ଭଁ ଭଁ କଲେ କଉ ମରଦକୁ ଚିଡ଼ି ନ ମାଡ଼ିବ ? ଚିଡ଼ି ମାଡ଼ିଲେ, ରାଗରେ ମାଇପକୁ ବିଧାଏ ଗୋଇଠାଏ ମାରିବାଟା କଉ ନୂଆକଥା ? ଲଛମୀ କ'ଣ ନୂଆହେଇ ଘରକୁ ଆଇଚି ନା ନୂଆ ମାଡ଼ ଖାଉଚି ? ଇଏତ ଝୁମ୍ପୁଡ଼ିବାଲାଙ୍କ ନିତିଦିନିଆ କଥା । ହଁ, ଆଗେ ଲଛମୀ ମାଡ଼ଖାଇ ରାତିରେ କାନ୍ଦୁଥିଲା; ହେଲେ ରାତି ପାହିଲେ ଯଉକଥାକୁ ସେଇ କଥା । ଦିନର ଆଲୁଅ ଉଇଁଲେ ରାତିର ଅନ୍ଧାର ଯେମିତି ଉଭେଇଯାଏ ଠିକ୍ ସେମିତି ରାତିକଥା ସକାଳକୁ ଲଛମୀ ଭୁଲିଯାଏ । କୁଆ କା' କଲେ, ତା' ପିଇ ଯେ ଯାହା ଦୁଃଖରେ ବାହାରି ଯାଆନ୍ତି ।

ଚେନ୍ନମ କିଛି କମ୍ ରୋଜଗାର କରେ ନାହିଁ । ପୁଅର ଜନ୍ମ ପରେ ତା' ଭାଗ୍ୟ ଫିଟିଚି ବୋଲି ଚେନ୍ନମ୍ ବିଚାରେ । ଲିଲିଅପା କହିଦେଲାରୁ ସେ ବ୍ୟାଙ୍କ ଲୋନ୍ ପାଇଲା । ରିକ୍ସାଟିଏ ଆଣିପାରିଲା । ସେଥିରେ ଜାଲି ଲଗେଇ କଲୋନୀର ଦଶଜଣ ଟିକି ପିଲାଙ୍କୁ ସ୍କୁଲକୁ ନବାଆଣିବା କରୁଚି । ମାସକୁ ପାଞ୍ଚଶ ଟଙ୍କା ଥୁଆ । ତା' ଉପରେ ଲିଲିଅପାଙ୍କ ଘରେ ଲଛମୀ କାମ କରେ । ଲିଲିଅପା ତାକୁ ଆହୁରି ଦୁଇଘରେ ଲଗେଇ ଦେଇଚନ୍ତି । ଟଙ୍କା ଅଢ଼େଇଶ ଲଛମୀ ମଧ୍ୟ ଆଣୁଚି । କିନ୍ତୁ, ଚେନ୍ନମର ଦୀର୍ଘଶ୍ୱାସ ବାହାରିଲା । ଆଜି ତା'ର ଦୁଃଖ-ଦୁର୍ଦ୍ଦଶା କହିଲେ ନ ସରେ । ଲିଲିଅପା ଲଛମୀପଟ ହେଇ କହୁଛନ୍ତି ମୁଁ କୁଆଡ଼େ ତାକୁ ଘରୁ ତଡ଼ିଦେଇଚି । ହଁ, ଚେନ୍ନମ ସେ ରାତି ନିଶା କରିଥିଲା, ରାମଲୁ ଉପରେ ତା'ର ରାଗ ବଢ଼ିଯାଇଥିଲା; ହେଲେ, ତା'ର ଠିକ୍ ହୋସ୍ ଥିଲା । ଲଛମୀ ଭାରି ଅଝଟ

କରି ମାଗିଲା । କହିଲା, ପାଞ୍ଚଶ ଟଙ୍କା ଦେ । ପାର୍ବତୀ ଇଂରାଜୀ ସ୍କୁଲରେ ନାଁ ନେଖେଇବ । ତାର ଡ୍ରେସ୍ କିଣାହେବ, ବହି କିଣାହେବ । ଚେନ୍ନମ କହିଥିଲା, ଟଙ୍କା କଣ କଦମଫୁଲ ନା ଜାମୁକୋଳି ? ରାତି ଅଧରେ ଗଛରୁ ତୋଳି ଆଣିବି ? ମାସ ସରିନାଇଁ, ଏତକ ବୁଝିବାକୁ ନାଇଁ ? କେମିତିକା ମାଇକିନିଆଟା ତୁ ?

ଲଛମୀ ମୁହଁ ଛିଞ୍ଚାଡ଼ି ପଚାରିଥିଲା, ମାସକୁ ମାସ ପାଞ୍ଚଶ ଟଙ୍କା କଣ କରୁଚୁ ? ଚେନ୍ନମର ରକ୍ତରେ ନିଆଁ ନାଗିଗଲା । ଓହରେ, କଉ ମାଇକିନିଆ, ତାକୁ ପୁଣି ଚେନ୍ନମ ହିସାବ ଦବ ? ଚେନ୍ନମ କଣ ମୂର୍ତ୍ତି ଭଳିଆ ମାଇଚିଆ ? ତା'ଛଡ଼ା ଚେନ୍ନମର ମିଜାଜଟା ଆଗରୁ ବିଗିଡ଼ି ଯାଇଥିଲା । ସେକଥା ହେଇ ନଥିଲେ ଲଛମୀ ଉପରକୁ ହାତ ଉଠେଇବାଯାଏଁ କଥାଟା ଯାଇ ନଥାନ୍ତା ।

କଥା କଣ କି, ମାସର ପହିଲି ସପ୍ତାହରେ ପକେଟ୍ ଗରମ ହେଇଗଲେ ମିଜାଜ୍ ମଧ ବଡ଼ଲୋକୀ ହୋଇଯାଏ । ସେ ତେଣୁ ଶନିବାର ସଞ୍ଜକୁ ଚାଲିଯାଏ ପୁନ୍ନମ ଘରକୁ । ବଢ଼ିଆ ଟୋକୀ ପୁନ୍ନମ୍ । ପିଲାଦିନୁ ଗାଁରୁ ଚେନ୍ନମର ଜଣାଶୁଣା । ଚେନ୍ନମକୁ ସେ ଭାରି ଖାତିର କରେ । ପହଞ୍ଚଗଲେ କୁକୁଡ଼ା ତରକାରୀ, ଅଣ୍ଡାଭଜା ଆଣି ଥୋଇଦିଏ । ପେଡ଼ି ଭିତରୁ ଚେପଟା ବୋତଲ ବାହାର କରି ବିଲାତି ମଦରୁ ଅଧଗିଲାସେ ଆଣି କୁଣିଆ ଚର୍ଚ୍ଚା କରିବାକୁ କେବେ ଭୁଲେନାହିଁ ପୁନ୍ନମ । ମୂର୍ତ୍ତି ପରା ହୋଟେଲରେ କାମକରେ । ବିଲାତି ମଦ ଚୋରେଇ ଆଣେ । ତା' ମାଇପ ସାଙ୍ଗେ ଚେନ୍ନମର ଏକୁଟିଆ ମିଳାମିଶା କଥା ମୂର୍ତ୍ତିକି ଅଛପା ନାହିଁ । ଘରେ ବସି ପୁନ୍ନମ ଭଲ ରୋଜଗାର କରୁଚି । ଦି'ପଇସା ପାଇ ମୂର୍ତ୍ତି ମଧ ଖୁସୀ; ହେଲେ, ଦୁସ୍‌ମନି କଲା ଶଇତାନ ରାମଲୁ । ପୁନ୍ନମକୁ ନେଇ ସେ ଚେନ୍ନମ ନାଁରେ ବଦନାମ କରୁଚି । ଚେନ୍ନମ ସହିବା ଲୋକ ନୁହଁ । ସେ ଦୁଇଟା ମୁଥିଣି ମାରି ଲହୁଲୁହାଣ କରିଦେଇଥିଲା ରାମଲୁକୁ । ସେଇ ଶଇତାନ୍ ରାମଲୁ ସଙ୍ଗେ ମାର୍‌ପିଟ୍ କରି ଚେନ୍ନମ ଝୁମ୍ପୁଡ଼ିକୁ ଫେରିଥିଲା । ସେତିକିବେଳେ ଲଛମୀ ଜିଦ୍ ଧଇଲା ଟଙ୍କା ପାଇଁକି । ଚେନ୍ନମକୁ ପୁଣି ସେ ହିସାବ ମାଗୁଚି । ତା' ରକ୍ତ ତାତିଗଲା ଏବଂ ଆଖିବୁଜା ମାଡ଼ ମାରିଥିଲା ଲଛମୀକୁ ।

ଚେନ୍ନମ ହୋସ୍ ଫେରିପାଇଥିଲା ରାତିପାହାନ୍ତା ବେଳକୁ । ନିଦରୁ ଉଠି ସେ ଭାବିଥିଲା, ରାତିର ଘଟଣାକୁ ଲଛମୀ ଭୁଲିଯାଇଥିବ । ସକାଳେ ସେ ଚା'କରେ । କିନ୍ତୁ ସେଦିନ ଚେନ୍ନମ ଦେଖିଲା, ସେଯାଏ ଲଛମୀ ଚା' କରିନାହିଁ । ସକାଳୁ ଚା' ନ ପାଇଲେ ଚେନ୍ନମର ମିଜାଜ ବିଗିଡ଼ିଯାଏ । ମୁଣ୍ଡଟା ମଧ ଭାରି ବିନ୍ଧୁଥାଏ । ସେ ପାର୍ବତୀକୁ ଡାକପକେଇ କହିଲା, ଏ ପାରୁ, ଅମ୍ମାକୁ କହ, ଚା' ଦବ । କାମୁଡ଼ା କୁକୁରଭଳି ଖିଙ୍କାରି ଉଠିଥିଲା ଲଛମୀ । ସେ କହିଲା ଏତେ ଗରମ ଦେଖଉଚୁ କାହାକୁ ? ରାତି ନ ପାହୁଣୁ,

ଚା' ଖାଇବାକୁ ଭାରି ସଉକ । ତୁଲି ନଗେଇ ଖାଉନୁ ? ନ ହେଲେ ଚାଲିଯା, ଯଉଠି ନିଶାପାଣି ମିଳୁଚି ସେଇଠିକି ? ମୁଁ ଆଉ କରି ପାରିବିନି । ମୁଁ ଚାଲିଲି ମୋ ବାପ ଘରକୁ । ରହିଲା ତୋ ଘର । ମନଇଚ୍ଛା ଚା' ପିଉଥା । ନିଶାପାଣିରେ ପଇସା ଉଡ଼ଉଥା ।

ସତକୁସତ ଚେନମ ଦେଖିଲା, ପିଲା ଦି'ଟାକୁ ଧରି ଲଛମୀ ଝୁମ୍ପୁଡ଼ିରୁ ବାହାରିଗଲା । ଲଛମୀ ଚାଲିଗଲା; ହେଲେ, ତା' କଥାପଦକ ନିଆଁ ଜାଳିଦେଲା ଚେନମର ମନରେ । ସେ ବୁଝିଲା, ନିଶ୍ଚୟ ସେଇ ଶଇତାନ ରାମଲୁ ଲଛମୀ କାନରେ ଫୁଙ୍କିଦେଇଚି ପୁନମ ସଙ୍ଗେ ତା'ର ଗୁପ୍ତ କାହାଣୀକୁ ।

ସେଦିନ ସ୍କୁଲ ଖୋଲା । ପିଲାଙ୍କୁ ନେଇ ସ୍କୁଲକୁ ଯିବାକୁ ହେବ । ତେଣୁ ରିକ୍ସା ଧରି ଚେନମ ଧାଇଁଥିଲା ଲିଲିଅପାଙ୍କ ଘରକୁ । ତାଙ୍କ ସାନଭଉଣୀ ଡଲି ସ୍କୁଲକୁ ଯାଏ । ତାଙ୍କରି ଦୁଆରେ ସେ ଅନେକ ସମୟ ଯାଏ ଅପେକ୍ଷା କଲା । କାହାରି ଦେଖାଦର୍ଶନ ନାଇଁ । ଗେଟ୍ ଖୋଲି କଲିଙ୍ଗବେଲର ବୋତାମ ଚିପିଲା । ଚାକର ନରିଆ ଯାହା କହିଲା ସେକଥା ଶୁଣି ତା' ବୁଦ୍ଧିବଣା ହୋଇଗଲା ।

ନରିଆ କହିଲା, ଡଲିକି ନେଇ ଲିଲିଅପା କେତେବେଳୁ ସ୍କୁଲକୁ ଚାଲିଗଲେଣି ।

ଆଶ୍ଚର୍ଯ୍ୟର କଥା ! ଏମିତି ତ କେବେ ହୁଏନି ? ତା'ପରେ ଚେନମ ଭାବିଲା, ଲଛମୀ ସିନା ରାଗରେ ତାକୁ ଦିପଦ କହି ଘରୁ ବାହାରିଗଲା; ହେଲେ ସକାଳେ ଲିଲି ଅପାଙ୍କ ଘରକାମ ଶେଷ ନକରି ସେ କେବେ ଯାଇ ନଥିବ । ଏଣୁ ନରିଆକୁ ସେ କହିଲା, ଲଛମୀ ଘରକାମ ସାରିଲାଣି ? ଟିକିଏ ଡାକିଦେଲୁ ।

ଲଛମୀ ? ସେ କାହିଁ ? ଦି'ଦିନ ହେଲା ଲଛମୀର ଦେଖାନାହିଁ ଯେ, ଘରର ସବୁକାମ କରି ମୁଁ ହଇରାଣ ହେଉଚି । ମୁଁ ଯାଉଚି, ତେଣେ କେତେ କାମ ପଡ଼ିଚି । ଚାଲିଗଲା ନରିଆ ।

ବୋକା ଆଖିରେ ଚେନମ ଚାହିଁ ରହିଲା ଶୂନ୍ୟକୁ ।

ତା'ପରେ ସେ ରିକ୍ସାଧରି ଯାଇଥିଲା ଅନ୍ୟପିଲାଙ୍କ ଘରକୁ; କିନ୍ତୁ ସେମାନେ କେହିହେଲେ ଘରେ ନଥିଲେ । ତା' ମନରେ ସନ୍ଦେହର ମେଘ ଘୋଟିଆସିଲା; ତଥାପି ଛୁଟିବେଳକୁ ସେ ସ୍କୁଲ ଗେଟ ପାଖରେ ଜଗିବସିଲା ଶିକାରୀ ଛଞ୍ଚାଣ ଭଳି ।

ତୁରୁଟ୍‌ଟା ଟାଣୁ ଟାଣୁ ଢୁଳେଇ ପଡ଼ିଥିଲା ଚେନମ । ଛୁଟିଘଣ୍ଟା ବାଜିବାରୁ ଧଡ଼ପଡ଼ କରି ସେ ଉଠିବସିଲା । ଦେଖିଲା, କାର୍, ସ୍କୁଟର, ମୋଟରସାଇକେଲ, ଅନ୍ୟ ରିକ୍ସା

ପିଲାଙ୍କୁ ଧରି ଚାଲିଗଲେ । କିନ୍ତୁ, ତାର ଦଶଜଣ ପିଲା ବାହାରିଲେ ନାହିଁ । ଚେନ୍ନମ ନିଜେ ଯାଇ ଦେଖା କରିଥିଲା ଖୋଦ୍ ପ୍ରିନ୍‌ସିପାଲଙ୍କୁ । ଆଖିରୁ ମୋଟା ଚଷମା ନିକାଳି ପ୍ରିନ୍‌ସିପାଲ କହିଲେ ଚେନ୍ନମ, ପିଲାମାନେ ତୁମ ରିକ୍‌ସାରେ ଆଉ ଯିବେ ନାହିଁ ।

ଚେନ୍ନମର ମୁଣ୍ଡରେ ବଜ୍ର ପଡ଼ିଲା । ତା' ମୁଣ୍ଡ ବୁଲେଇ ଦେଲା । ଦେହରୁ ଝାଳ ବୋହିଗଲା । ଲାଜରେ ମୁଣ୍ଡ ପୋତି ସେ ଫେରିଆସିଲା ଏବଂ ତା'ର ଖାଲି ରିକ୍‌ସାଟିକୁ ଦେଖି ଆଖିରେ ଜକେଇ ଆସିଲା ଅମାନିଆ ଲୁହ ଧାର; ହେଲେ ଚେନ୍ନମକୁ ଜଣାନଥିଲା, ତା' ପାଇଁ ଅପେକ୍ଷା କରୁଥିଲା ଆହୁରି ଛାତିଫଟା ଦୁଃଖ । ଟିକିଏ ପରେ ଗେଟ ଭିତରୁ ବାହାରି ଆସିଲେ ଜଣେ ମ୍ୟାଡ଼ାମ । ତାଙ୍କ ସଙ୍ଗରେ ଯେଉଁ ପିଲାମାନେ ବାହାରିଲେ ସେମାନେ ଆଉ କେହି ନୁହନ୍ତି, ସେଇ ଡଲି, ରାଜା, ମୁନ୍‌ମୁନ୍ ହେରିକା ଦଶଜଣ ପିଲା ।

ଆଜିକି ବର୍ଷେ ହେବ ଚେନ୍ନମ ସେମାନଙ୍କୁ ନେବାଆଣିବା କରୁଛି । ଛୁଟି ହେଲେ ଏଇ ରିକ୍‌ସାରେ ଆଗ ଯାଇ ବସିବା ଆଗ୍ରହରେ ସେମାନେ ଚଢ଼େଇମାନଙ୍କ ଭଳି କିଚିରିମିଚିରି କରି ଧାଇଁଆସନ୍ତି । ଯେଉଁମାନେ ନିଜେ ରିକ୍‌ସାକୁ ଚଢ଼ିପାରନ୍ତି ନାହିଁ ସେମାନଙ୍କୁ ସେ କାଖେଇ ରିକ୍‌ସାକୁ ଉଠେଇଦିଏ । ମମତାରେ ସେ ଯେମିତି ବାନ୍ଧିହୋଇ ପଡ଼ିଚି ଏଇ ବର୍ଷକ ଭିତରେ । କିନ୍ତୁ ଆଜି ସେମାନେ କେହି ଫେରି ଚାହିଁଲେ ନାହିଁ ? ଛୋଟିଆ ଛୋଟିଆ ପାଦ ପକେଇ ପ୍ୟାରେଡ୍ କଲାଭଳି ଚାଲିଗଲେ ? ଶୂନ୍ୟ ରିକ୍‌ସାକୁ ଚାହିଁ ଏକ ଅବୁଝା କୋହରେ ତା'ର ଛାତି ଭିତରଟା କ'ଣ ହୋଇଗଲା ।

ପିଲାଙ୍କୁ ନେଇ ମ୍ୟାଡ଼ାମ୍ ଜଣକ ଚାଲିଗଲା ପରେ ଚେନ୍ନମର ଚେତା ପଶିଲା । ଗୋଟିଏ କଥା ମନେପଡ଼ିଗଲା । ସେ ମନେପକେଇବାକୁ ଚେଷ୍ଟାକଲା ସେଇ ମ୍ୟାଡ଼ାମ ତାକୁ ଆଗରୁ କେଉଁଠି ଦେଖିଚି । ମନେହେଲା ସେଇ ମୁହଁଟି ବେଶ୍ ଜଣାଶୁଣା । ଏଥର ତା'ର ମନେପଡ଼ିଲା, ପ୍ରିନ୍‌ସିପାଲଙ୍କ ଅଫିସରେ ସେ ମଧ ବସିଥିଲେ । କିନ୍ତୁ ଚେନ୍ନମ ଚିହ୍ନିପାରି ନଥିଲା । ସେ ଲିଲିଅପା ଛଡ଼ା ଆଉ କେହି ନୁହନ୍ତି । ଲିଲିଅପାଙ୍କୁ ସେ କେବେ ଶାଢ଼ି ପିନ୍ଧିବାର ଦେଖିନଥିଲା । ମ୍ୟାକ୍‌ସି କିମ୍ବା ସାଲୋଓ୍ୱାର ପାଇଜାମା ପିନ୍ଧିବା ତ ତାଙ୍କର ଅଭ୍ୟାସ । ଶାଢ଼ିରେ ତାକୁ ଚେନ୍ନମ ଚିହ୍ନିବ କେମିତି ? ମନରେ କ୍ଷୋଭ ଜାଗିଲା । ସେ ଶାଢ଼ି ପିନ୍ଧନ୍ତୁ କି ମ୍ୟାକ୍‌ସି ପିନ୍ଧନ୍ତୁ, ସେଥିରେ ଚେନ୍ନମର କିଛି ଯାଏଆସେ ନାହିଁ । କିନ୍ତୁ ସେ ଶେଷକୁ ଚେନ୍ନମ୍ ବିରୁଦ୍ଧରେ ଗଲେ ? ଶତ୍ରୁ ଭଳି ଆଚରଣ କଲେ ? ଚେନ୍ନମ ଜୀବନରେ ଏକଥା ଆଶା କରି ନଥିଲା । ଗୋଟିଏ ମହତ ଧାରଣା ଲିଲିଅପାଙ୍କ ପାଇଁ ତା' ମନରେ ଜିଇଁଥିଲା; କିନ୍ତୁ ମୁହୂର୍ତ୍ତକରେ ସବୁ ବଦଳିଗଲା । ମନେହେଲା, ଗୋଟିଏ ପଥର ମାଡ଼ରେ ଝଣ୍‌ଝଣ୍ କରି ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଗଲା ସେଇ ରଙ୍ଗିନ କାଚର ଝରକାଟି ।

କେଇ ବର୍ଷ ତଳେ ଗାଁ ମାଟି ଛାଡ଼ି ସେ ପାଦ ଦେଇଥିଲା ଏଇ ଇଟା କଂକ୍ରିଟର ସହରରେ । ସେଦିନୁ ସେ ଦେଖିଚି, ମଣିଷଗୁଡ଼ାଙ୍କ ମନ ବୋଲି କିଛି ନାହିଁ । ସମସ୍ତେ

ପଥର । କେହି କାହାରି ମୁହଁକୁ ଚାହିଁବାକୁ ବେଳ ନାହିଁ । ଅନ୍ଧ ଭଳି ଧାଉଁଛନ୍ତି ପଇସା ପଛରେ, ସ୍ୱାର୍ଥ ପଛରେ । କିନ୍ତୁ ଏ କଲୋନୀରେ ଲିଲିଅପା ମନେହୋଇଥିଲା ସବୁଠୁ ଅଲଗା । ଭିନ୍ନ କିସମର ଝିଅ ସେ । ପଥରଗଦା ଭିତରେ ଦରଦି ଝରଣାଟିଏ । ସେ କାହାରି ଦୁଃଖ ସହିପାରନ୍ତି ନାହିଁ; ବରଂ ପାଇବାର ଆଶା ନରଖି ଦବାକୁ ହାତ ବଢ଼େଇ ଦିଅନ୍ତି । କିନ୍ତୁ ସେଇ ଲିଲିଅପା ତା' ବିରୁଦ୍ଧରେ ଗଲେ ? ଶତ୍ରୁ ଭଳି କାମ କଲେ ? କିଭଳି କଇଁଫୁଲିଆ ସୁନ୍ଦର ମୁହଁତଳେ ଡାଆଣୀର ମନ ଲୁଚିଥିଲା ? ଚେନ୍ନମ ଦିହକରେ ଏକଥା ଭାବିନଥିଲା ।

ସବୁକିଛି ଓଲଟପାଲଟ ହୋଇଗଲା । ଦୁନିଆଟା ଅନ୍ଧାର ଦିଶିଲା ।

ଶେଷକୁ ନିରାଶ ମନରେ ଝୁମ୍ପୁଡ଼ିକୁ ଫେରିଥିଲା ଚେନ୍ନମ । ଦେଖିଲା, ସତକୁ ସତ ଲଛମୀ ଫେରିନାହିଁ । ପାରୁ ନାହିଁ କି ଚିନା ବି ନାହିଁ । ସବୁ ଝୁମ୍ପୁଡ଼ିରେ ବତୀ ଜଳୁଥିଲା, ଚୁଲିରୁ ଧୂଆଁ ଉଠୁଥିଲା । ପିଲାମାନେ ହସୁଥିଲେ କାନ୍ଦୁଥିଲେ । କେହି କେହି କଳିକଜିଆ କରୁଥିଲେ । ସେଠି ଜୀବନ ଥିଲା; ହେଲେ ଚେନ୍ନମର ଝୁମ୍ପୁଡ଼ି ଅନ୍ଧାର । ମଶାଣି ପାଲଟି ଯାଇଚି ତା'ଘର । ପାରୁ ନାହିଁ କି ଚିନା ବି ନାହିଁ । ମନଟା ହାହାକାର କଲା ।

ହେଲେ, ସବୁ ଲାଜ, ସବୁ ଅପମାନକୁ ପିଠି କରିଦେଇ ସକାଳେ ସେ ପୁଣି ଯାଇ ହାଜର ହେଲା ଲିଲିଅପାଙ୍କ ଦୁଆରେ । କିନ୍ତୁ ଲିଲିଅପା ମଧ୍ୟ ପ୍ରିନ୍‌ସିପାଲଙ୍କ ଭଳି ନିଷ୍ଠୁରଭାବେ କହିଲେ, ଗାଡ଼ିୟନମାନେ ତୋ ରିକ୍‌ସାରେ ପିଲାଙ୍କୁ ଛାଡ଼ିବାକୁ ରାଜି ନୁହନ୍ତି ।

କାହିଁକି ? ମନର କ୍ଷୋଭକୁ ଚାପିରଖି ଆଶ୍ଚର୍ଯ୍ୟ ହେଲାଭଳି ପଚାରିଥିଲା ଚେନ୍ନମ । କିନ୍ତୁ ଆହୁରି ଆଶ୍ଚର୍ଯ୍ୟ ହେଇ ସେ ଦେଖିଲା, ମେଘ ନଥିଲା ଆକାଶଭଳି ଲିଲିଅପାଙ୍କ ମୁହଁ ଶାନ୍ତ । ସେଠି ରାଗରୋଷର ଚିହ୍ନ ନଥିଲା । ସେ ବରଂ ହସି ହସି କହିଥିଲେ, ଚେନ୍ନମ ଦି'ଅକ୍ଷର ପାଠ ତ ପଢ଼ିନୁ ନାହିଁ ବୁଝିବୁ କେମିତି ? ତୋ' ଝିଅ ପାର୍ବତୀକୁ ପାଠପଢ଼ା । ସ୍କୁଲକୁ ପଠେଇଦେ । ତୋ' ଝିଅ ପାଠ ପଢ଼ିଲେ ଗାଡ଼ିଏନଙ୍କ ମନର କଥା ତୁ ଆପେ ଆପେ ବୁଝିଯିବୁ ଯେ ।

ଲିଲିଅପାଙ୍କ କଥା ଚେନ୍ନମର ମଗଜରେ ପଶୁ ନଥିଲା । ଅଲରା ବାଳକୁ କୁଣ୍ଡେଇ ସେ କହିଲା, ମାଇକିନିଆ ଝିଅ, କାହାଘରେ କାମଦାମ କଲେ... ।

ଅଧବାଟରେ ଲିଲିଅପା କହିଲେ, ତୋତେ କିଏ ବୁଝେଇବ ? ନିଶାପାଣି ଖାଇ ମାତାଲ ହୋଇ ମାଇପକୁ ମାରି ଘରୁ ତଡ଼ିଦେଲୁ । କାଲିକି ଯେ ତୋ ଗାଡ଼ିଟାକୁ ନିଶାରେ ଏକ୍‌ସିଡେଣ୍ଟ ନ କରିବୁ ସେକଥା କିଏ କହିପାରିବ ? ଥରେ ଏକ୍‌ସିଡ଼େଣ୍ଟ ହୋଇଗଲେ, ସେଇ ଟିକିଟିକି ପିଲାଙ୍କ ଅବସ୍ଥା କ'ଣ ହେବ ଥରେ ଭାବି ଦେଖିଚୁ ?

ଏକ୍‌ସିଡ଼େଣ୍ଟ ? ଏକ୍‌ସିଡ଼େଣ୍ଟର ନାଁ ଶୁଣି ଚେନ୍ନମର ଛାତିଟା ଧଡ଼କିନା ହେଲା । ବାଇ ଚଢ଼େଇଭଳି ଟିକି ଟିକି ପିଲାମାନଙ୍କୁ ଧରି ଯଦି ଏକ୍‌ସିଡ଼େଣ୍ଟ ହୋଇଯାଏ । ଓଃ ସେ

ଆଉ କଳ୍ପନା କରିପାରିଲା ନାହିଁ । ଚେନ୍ନମର ମନେହେଲା, ଫୁଲ ପରି କଅଁଳ ମୁହଁରେ ଟିକି ଟିକି ପିଲାମାନେ ତା'ଆଡ଼କୁ ଚାହିଁରହିଛନ୍ତି । ସେମାନଙ୍କ ବଡ଼ ବଡ଼ ଆଖିଡୋଳାରେ ଠିକ୍ ସେଇ ପ୍ରଶ୍ନ ।

ହେଲେ, ମୁଁ କ'ଣ କରିବି, ଲିଲିଅପା ? ଅତି କରୁଣ ସ୍ୱରରେ ଚେନ୍ନମ ପଚାରିଥିଲା ।

ଶୁଣ ଚେନ୍ନମ, ତୁ ଯଦି ଗୋଟିଏ କାମ କରିବୁ, ଗାଡ଼ିୟନମାନେ ଠିକ୍ ରାଜି ହୋଇଯିବେ ।

ଲିଲିଅପାଙ୍କ ମୁହଁରୁ ଅମୃତ ଝରିଲା କି ? ଚେନ୍ନମର ମନେ ହେଲା, କିଟିକିଟି ଅନ୍ଧାର ଭିତରେ ସେ ଚେନାଏ ଆଲୁଅର ସନ୍ଧାନ ପାଇଛି । ମନରେ ଜଳିଉଠିଲା ଆଶାର ବତିଟିଏ । ସେ କହିଲା, ମତେ ଯଉ କାମ କରିବାକୁ କହିବ, ଜୀବନକୁ ପାଣି ଛଡ଼େଇ ମୁଁ କରିବି । ମୋ ଦାନାପାଣିଟା ବଜାଏ ରହୁ, ଲିଲିଅପା ।

ତୋତେ ନିଶାପାଣି ଛାଡ଼ିବାକୁ ହେବ । ଦୃଢ଼ ଅଥଚ ଶାନ୍ତ କଣ୍ଠରେ କହିଥିଲେ ଲିଲିଅପା ।

ଲିଲିଅପାଙ୍କ କଥା ଶୁଣି ଘଡ଼ିଏ ଗୁମ୍‌ମାରି ବସିଗଲା ଚେନ୍ନମ । ସେ ଚାହିଁଲା ତାଙ୍କର ମୁହଁକୁ । ମନେହେଲା, ଏ ମୁହଁ ସେ କେବେ ଦେଖିନାହିଁ । ଏଇଟା ଲିଲିଅପାଙ୍କ କଇଁଫୁଲିଆ କଅଁଳ ମୁହଁ ନୁହେଁ । ମାର୍ବଲ ପଥରକାଟି ମୁହଁଟିଏ କିଏ ବସେଇ ଦେଇଛି । ଭୋକ ଉପାସରେ ସେ କିଛିଦିନ ବିତେଇଦେବ; ହେଲେ ସଞ୍ଜକୁ ନିଶାପାଣି ଟୋପେ ନହେଲେ ସେ ଠକ୍‌କିନା ମରିଯିବ । ସୁତରାଂ ରହିରହି ସେ କହିଥିଲା, ଲିଲିଅପା, ତମେ ଆଉ ଯୁ କଥା କହିବ ମୁଁ ଜୀବନଦେଇ କରିଦେବି ହେଲେ ସେଇ ଗୋଟିଏ କଥା ମତେ କହିବ ନାହିଁ । ନିଶାପାଣି ଟୋପେ ନହେଲେ ମୁଁ ମରିଯିବି, ଠିକ୍ ଶୁଖିଲା ଭୂଇଁରେ ମାଛଟିଏ ଭଳି ।

ଦେଖ୍ ଚେନ୍ନମ୍, ତୁ ଏମିତି ଜିଦ୍ ଧଇଲେ ସେମାନେ ରାଜିହେବେ କାହିଁକି ? ଶାନ୍ତ ସ୍ୱରରେ କହିଥିଲେ ଲିଲିଅପା । କିନ୍ତୁ ଚେନ୍ନମ୍‌କୁ ସେ କଥାଟା ନିହାତି ଅବାଗିଆ ମନେହେଲା । ରାଗରେ ସେ କହିଲା, ସେମାନେ ପିଲାକୁ ଛାଡ଼ିଲେ ଛାଡ଼ନ୍ତୁ, ନଛାଡ଼ିଲେ ନାଇଁ । ମୁଁ ହକ ମେହନତ କରିବି ପଇସା ନେବି । ଭିକ ମାଗୁନି ଯେ ସେମାନେ ମତେ ଆଇନ ଦେଖେଇବେ । ଏଇକଥା ରୋକ୍‌ଠୋକ୍ ଶୁଣେଇଦେଇ ଚେନ୍ନମ ପୁଣି ଫେରିଯାଇଥିଲା ସେଇ ଝୁମ୍ପୁଡ଼ିକୁ ।

ରାତିଯାକ ଝଡ଼ବର୍ଷା । ଝୁମ୍ପୁଡ଼ିରେ ସବୁଠି ପାଣି । ଅନ୍ଧାର ଝୁମ୍ପୁଡ଼ି ଭିତରେ ଚେନ୍ନମ ଲଢ଼େଇ କରୁଥାଏ ନିଜର ମନ ସାଙ୍ଗରେ । ଅଭିଭାବକମାନେ ପିଲାକୁ ନଛାଡ଼ିଲେ ସେ

କ'ଣ କରିପାରିବ ? ମାସକୁ ମାସ ପାଞ୍ଚଶ' ଟଙ୍କା ମିଳୁଥିଲା । ଧୋଇ ନାଇଁକି ମରୁଡ଼ି ନାଇଁ । ଏବେ ବ୍ୟାଙ୍କଲୋନ ସେ ଶୁଝିବ କେମିତି ? ସେ ଛାଳିଦିଆ ରିକ୍ସାରେ ଅନ୍ୟ ସବାରି ବସିବେ କାହିଁକି ? ତା' ଆଖିରୁ ନିଦ ଉଭେଇଗଲା । କିଛି ବୁଦ୍ଧି ଦିଶିଲା ନାହିଁ । ଜଣଙ୍କର ହସିଲା ମୁହଁଟା ଆଖି ଆଗରେ ଭାସି ଉଠିଲା । ଭାବିଲା ସେ ପଳେଇବ ପୁନମ ପାଖକୁ । ସେଇ ବିଲାତି ମଦରୁ ଟିକିଏ ପିଇଦେଲେ ହୁଏତ ମନରେ ଶାନ୍ତି ପାଇବ, ହେଲେ ପୁନମ୍, ସେ ତ ସୁଖର ସାଥୀ । ପଇସାକୁ ସେ ଭଲପାଏ । ସେ କ'ଣ ଚେନ୍ନମକୁ ଭଲପାଏ ? ରାମଲୁର କଥା ହିଁ ସତ । ସେଦିନ ରାମଲୁକୁ ମାଡ଼ଦେବା ଠିକ୍ ହୋଇନି । ଚେନ୍ନମର ଦୁଃଖ ପୁନମ ବୁଝିବ ନାହିଁ । ସେ ପଇସା ଚାହେଁ । ଯେ ଚେନ୍ନମ ପାଇଁ ସବୁ ଦୁଃଖ ସହିବ, ସେ ହେଲା ଲଛମୀ । ଲଛମୀ ତାକୁ ସବୁକିଛି ଦେଇଛି । ପାର୍ବତୀ ଭଳି ଝିଅ, ଚିନା ଭଳି ପୁଅ ଦେଇଛି ଲଛମୀ । ସେଇ ଲଛମୀ ପାଇଁ, ପୁଅ-ଝିଅଙ୍କ ପାଇଁ ଚେନ୍ନମକୁ ଜିଇଁବାକୁ ପଡ଼ିବ । ଲିଲିଅପାଙ୍କ କଥା ସତ । ସେ ତା' ପିଲାଙ୍କ କଥା ଭାବୁନାହିଁ । ସେ ମଣିଷ ନୁହେଁ, ପଶୁଠାରୁ ହୀନ । କୁକୁର ବିଲେଇ ମଧ୍ୟ ନିଜ ପିଲାଙ୍କ ଯତ୍ନ ନେଇଥାନ୍ତି, କିନ୍ତୁ ଚେନ୍ନମ ?

ଲଛମୀ, ପାର୍ବତୀ ଆଉ ଚିନାକଥା ଭାବୁ ଭାବୁ ଚେନ୍ନମ ଶୋଇଯାଇଥିଲା । ଚଢ଼େଇମାନଙ୍କର କିଚିରିମିଚିରି ଶବ୍ଦରେ ତା'ର ନିଦ ଭାଙ୍ଗିଗଲା । ଛପର ଫାଙ୍କରୁ ଝରିପଡୁଥିଲା ସକାଳର ସୁନ୍ଦର ଆଲୁଅ । ଚଢ଼େଇମାନଙ୍କର ମିଠା ମିଠା ରାବ ଶୁଣି ତା'ର ମନେପଡ଼ିଗଲା ସେଇ ଦଶଜଣ ପିଲାଙ୍କର ଶାନ୍ତ କଅଁଳ ମୁହଁସବୁ । ସେମାନଙ୍କ ମଧୁର ବନ୍ଧୁତାକୁ ସେ ହରେଇବାକୁ ଚାହୁଁ ନଥିଲା । ଏଣୁ ରିକ୍ସାଧରି ସେ ବାହାରି ପଡ଼ିଲା ।

ଲିଲିଅପାଙ୍କୁ ସେ ପଚାରିଲା, ଲିଲିଅପା, ଅଭିଭାବକମାନଙ୍କର ଶେଷ ନିଷ୍ପତ୍ତି କ'ଣ ? କିନ୍ତୁ ଲିଲିଅପା ସେ କଥାର ଜବାବ ଦେଉନଥିଲେ । କଳାମେଘ, ବିଜୁଳି ଧଳାବାଗ ଆଉ ସୁନାରଙ୍ଗର କଦମ୍ବଫୁଲ କଥା କହୁଥିଲେ । ଚେନ୍ନମ ଶୋଷିଲା ଲୋକ । ତାକୁ ମୁନ୍ଦେ ବାସି ତୋରାଣି ଦରକାର । ମିଠା ସରବତ କ'ଣ ହେବ ? ଲିଲିଅପା କେତେ ପାଠ ପଢ଼ିଛନ୍ତି । ହେଲେ ଚେନ୍ନମର କଥା ସେ ବୁଝି ପାରୁନାହାନ୍ତି ।

ସୁ ସୁ କରି ଶୋଷି ଖଣ୍ଡିଆ ପିକାଟାକୁ ଫିଙ୍ଗିଦେଇ ଉଠି ପଡ଼ିଲା ଚେନ୍ନମ । ଫେରିଯିବା ଆଗରୁ ସେ ପଚାରିଦେଲା, କ'ଣ ଲିଲିଅପା, ସେମାନେ ପିଲାଙ୍କୁ ଛାଡ଼ିବେ କି ନାହିଁ ?

ଏଥର କଇଁଫୁଲିଆ ମୁହଁରେ ହସ ଖେଳେଇ ଲିଲିଅପା କହିଲେ, ସେମାନେ ପିଲାଙ୍କୁ ପାଠ ପଢ଼େଇବେ, ଛାଡ଼ିବେ ନାହିଁ କାହିଁକି, ଅଲବତ୍ ଛାଡ଼ିବେ, ହେଲେ ଚେନ୍ନମ୍....

ବ୍ୟଗ୍ର ହୋଇ ଚେନ୍ନମ ଚାହିଁଲା ଲିଲିଅପାଙ୍କ ମୁହଁକୁ ।

.. ହେଲେ ଚେନ୍ନମ, ତୋତେ ଜବାବ ଦେବାକୁ ପଡ଼ିବ । ଅଧା କଥାକୁ ଲିଲିଅପା

ପୂରାକରି ଚାହିଁଲେ ଚେନ୍ନମର ମୁହଁକୁ । ସେ ପଢ଼ିବାକୁ ଚେଷ୍ଟା କଲେ ତା'ର ମନକୁ । - ଜବାବ ? ଜବାବ ଆଉ କ'ଣ ଦେବି ଲିଲିଅପା ? ବ୍ୟାଙ୍କ ଲୋନତକ ନ ଶୁଝେଇଲେ ସେମାନେ ମୋ ରିକ୍ସାକୁ ଜବତ କରିନେବେ । ଏତକ କହି ଚେନ୍ନମ ଦିହକରେ ଯାହା କରିନଥିଲା, ଶେଷକୁ ସେ ସେଇକଥା କଲା । ଲିଲିଅପା ଦେଖିଲେ, ଚେନ୍ନମ ଦୁଇ ହାତରେ ନିଜର ଦୁଇକାନକୁ ମୋଡ଼ି କହିଲା, ଦେଖ ଲିଲିଅପା କାନମୋଡ଼ି ତମ ରାଣ ପକାଉଚି, ମୁଁ ଆଉ ନିଶାପାଣି ଛୁଇଁବି ନାହିଁ ।

ଚେନ୍ନମଠାରୁ ଜବାବ ପାଇ ପୂନେଇଁ ଜହ୍ନ ଭଳି ପୁଣି ଝଟକି ଉଠିଲା ଲିଲିଅପାଙ୍କର ଶାନ୍ତସୁନ୍ଦର ମୁହଁଟି । ସେ କହିଲେ, ତା'ହେଲେ ଚେନ୍ନମ, ଟିକିଏ ରହ । ଏତିକି କହି ସେ ଭିତରକୁ ଚାଲିଗଲେ ।

ଟିକିଏ ପରେ ଦୁଆର ମୁହଁକୁ ଚାହିଁ ଖୁସିରେ ଝଲମଲ କଲା ଚେନ୍ନମର ମୁହଁ । ସ୍କୁଲ ଡ୍ରେସ ପିନ୍ଧି ସବୁଦିନ ପରି ଡେଇଁ ଡେଇଁ ଆସୁଥିଲା ଡଲି, ଏବଂ ଡଲି ପଛକୁ ଆଉଜଣେ ଝିଅ ବି ଆସୁଥିଲା, ସେ ଆଉ କେହି ନୁହେଁ, ତା'ରି ଝିଅ ପାରୁ-ପାର୍ବତୀ । ପାର୍ବତୀ ମଧ ଡଲି ଭଳି ସୁନ୍ଦର ସ୍କୁଲଡ୍ରେସ ପିନ୍ଧିଥିଲା । ପୁଣି ଦୁଆରବନ୍ଧ ପାଖରେ ଚେନ୍ନମର ନଜର ଅଟକିଗଲା । କୋଳରେ ପୁଅ ଚିନାକୁ ଧରି ଓଠ ଚିପି ଚିପି ଲଛମୀ ହସୁଥିଲା ଦୁଷ୍ଟାମୀର ହସ । ତା' ଡେଙ୍ଗା ନାକରେ ନାକଫୁଲ ଝଟକି ଉଠୁଥିଲା ସକାଳର କଅଁଳିଆ ଖରାରେ ।

ଘରୁ ବାହାରି ଆସି ଲିଲିଅପା ସେତିକିବେଳେ କହିଲେ, ଆଜିଠୁ ଡଲି ସଙ୍ଗେ ପାରୁ ମଧ ସ୍କୁଲକୁ ଯିବ । ମୁଁ ତା'ର ନାଁ ଲେଖେଇ ଦେବି । କ'ଣ କହୁଚୁ ଚେନ୍ନମ ?

-ମୁଁ ଆଉ କ'ଣ କହିବି ? ମୋର ମନ ହେଉଚି ଆଜିଠୁ ତୁମକୁ ଲିଲିଅପା ନ ଡାକି ଡାକିବି ଲିଲି ଅମ୍ମା ବୋଲି । କିଏ ଜାଣେ, କଉ ଜନମରେ ତମେ ମୋର ଅମ୍ମା ଥିଲ । ଏତକ କହି ଚେନ୍ନମ ତା'ର ଲମ୍ବା ଲମ୍ବା ଦୁଇହାତକୁ ଯୋଡ଼ି ଜୁହାର ହେବାକୁ ଯାଉଥିଲା ।

ଲିଲିଅପା କିନ୍ତୁ କଇଁଫୁଲିଆ ହସ ବିଞ୍ଚିଦେଇ କହିଲେ, ଦୂର୍ ଚେନ୍ନମ, ମୁଁ କାହିଁକି ତୋର ଅମ୍ମା ହେବି ଯେ ? ମୁଁ ପରା ତୋର ଲିଲିଅପା ?

ଚେନ୍ନମର ଓଠରେ ଚେନାଏ ହସ ଖେଳିଗଲା ।



# ମୁଁ ବରଗଛ କହୁଛି

ମୁଁ ବରଗଛ କହୁଛି :

ଏଇ ନୀଳକଣ୍ଠପୁର ଗାଁ ମୁଣ୍ଡରେ ମୁଁ ଠିଆ ହୋଇଛି, କେଉଁ କାଳରୁ ! ମୋ ଚେର, ମୋ ଓହଳ ମାଡ଼ିଗଲାଣି ଅନେକ ଦୂରକୁ । ମୋ' ଆଗରେ ନିର୍ବିକାର ମନରେ ବହି ଯାଉଛି ମହାନଦୀ । ଦୁଃଖର କଥା, ଏଇ ମହାନଦୀ ଭଳି ମୁଁ ନିର୍ବିକାର ହୋଇ ପାରୁନି । କେଉଁ ଆଦିମ କାଳରୁ ନଇ କୂଳରେ ସୃଷ୍ଟି ହୋଇଚି ନୀଳକଣ୍ଠପୁର ମଉଜା । ସାମନ୍ତବଂଶର ଯେଉଁ ଜମିଦାରଙ୍କ ନାଁରେ ଏ ଗାଁ ନାଁ ନୀଳକଣ୍ଠପୁର ହେଲା, ତାଙ୍କରି ଖୋଦ୍ ଜେଜେ ବାପା ଦିନୁ ସାହୁ ମୁଣ୍ଡରେ ଲୁଣ ବୋଝ ବୋହି ଏଠିକି ବେପାର କରିବାକୁ ଆସିଥିଲେ, ସେକଥା ମୋତେ ଜଣା ଅଛି । ଏଇ ମୋ' ଗଛ ଡାଳରେ, କୋରଡ଼ରେ ଚିଲ-ଶାଗୁଣାମାନଙ୍କ ଭଳି କେତେ ଲୋକ ନୀଳକଣ୍ଠପୁରରେ ବସାବାନ୍ଧି ରହିଛନ୍ତି, କେତେ ଲୋକ ପୁଣି ଏ ଗାଁ ମାଟି ଛାଡ଼ି ଚାଲି ଗଲେଣି । ହେଲେ, ନୀଳକଣ୍ଠପୁରର ସାତ ପୁରୁଷଙ୍କ କଥା ମୋ ନଖ ଦର୍ପଣରେ ଅଛି । ସେଇ ଗୋରା ଇଂରେଜମାନଙ୍କ ଅମଳରେ ଦିନୁ ମହାଜନଙ୍କ ପାରିଲା ନାତିଟାଏ ନୀଳକଣ୍ଠ କଟକ କଚେରୀରେ ଜମିଦାରୀ ଖଣ୍ଡକ ନିଲାମରେ ଧରିଥିଲେ । ପୁଣି ଜମିଦାର ହେଲା ପରେ ନିଜକୁ ସାମନ୍ତରାୟ ବୋଲେଇଲେ ।

ଯା ଭିତରେ, ମହାନଦୀରେ ଅନେକ ପାଣି ବହିଗଲାଣି । ଇଂରେଜ ଶାସନରୁ ଏ ଦେଶ ମୁକୁଳି ଗଲାଣି । ଜମିଦାରୀ ପ୍ରଥା ବି ଲୋପ ପାଇଗଲାଣି । କେତେ ବନ୍ୟା କେତେ ମରୁଡ଼ିର ଇତିହାସ ଏ ନୀଳକଣ୍ଠପୁରର ଛାତିରେ ଲେଖା ହୋଇଛି । ଜୁଆର ଭଟ୍ଟା ଭଳି ଜମିଦାର ସାମନ୍ତରାୟ ବଂଶର ଉତ୍‌ଥାନ-ପତନ କାହାଣୀ ଶୁଣେଇବା ମୋର ଉଦ୍ଦେଶ୍ୟ ନୁହେଁ । ମୁଁ କହୁଥିଲି, ବାସନ୍ତୀ ବୋଲି ସେଇ ଝିଅଟିର କଥା । ବାସନ୍ତୀ ଏ ଗାଁର ଝିଅ ନୁହେଁ । ସେ ଏଇ ସାମନ୍ତବଂଶର ବୋହୂଟିଏ । ନୂଆବୋହୂ ବେଶରେ ବାସନ୍ତୀ ଏଇ ଘାଟରେ ପ୍ରଥମ ଯେଉଁଦିନ ଡ଼ଙ୍ଗାରୁ ଓହ୍ଲେଇଲା, ସେଇଦିନୁ ମୋ ସଙ୍ଗେ ତାର ପରିଚୟ । ଡଙ୍ଗାରୁ ଓହ୍ଲେଇ ସେ ଚଉଡୋଲରେ ବସିବାକୁ ଯାଉଥିଲା । ମୋରି ଆଡ଼କୁ ହାତ ବଢ଼େଇ ଜେଜେ ଶଶୁର ଧୀର ସାମନ୍ତ ବାସନ୍ତୀକୁ କହିଥିଲେ, 'ମା, ଉଆସକୁ ବିଜେ କରିବା ଆଗରୁ ଏଇ ବଟ ମହାପ୍ରଭୁଙ୍କୁ ମୁଣ୍ଡିଆଟିଏ ମାରିବାକୁ ହୁଏ । ଏଇଟା ଆମ ସାମନ୍ତ କୁଳର ପ୍ରଥା । ଆମ ସାତ ପୁରୁଷ ଖାନ୍‌ଦାନୀର କେବଳ ଜିଅନ୍ତା ସାକ୍ଷୀ ନୁହେଁ, ଧନ-ଜନ-ଗୋପ-ଲକ୍ଷ୍ମୀ ସବୁ କିଛି ଦିନେ ସଫଳ ହୋଇଥିଲା ଏଇ ବଟ ମହାପ୍ରଭୁଙ୍କ ଦୟାରୁ । ଜମିଦାର ନୀଳକଣ୍ଠ ସାମନ୍ତଙ୍କ ଜେଜେବାପା ଦିନୁ ସାହୁ ଦିନେ ଖରା ଦି' ପହରରେ ଝାଳ

ସରସର ହେଇ ଆଶ୍ରା ନେଇଥିଲେ ଏଇ ବରଗଛ ମୂଳରେ । ତାଙ୍କୁ ସପନରେ ଦେଖାଦେଇ ଅଜାଡ଼ି ଦେ଼ଲେ ଶୁଭ ଆଶୀର୍ବାଦ । ଏ କୁଳର ବୋହୂ ହେଲୁ । ବଳେ ତୁ ଜାଣିଯିବୁ ଏ ବଟ ମହାପ୍ରଭୁଙ୍କ ମହତ୍ୱ । ଏବେ ଆ, ପଞ୍ଚାନନ ଆଉ ତୁ ଦିହେଁ ସାମନ୍ତ ପରିବାରର ମଙ୍ଗଳ ମନାସି, ତାରି ମୂଳରେ ଜୁହାର ହୁଅ । ବଟମହାପ୍ରଭୁ ନିଶ୍ଚୟ ଆଶୀର୍ବାଦ କରିବେ ।'

ସେଇ ବାସନ୍ତୀ କଥା ମୁଁ କହୁଥିଲି ।

ଏଇ ଦେଖୁନ, ସାରା ଆକାଶଟା ଛାଇ ଗଲାଣି କଳା ବାଦଲରେ । ଗଲା ସାତଦିନ ହେବ ବର୍ଷା ଲାଗି ରହିଥିଲା । ଏବେ ବର୍ଷା ଟିକିଏ ଛାଡ଼ି ଯାଇଛି । ଦୁଇ କୂଳ ଖାଇ ମହାନଦୀର ଗୋଳିଆପାଣି ଭଉଁରୀ ଖେଳି ଧାଇଁଛି, ବାୟାଣୀ ଭଳି ।

ରାତି ପାହିଲାଣି । ପୂର୍ବ ଆକାଶରେ ସିନ୍ଦୂରା ଫିଟି ଆସୁଛି । ଏ ଯାଏ ମୋ ଡ଼ାଳରେ, କୋରଡ଼ ଭିତରେ ଯେଉଁ ଚିଲ ଶାଗୁଣାମାନେ ନିଶ୍ଚୁପ ହୋଇ ବସିଥିଲେ କାହାରି ପାଦ ଶବ୍ଦ ଶୁଣି ସେମାନେ କେଁ କଟର ଶବ୍ଦ କଲେଣି । ବିରାଟ ଡ଼େଣା ସବୁକୁ ଝାଡ଼ିଲେଣି । ବୋଧହୁଏ ଆହାରର ସଂଧାନ ପାଇଲେଣି ।

କିନ୍ତୁ ମୁଁ ଏଇ ପାଦର ଶବ୍ଦକୁ ଭଲ କରି ଚିହ୍ନିଛି । କାହିଁକି ନା ଛ' ବର୍ଷ ହେଲା ତା' ସଙ୍ଗେ ମୋର ପରିଚୟ । ବାସନ୍ତୀ ସାମନ୍ତ ଉଆସର ବୋହୂ । କାଳି ଅନ୍ଧାରରୁ ନଈ ତୁଠକୁ ଆସିବାର ତା'ର ଅଭ୍ୟାସ ନଥିଲା । କିନ୍ତୁ ସେଦିନ ରାତିରେ ସେଇ ଭୟଙ୍କର ଦୁର୍ଘଟଣାଟି ତା' ଜୀବନରେ ଘଟିଗଲା ପରେ ସେ କୂର୍ମଭଳି ନିଜକୁ ଗୋଟେଇ ନେବାକୁ ଚେଷ୍ଟା କରୁଛି । ଉଆସର ସେଇ ମାଇକିନିଆଙ୍କୁ ତା'ର ହାଡ଼େ ହାଡ଼େ ଡର । ପୁତୁରାନେଖା ହେବ, ନବଘନ । ସେ ପଞ୍ଚମଶ୍ରେଣୀରେ ପଢୁଛି । ସେଇ ନବଘନକୁ ସାଙ୍ଗରେ ଧରି ବଡ଼ି ସକାଳୁ କାମ ସାରିବାକୁ ବାସନ୍ତୀ ଆସୁଥିଲା ଏଇ ନଈ ତୁଠକୁ । ଉଆସର ମାଇକିନିଆଙ୍କୁ ବିଶ୍ୱାସ ନାହିଁ । ଝଡ଼-ପବନରୁ ସଂଜଦୀପକୁ ଆଡୁଆଳ କଲାଭଳି ସାଇ ମାଇପଙ୍କଠୁ ନିରାପଦ ଦୂରରେ ନିଜକୁ ରଖିବାକୁ ଚେଷ୍ଟା କରୁଛି ବାସନ୍ତୀ ।

ଅବଶ୍ୟ ଆଜି ବାସନ୍ତୀର ଏ କରୁଣ ରୂପକୁ ଦେଖି ମହାନଦୀ ଭଳି ମୁଁ ନିର୍ବିକାର ରହିପାରୁନି । ତା' ପାଦରେ ଅଳତା ନାହିଁ କି ମଥାରେ ସିନ୍ଦୁର ନାହିଁ । ରୂପା ପାଇଜମର ମଧୁର ରଣୁ ରଣୁ ଶବ୍ଦ ଶୁଭୁ ନାହିଁ । ଦେହରେ ଧଳା ଥାନ । ବିଧବାର ରକ୍ଷବେଶ ଦେଖି ମୋ ଭିତରୁ ଦୀର୍ଘଶ୍ୱାସ ବହି ମିଶିଯାଉଛି ଏହି ମହାନଦୀର ଆକାଶରେ । କାହିଁକିନା ବାସନ୍ତୀର ନୂଆବୋହୂର ସେ ରୂପ ମୋ ମନରୁ ଏବେ ବି ଲିଭିଯାଇନାହିଁ । ସେଦିନ ନୂଆବୋହୂ ବେଶରେ ସେ ଡ଼ଙ୍ଗାରୁ ଓହ୍ଲେଇଥିଲା । ରୋଶଣୀ ଆଉ ବାଜା ଶବ୍ଦରେ ନଈକୂଳ କମ୍ପି ଉଠୁଥିଲା । ସୁନା-ରୁପାର ଅଳଙ୍କାରରେ ଛାଇ ହୋଇଯାଇଥିଲା ତାର କନକଚମ୍ପା ଦେହ । ଦାଉଦାଉ ହେଇ ଜଳୁଥିଲା ସିନ୍ଥିର ଲାଲ ସିନ୍ଦୂର । ମଥାରେ ସୁନାର ସିନ୍ଥି ନାକରେ ସୁନାର ନଥ । ବରହମପୁରୀ ପାଟ ପିନ୍ଧି ବାସନ୍ତୀ ଦିଶୁଥିଲା ଅପୂର୍ବ । ଏକଦା ଜମିଦାର

ସାମନ୍ତ ପରିବାରର ନୂଆବୋହୂକୁ ସେଦିନ ଏଇ ବରଗଛ ତଳ ଡଙ୍ଗାଘାଟରେ ଦେଖି ସମସ୍ତଙ୍କ ଆଖି ଖୋସି ହେଇଯାଇଥିଲା, କାହାର ପ୍ରଶଂସାରେ କାହାର ପୁଣି ଈର୍ଷାର ନିଆଁରେ ।

ଢେଙ୍କେ ଶ୍ୱଶୁର ଧୀର ସାମନ୍ତଙ୍କ କଥା ରଖି ନାତୁଣୀବୋହୂ ବାସନ୍ତୀ ସ୍ୱାମୀ ପଞ୍ଚାନନ ସଙ୍ଗରେ ସେଦିନ ମୁଣ୍ଡିଆ ମାରିଥିଲା ମୋରି ଉଦ୍ଦେଶ୍ୟରେ । ଠୋ ଠୋ ଫୁଟୁଥିଲା କଦମ ଫୁଲର ବାଣ । ରାତିର ଆକାଶ ଦିନ ପାଲଟି ଯାଇଥିଲା ଆତସବାଜି ରୋଶଣିରେ । ହେଲେ ନବବଧୂ ବାସନ୍ତୀର କୁଆଁରୀ ଛାତିଟା ଥରି ଉଠିଥିଲା ଏକ ଭୟଙ୍କର ଆଶଙ୍କାରେ । ସେଇ ମୁହୂର୍ତ୍ତରେ ବାସନ୍ତୀ ମୋ ପାଖରେ ଯେଉଁ ଆକୁଳ ପ୍ରାର୍ଥନା କରିଥିଲା, ସେକଥା ମୁଁ ଭୁଲିବି କେମିତି ? ତା'ର ନିଷ୍ପାପ ମନର ସଞ୍ଚିତ ବ୍ୟଥାତକ ଅଜାଡ଼ି ଦେଇଥିଲା ମୋରି ପାଦତଳେ । ସେ ମୁହାମୁହିଁ ହେବାକୁ ଯାଉଥିଲା ତା' ଜୀବନର ଏକ ଚରମ ପରୀକ୍ଷାର ମୁହୂର୍ତ୍ତ ପାଇଁ । କହିଥିଲା, 'ହେ ବଟମହାପ୍ରଭୁ, ସାମନ୍ତକୁଳର ଦେବତା, ତୁମେ ମୋର ପବିତ୍ର କୁମାରୀ ଜୀବନର ସାକ୍ଷୀ । ତୁମେଇ ମୋର ସହାୟ, ମୁଁ ଯେମିତି ଏ କୁଳର ମହତକୁ ଅତୁଟ ରଖିପାରିବି ସେଇ ଆଶିଷ ଦିଅ ।'

କେତେ ଝିଅ ଏଇ ସାମନ୍ତ ପରିବାରର ବୋହୂ ହେଇ ଆସିଥିଲେ, କେତେ ପୁଣି ଏଇ ମଶାଣିର ଜୁଇରେ ଜଳି ପାଉଁଶ ହୋଇ ଗଲେଣି କିନ୍ତୁ କେହି ଏମିତି ସ୍ୱଚ୍ଛ ପ୍ରାଣରେ ନିଜକୁ ମୋଠି ସମର୍ପି ଦେଇ ନଥିଲେ । ତେଣୁ ସେଦିନ ମୁଁ, ଏଇ ବରଗଛ, ମୋର ମନ ଖୋଲି ଶୁଭାଶିଷ ଅଜାଡ଼ି ଦେବାକୁ କୁଣ୍ଠା କରିନଥିଲି । କାରଣ, ସେଦିନ ମୁଁ ବେଶ ଅନୁଭବ କରିଥିଲି ଯେ ଏଇ ବାସନ୍ତୀ ବୋଲି ଝିଅଟି ଫୁଟି ଉଠିଥିଲା ପଙ୍କ ଭିତରେ ଗୋଟିଏ ପଦ୍ମଫୁଲ ପରି । ବାସନ୍ତୀ ଭିତରେ ଏକ ଶୁଦ୍ଧ ଚେତନାର ଉନ୍ମେଷ ଦେଖି ମୁଁ ଆନନ୍ଦରେ ଶିହରି ଉଠିଥିଲି । ତା' ମନରେ ଜଳୁଥିଲା ନିର୍ବାଣଦୀପ ଭଳି ଏକ ସଂକଳ୍ପ ।

ଏଇ ଘାଟରୁ ଯାଇ ସେଦିନ ଚୌଡ଼ୋଲ ରହିଥିଲା ଉଆସର ସିଂହଦୁଆର ଆଗରେ । ବରବୋହୂଙ୍କୁ ବରଣ କରି ନେବାକୁ ଆସିଥିଲେ ଜେଜେ ଶାଶୁ ଧୀର ସାମନ୍ତଙ୍କ ଧର୍ମପତ୍ନୀ । ସେ ଭିଡ଼ ଠେଲି କହିଥିଲେ, 'ଆରେ ଟୋକାଏ, ଏତେ ଗହଳି କରୁଛ କାହିଁକି ? ମୋ ନାତିର ବୋହୂର ମୁହଁଟିକୁ ମୋତେ ଟିକିଏ ଦେଖିବାକୁ ଦିଅ ।' ସେଇ ଗହଳି ଭିତରେ ବିଦ୍ରୂପ କରି ଜଣେ କହିଥିଲା, 'ବରହମପୁର ନର୍ସ ହଷ୍ଟେଲରୁ ବଢ଼ିଆ ଟୋକୀଟିଏ ତୋ' ନାତିର ବୋହୂ ହୋଇ ଆସିଛିଲୋ ଜେଜେ ମା ।' ନଟସାମନ୍ତ ମୁହଁରୁ ବେହିଆ କଥାଶୁଣି ଚିଡ଼ି ଉଠି ଜେଜେମା କହିଥିଲେ, 'ଆରେ ହେ କଣା ନଟିଆ, ଭଗବାନ ଜନ୍ମରୁ ତୋର ଗୋଟିଏ ଆଖି ନଷ୍ଟ କରି ଦେଇଛନ୍ତି, ଆଉ ଗୋଟିଏ ଆଖି ଅଛି, ସେଥିରେ କି ବିଷ ରହିଛି କିଜାଣି ? ନୂଆବୋହୂକୁ ଖୁଣିଦେଲୁ ? ତୋର ସେଇ ଆଖିଟାକୁ ଚିଲ-ଶାଗୁଣା ଝାମ୍ପମାରି ନେଇ ନ ଯାଉରେ ନଟିଆ ।'

ଶାଶୁ-ଶ୍ୱଶୁର ନଥିଲେ । ଅଣ୍ଟା ସଳଖେଇ ବରଣଡ଼ାଲା ଧରି ଆଗେଇ ଆସିଥିଲେ ଜେଜେଶାଶୁ । କନକ ପିତୁଳା ଭଳି ବାସନ୍ତୀର ମୁହଁକୁ ଦେଖି ତାଙ୍କର ପାକୁଆ ପାଟିରେ ଖେଳିଯାଇଥିଲା ଏକ ମଧୁର ହସର ଜେଉ ।

କଣା ନଟ ସାମନ୍ତ, ସମ୍ପର୍କରେ ବାସନ୍ତୀର ଦିଅର ହେବ । ସହରରେ ଓକିଲାତିରେ ନାଁ ଅଛି । ଘରେ ନ ପଶୁଣୁ ତା ମୁହଁରୁ କଣ୍ଟାଭଳି ଅଶ୍ଳୀଳ ମନ୍ତବ୍ୟ ଶୁଣି ଥରି ଉଠିଥିଲା ବାସନ୍ତୀର ଛାତିଟା । ହେଲେ ଚଉଠି ରାତିରେ ସ୍ୱାମୀ ଡାକ୍ତର ପଞ୍ଚାନନ ବାସନ୍ତୀକୁ ନିଜ ଛାତି ଉପରକୁ ଆଉଜାଇ କହିଥିଲେ, 'ଏ ବଂଶରେ ଦଳେ କୁଳାଙ୍ଗାର ଅଛନ୍ତି । ସେମାନେ ସଜ ଗୋବରରେ ଅଂଶେଇ ପକେଇବେ; ତାଙ୍କ ଅଲଣା କଥାକୁ କାନ ଦେବନି ବାସ ।' ବାସନ୍ତୀର ମନ ଆକାଶରେ ଜମିଉଠିଥିବା ଆଶଂକାର ମେଘଟା ଉଭେଇ ଯାଇଥିଲା ପଲକରେ । ପଞ୍ଚାନନ ତା' ସ୍ୱାମୀ । ତାଙ୍କ ମନରେ ଆବିଳତାର ସ୍ପର୍ଶ ନାହିଁ । ଚଉଠି ପରେ, ନଈତୁଠକୁ ଆସି ମୋତେ ସେଇ କଥା ହିଁ କହିଥିଲା ବାସନ୍ତୀ ।

ହେଲେ, ଭଙ୍ଗା ଉଆସରେ ସେମାନେ ଯେଉଁଠି ବସା ବାନ୍ଧିଲେ ସେଇଟା ଥିଲା ସାମନ୍ତ ପରିବାରର ଏକଦା ଜମିଦାରୀର ଅଣାଏ ଅଂଶର ଅଂଶୀଦାର ଡ଼ାକ୍ତର ପଞ୍ଚାନନ ସାମନ୍ତର ଇଲାକା । ନୀଳକଣ୍ଠପୁର ବାଇଶିଘର ସାମନ୍ତ ପରିବାରର ସେମାନେ ଗୋଟିଏ । ବାସନ୍ତୀ ଆତଙ୍କରେ ଦେଖିଲା ଚାରିଆଡ଼େ ଭାଇ-ଭାଯାଡ଼ା । ସମ୍ପର୍କରେ ଶାଶୁ ଶ୍ୱଶୁର, ଯା, ଦିଅର ନଣନ୍ଦଙ୍କ ଗହଳି । ଏ ଘରେ ସୋରିଷ ଫୁଟିଲେ ସେ ଘରେ ମହକ ଉଠୁଛି । ଗୋପନ ବୋଲି କିଛି ନାହିଁ, ଆଡୁଆଳ ନାହିଁ । ମହାରାଣୀ ଭିକ୍ଟୋରିଆ ଅମଳର ନୀଳକଣ୍ଠ ସାମନ୍ତରାୟଙ୍କ ପରିବାରର ପାଞ୍ଚପ୍ରାଣୀ ଆଜି ଜନସୁମାରିରେ ତିନିହଜାରକୁ ବଢ଼ିଗଲେଣି । ବାସନ୍ତୀ ଆଶ୍ଚର୍ଯ୍ୟ ହୋଇ ଦେଖିଲା, ସାମନ୍ତ ପରିବାରର ଝିଅଟିଏ ପାଠ ପଢ଼ିଲେ କୁଆଡ଼େ ସେମାନଙ୍କ ଚରିତ୍ର ନଷ୍ଟ ହୋଇଯାଏ । ଗାଁ ସହରର ଅନ୍ୟ ବୋହୂଝିଅଙ୍କ ସଙ୍ଗେ ମିଶିଲେ ସାମନ୍ତ ବୁନିଆଦିରେ ଆଞ୍ଚ ଲାଗିବ, ଆଭିଜାତ୍ୟ ନଷ୍ଟ ହୋଇଯିବ । କିନ୍ତୁ ପର ବୋହୂଝିଅଙ୍କ ଛିଦ୍ର ଖୋଜିବା ସେମାନଙ୍କର ବେଉସା । ନଣନ୍ଦ, ଝିଆରୀ, ଦିଅର, ପୁତୁରା ବୋଲି ଯେଉଁମାନଙ୍କୁ ସେ ଭାବୁଛି ସେମାନଙ୍କ ଢଙ୍ଗଢାଙ୍ଗ ଚାଲିଚଳନ ଯେମିତି ଅଶ୍ଳୀଳ ମୁହଁର ଭାଷା ତାଠୁଁ ବଳି କୁତ୍ସିତ । ଝିଅମାନେ ପଚିଶି ତିରିଶି ବର୍ଷଯାଏ ଅଭିଆଡ଼ି ହୋଇ ଘର କୋଣରେ ବସିଛନ୍ତି ପୁଣି ସୁଯୋଗ ପାଇଲେ ରାତିଅଧରେ କିଏ କାହାସଙ୍ଗେ ଉଡ଼ି ଯାଉଛନ୍ତି । ପୁଣି ଏଠି ମାଇକିନିଆ ଅଛନ୍ତି, ଯେଉଁମାନଙ୍କ ଆଙ୍ଗୁଳି ଅଗରେ ହିସାବ ଥିଆ, କାହାର କେତୋଟି ଅବୈଧ ଶିଶୁକୁ ମହାନଦୀ ଜଳରେ ଭସେଇ ଦିଆଯାଇଛି । ନିଶାରେ ମାତାଲ ହୋଇ ସ୍ତ୍ରୀ ଉପରେ ଅତ୍ୟାଚାର କରିବା ଏକ ମାମୁଲି ଘଟଣା । କୁମାରୀ ଧର୍ଷଣ କଥା କିଏ ପଚାରେ ? ଅଥଚ ଭଙ୍ଗା କୋଠାରୁ ଓହଳୁ ଥିବା ଝାଡବତି ଆଉ ଉଇ ଖାଉଥିବା ଶାଗୁଆନ କାଠର ଚୌକି ଭଳି ସେମାନଙ୍କ ଆଭିଜାତ୍ୟ କହିଲେ ନସରେ । ସାମନ୍ତ

ବଂଶଧର ବୋଲି ଆକାଶଛୁଆଁ ଅହଂକାର ଅଥଚ ଉଆସ ପାଚେରି ଭାଙ୍ଗି ବରଓସ୍ତର ଚେର ମାଡ଼ିଗଲାଣି । ଘରକାନ୍ଥରେ ଚୂନ ଦେବାର କ୍ଷମତା ନାହିଁ । ତେଣୁ ବାସନ୍ତୀ ମୋତେ ବାରମ୍ବାର ପଚାରିଥିଲା, 'ହେ ବଟ ମହାପ୍ରଭୁ, ତୁମେତ ଜାଣିଛ, ସେଇ ନରକ ଯନ୍ତ୍ରଣାରୁ ନିଜକୁ ବଞ୍ଚାଇବା ପାଇଁ ମୋର ଏ ଜୀବନ ସଂଗ୍ରାମ । ଏମାନେ କୁସଂସ୍କାରର ଅନ୍ଧାରରେ କେବଳ ମୁଣ୍ଡ ପିଟୁ ନାହାନ୍ତି । ବିକୃତ ଯୌନଲାଳସାରେ ଜୀବନକୁ ଆପଣାର କରି ନେଇଛନ୍ତି । ଏମାନଙ୍କ ମଝିରେ ମୁଁ ଚଳିବି କିପରି ? ତେବେ ମୋ ଆଶ୍ୱାସନା ଏତିକି, ପଞ୍ଚାନନର ମନ ସଂସ୍କାରମୁକ୍ତ; ସେ ସଂପୂର୍ଣ୍ଣ ଭିନ୍ନ ଉପାଦାନରେ ଗଢ଼ା । ତା' ହୋଇନଥିଲେ, ଆସର ପାଚେରି ଡେ଼ଇଁ ସହରରେ ନର୍ସ ଚାକିରି କରିବା ମୋ' ପକ୍ଷରେ ସମ୍ଭବ ହୋଇ ନଥାନ୍ତା ।'

ହଁ, ବାସନ୍ତୀର ବେଳେବେଳେ ମନେ ପଡ଼ିଯାଏ ଜେଜେ ଶାଶୁଙ୍କ କଥା, ଯେ ବରଣ କରି ତାକୁ ପ୍ରଥମେ ଉଆସକୁ ଘେନି ଆସିଥିଲେ । ସେ ହିଁ ସତର୍କ କରି ଦେଲେ ବାସନ୍ତୀକୁ । କହିଥିଲେ 'ନୂଆବୋହୂ, ଏମାନଙ୍କଠୁ ତୁ ଯେତିକି ଦୂରେଇ ରହିବୁ ତୋର ସେତିକି ମଙ୍ଗଳ ହେବ । ସତ କହିଲେ, ଏମାନଙ୍କ ଜ୍ୱାଳାରେ ଏଠି ରହିବା ଆମ ପକ୍ଷରେ ସମ୍ଭବ ହେଲାନାହିଁ । ଏଣୁ ପୁଅ-ବୋହୂ ଧରି ଆମେ କଟକରେ ରହିବୁ ।' ଚଉଠି ପରେ ସେମାନେ ଚାଲିଯାଇଥିଲେ । ଘରେ ଏକମାତ୍ର ଆତ୍ମୀୟ ବୋଲି ଯିଏ ଥିଲେ, ସେ ହେଲେ ପିଉସୀଶାଶୁ, କେତକୀ ଦେବୀ । ବାଳବିଧବା ପୁଣି ପକ୍ଷାଘାତ ଯୋଗୁଁ ଡାହାଣ ହାତଟି ପଙ୍ଗୁ । ଡାକ୍ତର ପୁତୁରାକୁ ସେ ଭଲ ପାଆନ୍ତି, ଏ ସତ । କିନ୍ତୁ ପୁତୁରାବୋହୂକୁ ସେ ପସନ୍ଦ କରି ପାରନ୍ତି ନାହିଁ । ସେ ପାଠ ପଢ଼ିଛି, ପୁଣି ଉଆସ ବାହାରେ ପାଞ୍ଚଲୋକ ସଙ୍ଗରେ ନର୍ସ ଚାକିରି କରୁଚି । ସାମନ୍ତ ଘରର ବୋହୂଟିଏ ଏମିତି ହେବ ଭାବିଲେ ତାଙ୍କ ଆଭିଜାତ୍ୟ କ୍ଷୁଣ୍ଣ ହୁଏ । ହେଲେ, ସେମାନଙ୍କ ଚିକିତ୍ସା ଆଉ ସେବାରେ କେତକୀ ଦେବୀଙ୍କୁ ବଞ୍ଚିବାକୁ ପଡୁଛି !

ନୀଳକଣ୍ଠପୁର ଉଆସର ପରିବେଶ ବାସନ୍ତୀ ପାଇଁ ଅନୁକୂଳ ନୁହେଁ । ଏକଥା ପଞ୍ଚାନନ ଭଲ ଭାବରେ ବୁଝିଥିଲେ । ସେକଥା ସେ ବାସନ୍ତୀକୁ ଖୋଲି କହିଥିଲେ, 'ବାସ ତୁମେ ଚିନ୍ତାକର ନାହିଁ । ଖୁବ୍ ଶୀଘ୍ର ମୁଁ ଚାକିରି ଛାଡ଼ିଦେବି । ଏଠାକାର ସମ୍ପତ୍ତି ବିକିଦେଇ ସହରରେ ନର୍ସିଂ ହୋମ୍‌ଟିଏ ଖୋଲିବି ।' ଏ କଳୁଷିତ ପରିବେଶରୁ ମୁକ୍ତି ମିଳିବ ଏବଂ ସେଇ ଆଶାରେ ବାସନ୍ତୀ ଦିନ ଗଣୁଥିଲା । ଯା ଭିତରେ ପୁଣି ସୁନ୍ଦର ପୁଅଟିଏ ଉପହାର ଦେଇ ସ୍ୱାମୀଙ୍କ ମନକୁ ସେ କିଣିପାରିଥିଲା ।

ହଁ, ଏକ ନୂଆ ସ୍ୱପ୍ନର କଳ୍ପନା ଜଗତରେ ବିଭୋର ହୋଇଥିଲା ବାସନ୍ତୀ । କଟକରେ ଗଢ଼ା ହେବ ନୂଆ କ୍ଲିନିକ୍ । ନାଁ ହେବ 'ବାସନ୍ତୀ ନର୍ସିଂ ହୋମ୍' । କିନ୍ତୁ କିଏ ଜାଣିଥିଲା, ଡାକ୍ତର ପଞ୍ଚାନନ ସାମନ୍ତର ଜୀବନସୀମା ଏତେ ସୀମିତ ବୋଲି ? ସ୍କୁଟର

ଏକ୍ସିଡ଼େଣ୍ଟର ଖବର ପାଇ ବାସନ୍ତୀ ଧାଇଁଯାଇଥିଲା ଏମର୍ଜେନ୍ସୀ ୱାର୍ଡକୁ । ସେଇଠି ବାସନ୍ତୀ ପାଇଥିଲା ପଞ୍ଚାନନର ଶେଷ ଦେଖା । ହେଲେ ଦୀପ ଲିଭିଯାଇଥିଲା । ତେଣୁ କୋଳରେ ଦୁଇ ବର୍ଷର ଶିଶୁ ବାବୁଲିକୁ ଧରି ବାସନ୍ତୀ ମୋତେ ପଚାରିଥିଲା, 'ଏ କ'ଣ କଲ ବଟ ମହାପ୍ରଭୁ ? ମୋ ଜୀବନରେ ଏକ ଝଡ଼ ଭଳି ଆସିଥିଲା ପଞ୍ଚାନନ । ତା'ର ପ୍ରେମର ଚିହ୍ନ ରୂପେ ବାବୁଲିକି ମୋତେ ଦେଇ ପୁଣି ଏକ ଝଡ଼ ଭଳି ଆକାଶରେ ସେ ଲୀନ ହୋଇଗଲା । ମୋର ଯେ ସବୁ ସ୍ୱପ୍ନ ସ୍ୱପ୍ନରେ ହିଁ ରହିଗଲା । ତୁମେଇ ମୋର ସାହାଭରସା ।'

ପଞ୍ଚାନନକୁ ହରେଇ ନିଜକୁ ଭାରି ଅସହାୟା ବିଚାରି ଥିଲା ବାସନ୍ତୀ । ମନେହେଲା ତା' ଜୀବନ ଆକାଶରେ ପୁଣି ଘୋଟିଆସିଲା ଦୁର୍ଦ୍ଦିନର କଳାମେଘ । କିନ୍ତୁ ସେଇ ଦୁର୍ଦ୍ଦିନରେ ଜଣେ ଆଗେଇ ଆସିଥିଲା ସାହାଯ୍ୟର ହାତକୁ ବଢ଼େଇ ଦେଇ, ସେଇ କଣା ଓକିଲ ନଟ ସାମନ୍ତ । ସେ କହିଥିଲା, 'ଭାଉଜ, ତୁମେ କିଛି ଚିନ୍ତା କରନାହିଁ । ପଞ୍ଚାନନ ସିନା ଅବେଳରେ ଚାଲିଗଲା, ହେଲେ ନଟ ସାମନ୍ତ ଜିଇଁ ରହିଛି । ତୁମେ ନିଶ୍ଚିନ୍ତ ରୁହ, ସରକାରଙ୍କଠାରୁ ଆରମ୍ଭ କରି ଇନ୍ସୁରେନ୍ସ କମ୍ପାନୀ ଯାଏ ସବୁ ପାଉଣା ମୁଁ ଆଦାୟ କରିଦେବି ।' ବାସନ୍ତୀ ମନରେ କୁଣ୍ଠା ଥିଲା । ମାତ୍ର ସେକଥା କେତୁ ଦେଈ ବୁଝି କହିଥିଲେ, 'ବୋହୂ, ନଟିଆ ଯେତେବେଳେ କହୁଚି, ତା'ର ସାହାଯ୍ୟ ନେଲେ କ୍ଷତି କ'ଣ ? ଏ ଦୁଃସମୟରେ କୁଟାଖିଅକୁ ଭରସା । ଯାଚିଲା ଲକ୍ଷ୍ମୀକୁ ପାଦରେ ଠେଲି ଦେଲେ ପସ୍ତେଇବୁ ଲୋ ବୋହୂ ।' ହଁ, ନଟ ସାମନ୍ତ ପାରିବା ଲୋକ । ତା'ର ଦୁର୍ନାମ ଥିବା ସତ୍ତ୍ୱେ ବର୍ଷ ଦିଟା ଭିତରେ ସେ ସବୁ ପାଉଣା ଅସୁଲ କରିଦେଇଥିଲା । କିନ୍ତୁ ଦିନେ ବାସନ୍ତୀକୁ ପସ୍ତେଇବାକୁ ପଡ଼ିଥିଲା । ନଟ ସାମନ୍ତର ଅସଲ ସ୍ୱରୂପ ଜଣା ପଡ଼ିଲା ବେଳକୁ ଲେଡ଼ିଗୁଡ଼ କହୁଣିକୁ ବହି ଯାଇଥିଲା ।

ସେଦିନ ରାତିରେ ମହାନଦୀର ଆକାଶରେ ଉଠିଥିଲା ଏକ ଭୟଙ୍କର ଝଡ଼ । ସେଇ ଝଡ଼ ପବନକୁ ବେଖାତିର କରି ପାହାନ୍ତା ରାତିରେ ବାସନ୍ତୀ ଧାଇଁଆସିଥିଲା ମୋରି ପାଖକୁ । ସାମନ୍ତ ପରିବାରର କୁଳବଧୂ । ରାତି ଅନ୍ଧାରରେ ପାଗଳୀ ଭଳି ଧାଇଁ ଆସିବ ନଈତୁଠକୁ, ଏକଥା ମୁଁ ଆଶା କରିନଥିଲି । କିନ୍ତୁ ତା' ଜୀବନର କରୁଣ କାହାଣୀ ଶୁଣି ମୋଭଳି ସ୍ଥବିର ବୃକ୍ଷର ମୂଳ ଦୋହଲି ଉଠିଥିଲା ।

ବାସନ୍ତୀ ପାଗଳିନୀ ଭଳି ଧାଇଁ ଆସି କଚାଡ଼ି ପଡ଼ିଥିଲା ମୋରି ମୂଳରେ । ମୋ ଦେହରେ ବସିଥିବା ଚିଲ ଶାଗୁଣାମାନେ ଅସ୍ଥିର ହୋଇ ଡ଼େଣା ଝାଡ଼ିବାକୁ ଲାଗିଲେ । ଆକୁଳ ସ୍ୱରରେ ବାସନ୍ତୀ କହିଥିଲା, 'ମୋର ଅପରାଧ ମାର୍ଜନା କର । ମୁଁ ତୁମରି ପବିତ୍ର ଦେହକୁ ଛୁଇଁଦେଲି । ଜୀବନ ବିକଳରେ ମୁଁ ପାସୋରି ଦେଇଛି, ମୁଁ ଅପବିତ୍ର । ହେ ବଟ ମହାପ୍ରଭୁ, ତୁମେଇ ବିଚାର କର ।'

ହଁ, ସେଇ ଉଆଁସ ଅନ୍ଧାର ରାତିରେ ବାସନ୍ତୀ କହିଥିଲା ତା ନାରୀ ଜୀବନର ଦୁର୍ଘଟଣାର କରୁଣ କାହାଣୀ : 'ସେଦିନ ରାତିରେ ମୋ ଶୋଇଲା ଘରେ ମାତାଲ ନଟ ସାମନ୍ତର ଭୟଙ୍କର ଚେହେରା ଦେଖି ମୁଁ ଆତଙ୍କରେ ଶିହରି ଉଠିଥିଲି । ବିଜୁଳିବତି ଜାଳି ପଚାରିଥିଲି, ଏତେ ରାତିରେ ମୋ ଶୋଇବା ଘରକୁ ପଶି ଆସିଲ, କେଉଁ ସାହସରେ ?'

'ସମଝଦାର୍ ମାଇକିନିଆକୁ ଇସାରା କାଫି । ମୁଁ ଜାଣେ ବାସ, ତୁ ସବୁ କଥା ବୁଝି ପାରୁଛୁ । ମୋର ମୁସ୍କିଲ ଆସାନ୍ କରି ଦେଇଛୁ ।' ମୋ ନାଁ ଧରିବ ନଟ ସାମନ୍ତ, ଏକଥା ମୁଁ କଳ୍ପନା କରି ନଥିଲି । ନିଶାରେ ପାଦ ଟଳୁଥାଏ । କିନ୍ତୁ ସାପର ଆଖି ଭଳି ତା' ଆଖିଟା ଜଳୁଥାଏ । ମୁହଁରେ ବୀଭତ୍ସ ହସ । ଘୃଣାରେ ମୋ ଦେହ ଜଳିଗଲା । ଧମକ ଦେଇ ମୁଁ କହିଥିଲି, 'ଆରଘରେ ପିଉସୀ ଶାଶୁ ଶୋଇଛନ୍ତି । ତୁମକୁ କ'ଣ ଡରଭୟ ନାହିଁ ?' କିନ୍ତୁ ନଟ ସାମନ୍ତ ମୁହଁର ଉତ୍ତର ଶୁଣି ମୋ ରକ୍ତ ପାଣି ହୋଇଗଲା । ସେ କହିଥିଲା, 'କିଏ କେତ ଅପା ?' ହସିଥିଲା ନଟ ସାମନ୍ତ । କହିଥିଲା ମୋତେ ଆଉ ଦୁଆର ଫିଟେଇ ଦେଲା କିଏ ? କେତ ଅପାକୁ କିଛି ଅଛପା ନାହିଁ ।'

ସ୍ୱାମୀସୁଖ ବଞ୍ଚିତା ଜଣେ ବାଳବିଧବାର ଚରିତ୍ରର ଏ ଜଘନ୍ୟ ରୂପ ଦେଖି ମୁଁ ଶିହରି ଉଠିଥିଲି । ରାଗରେ ଜଳିଉଠି ମୁଁ ନଟ ସାମନ୍ତକୁ କହିଲି ତୁମେ ମୋ ଘରୁ ବାହାରି ଯାଅ ନହେଲେ ପାଟିକରି ଉଆସର ସମସ୍ତଙ୍କୁ ଡାକ ପକେଇବି । ମୋର ସତର୍କବାଣୀ ନିର୍ଲଜ୍ଜ ନଟ ସାମନ୍ତ ମନରେ ଦାଗ ପକେଇ ପାରିନଥିଲା । ତା'ର ଦୁଃସାହସ ଦେଖି ମୁଁ ଜଡ଼ ପାଲଟି ଗଲି । ସେ ତା'ର ଦୁଇ ଲୋମଶ ହାତରେ ମୋ ଦେହକୁ ବିଷାକ୍ତ ସାପ ଭଳି ଜାବୁଡ଼ିଧରି କହିଥିଲା, 'ମୁଁ ଜାଣେ, ତୁ ବରହମପୁରର ସେଇ ନାମଜାଦା ବସ୍ତିର ରାଧାବାଈର ଝିଅ, ଲଳିତାର ନାତୁଣୀ । ରାତି ଅଧରେ ପାଟି ଫିଟେଇ ନିଜର ବିପଦକୁ ତୁ ଡ଼ାକିବୁ ନାହିଁ ଏକଥା ନଟ ସାମନ୍ତକୁ ବେଶ ଜଣା ଅଛି ।'

ହେ ବଟ ମହାପ୍ରଭୁ, ମୋର ଅନୁନୟ ବିନୟ, କାକୁତି-ମିନତି ନଟ ସାମନ୍ତର ଜଘନ୍ୟ ଲାଳସା ଆଗରେ ପାଣି ହୋଇଗଲା । ନିଜର ପାଶବିକ କ୍ଷୁଧାକୁ ଚରମ ଭାବରେ ଚରିତାର୍ଥ କରି ଚାଲିଗଲାବେଳେ ଯାହା କହିଗଲା ସେ କଥା ଶୁଣି ମୋ ପାଦ ତଳର ପୃଥିବୀ ଦୋହଲି ଉଠିଲା । ଟଳମଳ ପାଦରେ ବାହାରି ଯାଉ ଯାଉ ସେ କହିଲା, 'ମୁଁ ଜାଣିଛି, ଏ ନୀଳକଣ୍ଠପୁର ଭଙ୍ଗା ଉଆସ ଲଳିତାବାଈର ନାତୁଣୀକୁ ପୋଷେଇବ ନାହିଁ । ରାଜଧାନୀର ଫାଇଭ୍‌ଷ୍ଟାର ହୋଟେଲରେ ମୋର କ୍ଲାଏଣ୍ଟମାନେ କେତେ ଆଶାନେଇ ଚାହିଁ ବସିଛନ୍ତି । କିଛି ଚିନ୍ତା ନାହିଁ, ମୁଁ ସବୁ ଠିକ୍ କରିଦେବି ।'

ବାସନ୍ତୀ ନିଃଶ୍ୱାସ ନେଇ କହିଥିଲା, 'ମୋର ମନେହେଲା, ଘରେ ବଜ୍ରପାତ ହେଲା । ହେ ବଟ ମହାପ୍ରଭୁ, ମୋର ଲକ୍ଷ ବାରଣ ସତ୍ତ୍ୱେ ସାମନ୍ତକୁଳର ଜଣେ ପଶୁ

ମୋ'ର ସର୍ବସ୍ୱ ଲୁଟି ନେଲା । ପତିତପାବନୀ ଗଙ୍ଗାଭଳି ଏଇ ମହାନଦୀ ଜଳରେ ମୋ ଦେହକୁ ବିସର୍ଜନ ଦେଇ ଏ ଅଭିଶପ୍ତ ଜୀବନରୁ ମୁଁ ମୁକ୍ତି ପାଇ ପାରନ୍ତି । ହେଲେ, ବାପଛେଉଣ୍ଡ ଶିଶୁଟିର ନିଷ୍ପାପ ମୁହଁକୁ ଚାହିଁ ମୁଁ ସେ କଥା ବି କରିପାରୁନି । ଅଥଚ ସେଇ ପଙ୍କିଳ ଜୀବନରୁ ମୋତେ ଦୂରେଇ ରଖିବା ପାଇଁ ସାରାଜୀବନ ମୋ ବୋଉ ଯେଉଁ ଲଢ଼େଇ କରିଚି, ଯେଉଁ ଦୁଃଖକଷ୍ଟ ସହିଚି ସେକଥା ମୁଁ ଭୁଲିବି କେମିତି ? ସାମନ୍ତ ଘରର କୁଳବୋହୂ ହୋଇ ମୁଁ ତୁମ ପାଖରେ ସେଇ ଦୁଃଖ ଜଣେଇଥିଲି । ମୁଁ ଜାଣେ ଚାହିଁଲେ ବି ସେମାନେ ଭଲ ହେବାକୁ ମୋତେ ଦେବେ ନାହିଁ । ଶେଷକୁ ନଟ ସାମନ୍ତ ଭଳି ଜଣେ ଜଘନ୍ୟ ପଶୁ ହାବୁଡ଼ରେ ମୋତେ ପକେଇ ଦେଲ ? ଏଇୟା ତୁମର ବିଚାର ?'

ହଁ ସେଇ ଚରମ ଦୁର୍ଘଟଣା ଘଟିବା ଦିନରୁ ରାତି ପାହାନ୍ତାରେ ନିଜ କାମ ସାରି ସହରକୁ ଚାଲିଯାଉଥିଲା ବାସନ୍ତୀ ।

ରାତି ପାହି ଆସୁଥିଲା । ବାସନ୍ତୀ ଆଉ ତା'ର ପୁତୁରା ନବଘନ ଦିହେଁ ଆଗେଇ ଆସୁଥିଲେ ନଈତୁଠକୁ । ମହାନଦୀର ବନ୍ୟାର ପ୍ରଳୟଙ୍କରୀ ଚେହେରା ଦେଖି ବାସନ୍ତୀର ପାଦ ଅଟକି ଯାଉଥିଲା । ମୋ ମୂଳରେ ଠିଆହେଲା ବାସନ୍ତୀ । ମୋତେ ଲକ୍ଷ୍ୟ କରି ସେ ପଚାରିଲା, 'ହେ ବଟମହାପ୍ରଭୁ, ମୁଁ ଯାହା ଶୁଣୁଛି, ସେକଥା କ'ଣ ସତ ? ଶୁଣିଲି ନଟ ସାମନ୍ତ ଆଉ ଦୁନିଆରେ ନାହିଁ । ହାର୍ଟ ଏଟେକ୍‌ରେ ସପ୍ତାହେ ଶେଯରେ ପଡ଼ିଥିଲା, କାଲି ତା'ର ପ୍ରାଣବାୟୁ ଉଡ଼ିଗଲା । ସଞ୍ଜକୁ ପରା ନଟ ସାମନ୍ତର ଶବକୁ ସେମାନେ ମଶାଣିକି ଘେନି ଯାଇଥିଲେ । କି ଦୁଃଖର ବିଷୟ, ଭୟଙ୍କର ବର୍ଷା ହେଲା । ଜୁଇରେ ନିଆଁ ଲାଗିଲା ନାହିଁ । ନଟ ସାମନ୍ତର ଶବଟା ପରା ବଢ଼ି ପାଣିରେ ଭାସିଗଲା । ସେମାନେ ଶବ ଦାହକରି ନପାରି ଫେରିଗଲେ ।'

ମୁଁ ବାସନ୍ତୀର କଥା ଶୁଣୁଥିଲି । ସେତେବେଳେ ମୋ ଡ଼ାଳରେ ବସିଥିବା ଚିଲ ଶାଗୁଣାମାନେ ଡ଼େଣାମେଲି ଦେଇ ମେଘୁଆ ଆକାଶରେ ଚକ୍କର କାଟୁଥିଲେ । ଆରପଟେ ନବଘନ ବଡ଼ ପାଟିରେ ଡ଼ାକ ପକେଇଲା ତା' ଖୁଡ଼ୀକି । କହିଲା, 'ଦେଖିଲ, ଦେଖିଲ ଖୁଡ଼ୀ, ଏଇ ବର ଓହଳରେ ଶବଟିଏ ଭାସୁଛି । ଚିଲ ଶାଗୁଣା ଘେରି ଗଲେଣି ।' ବାସନ୍ତୀର ଆଖି ପଡ଼ିଗଲା, ମହାନଦୀର ଗୋଳିଆ ପାଣିରେ ଭାସୁଥିଲା ନଟ ସାମନ୍ତର ଶବ । ସକାଳର ମେଘୁଆ ଅନ୍ଧାରରେ ନଟ ସାମନ୍ତର ଶବକୁ ଚିହ୍ନିବାରେ ବାସନ୍ତୀର କଷ୍ଟ ହେଲାନାହିଁ । ତା'ର ମନେ ହେଲା, ମରିଯାଇ ମଧ ତା'ର ସେଇ ଗୋଟିଏ ଆଖିରେ କଟମଟ କରି ଚାହିଁରହିଛି ତା'ରି ଆଡ଼କୁ । ସେତେବେଳକୁ ଶିଶୁ ନବଘନ ମଧ ଚିହ୍ନି ପାରିଥିଲା ନଟ କକେଇଙ୍କ ଶବକୁ । ସେ ପୁଣି ଚିତ୍କାର କରି ଉଠିଲା, 'ଦେଖିଲ, ଦେଖିଲ

ଖୁଡ଼ୀ, ସେଇ ଚିଲଟା କେମିତି ନଟ କକେଇର ଆଖିଟାକୁ ଝାମ୍ପିନେଇ ଉଡ଼ିଗଲା ।' ଆଖିଟାକୁ ଚିଲ ନେଇଯିବାରୁ ନଟ ସାମନ୍ତର ମୁହଁଟା ଆହୁରି ଭୟଙ୍କର ଦିଶିଲା ଏବଂ ସେଇ ଭୟଙ୍କର ଦୃଶ୍ୟରେ ବାସନ୍ତୀର ଆଖି ବୁଜି ହୋଇଗଲା । ବାସନ୍ତୀ ଭାବିଲା, ଢେଙ୍କେ ଶାଶୁଙ୍କର ଅଭିଶାପ ସତକୁ ସତ ଫଳିଗଲା ।

ସକାଳର ପବନରେ ମୋର ପତ୍ରଗୁଡ଼ିକ ଦୋହଲୁଥିଲା ବାସନ୍ତୀର ମୁଣ୍ଡ ଉପରେ । ମୁଁ ପୁଣି ତାକୁ ଆଶୀର୍ବାଦ କଲି । ବାସନ୍ତୀ ହୁଏତ ସେକଥା ଅନୁଭବ କଲା ।



# ଝରଣା

ଶୁଭ୍ରା ମୋର ନାତୁଣୀ । ତା'ଭଳି ଜଣେ ସୁନ୍ଦରୀ ଚଞ୍ଚଳା ଝିଅ ଅକସ୍ମାତ୍ ଯେ ପଙ୍ଗୁ ହୋଇଯିବ ଏହାଠାରୁ ଆଉ ଦୁଃଖର ବିଷୟ କ'ଣ ହୋଇପାରେ ? ଏବେ ଶୁଭ୍ରାକୁ ଦେଖି ମୋର ମନେ ହେଉଛି, ମୁକ୍ତ ଆକାଶ ତଳେ ଗୋଟିଏ ପାର୍ବତ୍ୟ ଝରଣାକୁ କେହି ଯେପରି ହଠାତ୍ ବନ୍ଦୀ କରିଦେଇଛି ଗୋଟିଏ ଅନ୍ଧକାର ଗୁହା ଭିତରେ ।

ଶୁଭ୍ରାକୁ ଧରି ମୋ ଝିଅ କଳ୍ପନା ଆଉ ମୁଁ ଆମେ ବାହାରି ଆସିଲୁ ସେଇ ଭାରତ ପ୍ରସିଦ୍ଧ ଚିକିତ୍ସାନୁଷ୍ଠାନରୁ । କଳ୍ପନାର ମୁହଁକୁ ଚାହିଁ ମୁଁ ଦେଖିଲି, ତା'ର ଦୁଇ ଆଖିରେ ଟଳମଳ କରୁଥିଲା ନିରାଶାର ଅଶ୍ରୁବିନ୍ଦୁ । କଳ୍ପନା ନିଜେ ଜଣେ ଡାକ୍ତର, ମନରେ ଏକ ନିଶ୍ଚିତ ଆଶା ନେଇ ସେ ଧାଇଁ ଆସିଥିଲା ଅଲଇଣ୍ଡିଆ ଇନ୍‌ସଟିଚିଉଟ୍ ଅଫ ମେଡ଼ିକେଲ ସାଇନ୍‌ସକୁ । ଅଣ୍ଟା ପାଖରୁ ଶୁଭ୍ରାର ଗୋଡ଼ ଦୁଇଟି ଅଚଳ ହୋଇ ପଡ଼ିଛି । କିନ୍ତୁ ବିଶେଷଜ୍ଞମାନେ ପରିଷ୍କାର ଜଣେଇ ଦେଲେ ଯେ ସେମାନେ ଶୁଭ୍ରା ପାଇଁ କିଛି କରିବାକୁ ଅକ୍ଷମ । ନିଜେ ଜଣେ ଅଭିଜ୍ଞ ଚିକିତ୍ସକ; କିନ୍ତୁ ମା'ର ମନ ନେଇ କଳ୍ପନା ନିଜକୁ ଆଶ୍ୱାସନା ଦେଇ ପାରିଲା ନାହିଁ । ଏବଂ ତା'ର ବିଷଣ୍ଣ କରୁଣ ମୁହଁ, ମନେହେଲା ଶ୍ରାବଣର ମେଘ ଭଳି ଭାରାକ୍ରାନ୍ତ ।

ଶୁଭ୍ରା କେବଳ ଜଣେ ମେଧାବୀ ଛାତ୍ରୀ ନୁହେଁ, ରୂପରେ ସେ ଅନନ୍ୟା ସୁନ୍ଦରୀ । କୃତିତ୍ୱର ସହିତ ସେ ମେଟ୍ରିକ୍ ପାରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛି । କିନ୍ତୁ ଭାଗ୍ୟର ଅଭିଶାପ । ଅକସ୍ମାତ ସେ ବିକଳାଙ୍ଗ ହୋଇଗଲା, ଉଭେଇଗଲା ଜୀବନର ସମସ୍ତ ଶ୍ରୀ । ଶୁଭ୍ରାପାଇଁ ମୋ' ଝିଅ ଜୋଇଁ କେତେ କଳ୍ପନା କରିଥିଲେ । କିନ୍ତୁ ଏବେ, ତାର ଭବିଷ୍ୟତ ଅନ୍ଧକାର ଦେଖି କେଉଁ ମା ଧୈର୍ଯ୍ୟ ଧରିବ ? ଏଭଳି ପରିସ୍ଥିତିରେ ଆଶ୍ୱାସନା ଦେବାର ସବୁ ଭାଷା ହଜିଯାଇଥିଲା ମୋ' ମୁହଁରୁ । ମା ଝିଅ ଦୁହିଁଙ୍କ ମନର ତୀବ୍ର ଯନ୍ତ୍ରଣା ମୋତେ ଉଦ୍‌ବେଳିତ କରୁଥିଲା ସମୁଦ୍ରର ଅଶାନ୍ତ ତରଙ୍ଗ ଭଳି ।

ଭୁବନେଶ୍ୱର ଫେରିବାକୁ ପଡ଼ିବ । ଟ୍ରେନ ପାଇଁ ଦିଲ୍ଲୀ ଷ୍ଟେସନ ଓ୍ୱେଟିଙ୍ଗ ରୁମରେ ଆମେ ଅପେକ୍ଷା କରୁଥିଲୁ, ସେଇଠି ଅକସ୍ମାତ୍ ଦେଖା ହେଲା ଝରଣା ସଙ୍ଗରେ ।

ରାତି ଅନେକ ହେଲାଣି । ଶୁଭ୍ରା ଶୋଇ ପଡ଼ିଥିଲା । କ୍ଳାନ୍ତ କଳ୍ପନା ଗୋଟିଏ ଆରାମ ଚେୟାରରେ ଶୋଇଥିଲା । ତା' ଆଖିରେ ନିଦ ଥିଲା କି ନାହିଁ ସନ୍ଦେହ । କିନ୍ତୁ ମୋ' ଆଖିରେ ନିଦ ନଥିଲା । ଓ୍ୱେଟିଙ୍ଗ ରୁମର ପଶ୍ଚିମ ଦୁଆର ବାଟେ ଆଗେଇ ଆସୁଥିଲା

ଝରଣା । ବିଜୁଳି ଆଲୁଅରେ ତା' ମୁହଁଟି ମୋତେ ଭାରି କମନୀୟ ମନେହେଲା । ଅନେକ ଦିନପରେ ଝରଣାକୁ ଦେଖି ମୋ ମନ ଖୁସିରେ ପୂରିଉଠିଲା । ଅନ୍ତତଃ ସାମୟିକଭାବେ ଶୁଭ୍ରାର ଦୁଃଖ ମୁଁ ପାସୋରି ଗଲି । ନିଜର ଶାନ୍ତ ମୁହଁରେ ସ୍ମିତ ହସର ଏକ ମଧୁର ତରଙ୍ଗ ଫୁଟେଇ ମୋ ପାଖକୁ ଆସିଲା ଝରଣା । କ୍ରାଚ ଯୋଡ଼ିକ ଥୋଇ ସେ ମୋର ପାଦ ସ୍ପର୍ଶ କରି ପ୍ରଣାମ କଲା । ସଲଜ୍ଜ ମୁହଁରେ ସେ ପଚାରିଲା, 'ସାର୍, ଆପଣ ମୋତେ ଚିହ୍ନି ପାରୁଛନ୍ତି ?'

ମୁଁ କହିଲି, 'ଆରେ ଝରଣା, ତୁମକୁ ପୁଣି ଚିହ୍ନିପାରିବି ନାହିଁ ? ଏକଥା ତୁମେ ଭାବିଲ କେମିତି ? ତେବେ ତୁମକୁ ମୁଁ ଦିଲ୍ଲୀରେ ଦେଖିବି ଏକଥା ମୁଁ ଆଶା କରିନାହିଁ ।' ମୁଁ ମନେ ମନେ ଚିନ୍ତା କଲି, ଏହା ଭିତରେ ପନ୍ଦର ଷୋହଳ ବର୍ଷ ବିତିଗଲାଣି । ପାଞ୍ଚ ବର୍ଷ ହେବ ମୁଁ ଚାକିରିରୁ ଅବସର ନେଲିଣି ।

ଝରଣା ପଛେ ପଛେ ତା'ର ସ୍ୱାମୀ କାପଟେନ ମିଶ୍ର ଆସି ମୋତେ ନମସ୍କାର ଜଣାଇଲେ । ମୁଁ କହିଲି, 'ହ୍ୟାଲୋ କ୍ୟାପଟେନ ମିଶ୍ର, ଦୀର୍ଘ ଦିନପରେ ତୁମ ଦୁହିଁଙ୍କୁ ଏକାଠି ଦେଖି ଭାରି ଖୁସିହେଲି । ବୋଧହୁଏ ତୁମେମାନେ ଉତ୍ତରଭାରତ ବୁଲିବାକୁ ଆସିଛ । ଶୁଣିଥିଲି, ତୁମର ପୁଅଟିଏ, ଝିଅଟିଏ । କିନ୍ତୁ ସାଙ୍ଗରେ ସେମାନଙ୍କୁ ଦେଖୁନି ?'

ଝରଣା କହିଲା, 'ଆପଣ ଠିକ୍ ଶୁଣିଛନ୍ତି । ଆମର ପୁଅଟିଏ ଆଉ ଝିଅଟିଏ ସେମାନେ ମାମୁଘରେ ଅଛନ୍ତି । ଆମେ, ଭାରତ ଭ୍ରମଣରେ ଆସିନାହୁଁ । ଆମେ ଏଇ ଦିଲ୍ଲୀକୁ ଆସିଛୁଁ । ଆପଣଙ୍କ ଆଶୀର୍ବାଦରୁ ଶିକ୍ଷୟିତ୍ରୀ ହିସାବରେ ମୁଁ ଜାତୀୟ ପୁରସ୍କାର ପାଇଁ ଯୋଗ୍ୟ ବିବେଚିତ ହୋଇଛି । ସ୍ୱାଧୀନତା ଦିବସର ଉତ୍ସବରେ ରାଷ୍ଟ୍ରପତିଙ୍କଠାରୁ ସେଇ ପୁରସ୍କାର ଗ୍ରହଣ କରିବାକୁ ଆସିଥିଲି । ଯାହାହେଉ ଆପଣଙ୍କ ସଙ୍ଗେ ଦେଖାହେଲା । ମୋର ସୌଭାଗ୍ୟ । ଆପଣଙ୍କ ଋଣ ମୁଁ ଏ ଜୀବନରେ ଶୁଝିପାରିବି ନାହିଁ ?'

ଝରଣା ରାଷ୍ଟ୍ରପତି ପୁରସ୍କାର ପାଇଛି । ଏକଥା ଜାଣି ମୁଁ ରୋମାଞ୍ଚିତ ହେଲି । ମୋ ଆଖିରେ ଲୁହ ଭରି ଆସିଲା । ମୁଁ ନିଜର ଆବେଗ ସମ୍ବରଣ କରି କହିଲି, 'ଝରଣା ତୁମର ଏକନିଷ୍ଠ ସାଧନା, ଶିକ୍ଷା କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ଯୋଗୁଁ ତୁମେ ଏ ଜାତୀୟ ସମ୍ମାନ ପାଇଛ; ଏକଥା ଜାଣି ମୁଁ ଖୁସିହେଲି । ତୁମର ପ୍ରତିଭା ଥିଲା ସେଥିପାଇଁ ମୋର ଅବଦାନ କିଛି ନାହିଁ ।

କ୍ୟାପଟେନ୍ ମିଶ୍ର କହିଲେ, 'ନା ନା ସାର୍ ସେ କଥା କହିଲେ ଚଳିବ ? ଝରଣା ପାଇଁ ଆପଣଙ୍କ ଅବଦାନ କ'ଣ ଭୁଲିହେବ ?'

ଝରଣା କହିଲା, 'ସାର୍ କେତେ ଛାତ୍ର-ଛାତ୍ରୀଙ୍କ ନିଜସ୍ୱ ମେରିଟ୍ ଅଛି ଏକଥା ସତ କିନ୍ତୁ ସେ ମେରିଟ୍‌କୁ ଯେଉଁ ବ୍ୟକ୍ତି ଆବିଷ୍କାର କରି ପାରନ୍ତି ସେ ଯେ କେତେ ମହାନ୍

ସେ କଥା ଅନ୍ତତଃ ମୁଁ ଜାଣିଛି । ମୋର ସେଇ ଦୁର୍ଦ୍ଦିନରେ ଆପଣ ସାହାଯ୍ୟ କରିବା ପାଇଁ ଅକୁଣ୍ଠ ମନରେ ସଦୟ ହାତ ବଢ଼ାଇ ନଥିଲେ ମୋ ଭଳି ଜଣେ ଅକର୍ମଣ୍ୟ ଝିଅର ଅବସ୍ଥା କ'ଣ ହୋଇଥାନ୍ତା କିଏ ଜାଣେ ? ଆପଣଙ୍କ ପ୍ରେରଣା ହିଁ ଝରଣା ଭଳି ଝିଅର ଜୀବନରେ ନବଜୀବନ ସଞ୍ଚାର କରିଥିଲା । ସୂକ୍ଷ୍ମ ଶିଳ୍ପୀ ମନର ସୁପ୍ତ ସୃଜନୀ ଶକ୍ତିକୁ ଜାଗ୍ରତ କରିବାକୁ ଆପଣହିଁ ମୋତେ କହିଥିଲେ । ସେ କଥା ଭୁଲିବି କେମିତି ?'

ଝରଣା କଥା ମୁଁ ଶୁଣୁଥିଲି । ମୋ ମନରେ ମୋ' ନାତୁଣୀ ଶୁଭ୍ରା କଥା ଫୁଟି ଉଠୁଥିଲା । ଅବସର ନେଲାପରେ, ମୋ' ଚାକିରୀ ଜୀବନର ତିକ୍ତ ମଧୁର ସ୍ମୃତି ସବୁ ପାସୋରି ଦେଲିଣି । ଝରଣା ଭଳି ଝିଅଟିର କଥା ମଧ ମୋର ସ୍ମୃତିର ଆକାଶରୁ ଉଭେଇ ଯିବାକୁ ବସିଥିଲା ଏବଂ ଠିକ୍ ଏଭଳି ଏକ ମୁହୂର୍ତ୍ତରେ ତା' ସଙ୍ଗରେ ମୋର ଦେଖା ହୋଇଗଲା । ଆଶ୍ଚର୍ଯ୍ୟର କଥା ।

ମୋର ମନେପଡ଼ିଲା, ସେଇ ଟ୍ରେନିଙ୍ଗ କଲେଜରେ ଝରଣା ସଙ୍ଗେ ମୋର ପ୍ରଥମ ଦେଖା । ଭୂଇଁରେ ଶିଶୁଭଳି ଗୁରୁଣ୍ଡି ଗୁରୁଣ୍ଡି ଚାଲୁଥିବା ଛାତ୍ରୀଟିକୁ ଦେଖି ମନରେ କୌତୂହଳ ହେବା ସ୍ୱାଭାବିକ । କିନ୍ତୁ ତାର ଚାଲିଚଳଣରେ ଅସ୍ୱାଭାବିକତା ଦେଖି ମୁଁ ବିସ୍ମିତ ହୋଇଗଲି ।

କଲେଜରେ ଅନ୍ୟାନ୍ୟ ଝିଅମାନଙ୍କ ଠାରୁ ସେ ଥିଲା ଭିନ୍ନ । ଅନ୍ୟ ଝିଅମାନେ ଜୁଡ଼ାରେ ରଙ୍ଗିନ ଫୁଲ ପିନ୍ଧୁଥିଲେ । ରଙ୍ଗ ବେରଙ୍ଗର ଶାଢ଼ି କିମ୍ବା ଡ୍ରେସ ପିନ୍ଧୁଥିଲେ । ନିଜ ନିଜ ଭିତରେ ହସ ଖୁସିରେ ଗପସପ କରୁଥିଲେ । କିନ୍ତୁ, ଫୁଲ କିମ୍ବା ଅଳଙ୍କାର ପିନ୍ଧିବା ଦୂରର କଥା, ନୁଖୁରା ବାଳ, ସାଧାରଣ ସୂତାର ଶାଢ଼ୀଟିଏ ପିନ୍ଧି ଚୁପ୍‌ଚାପ ହୋଇ ସେ ଏକୁଟିଆ ବସୁଥିଲା । ଝରଣାକୁ କଲେଜରେ ଦେଖି ମୋର ମନେହେଲା, ସେଇ ଅଳ୍ପ ବୟସରେ ସେ ନିଜପ୍ରତି ନିଷ୍ଠୁର ହୋଇ ଉଠୁଛି । ଜୀବନ ପ୍ରତି ବୈରାଗ୍ୟ ଆଉ ତୀବ୍ର ବିତୃଷ୍ଣା ତା'ର ଆଚରଣରେ ସୁସ୍ପଷ୍ଟ ହୋଇ ଉଠୁଥିଲା । ସେ ପଙ୍ଗୁ, ଏକଥା ସତ । କିନ୍ତୁ ତାକୁ ତ ବଞ୍ଚିବାକୁ ହେବ ଏବଂ ଜୀବନ ପାଇଁ ସଂଗ୍ରାମ କରିବାକୁ ହେବ । ଏକଥା ଭୁଲିଗଲେ ଚଳିବ କିପରି ? କଲେଜ ପରିସରରେ ଝରଣାର ସେଇ କରୁଣ ମୁହଁଟି ମୋ ମନରେ ତୀବ୍ର ବେଦନା ସଞ୍ଚାର କରୁଥିଲା ।

ଘଟଣା କ୍ରମେ ତା' ବାପା ନାରାୟଣ ବାବୁଙ୍କଠାରୁ ଝରଣାର ଅତୀତ ଜୀବନ କାହାଣୀରୁ କିଛି ଜାଣିଥିଲି । ନାରାୟଣବାବୁଙ୍କର ଦୁଇ ଝିଅ । ବଡ଼ ଝିଅ ସରୋଜିନୀ ଆଉ ସାନ ଝରଣା । ସରୋଜିନୀ ଅଧ୍ୟାପିକା । ତା'ର ବାହାଘର ହୋଇଯାଇଛି । ସାନଝିଅ ଦେଖିବାକୁ ଭଲ ବୋଲି ଘରେ ସମସ୍ତେ ଗେହ୍ଲା କରିଥିଲେ । ଗ୍ରାଜୁଏସନ୍ ପରେ ପରେ ବାପା ଚାହିଁଥିଲେ ଝରଣାର ବାହାଘର କରିଦେବାକୁ । ପାତ୍ରଟିଏ ମିଳିଥିଲା, ସେ

ମିଲିଟେରୀରେ ଯୋଗ ଦେଇଛି । ପିଲାଟି ଝରଣାକୁ ଭଲ ପାଏ । ଝରଣାର ମଧ୍ୟ ସେ ପ୍ରସ୍ତାବରେ ମତ ଥିଲା । କିନ୍ତୁ ହଠାତ୍ ଝରଣାର ଜୀବନରେ ଏମିତି ଦୁର୍ଦ୍ଦିନ ଆସିବ, ସେ କଥା କିଏ ଜାଣିଥିଲା ? ବି.ଏ. ପରୀକ୍ଷା ପରେ ପରେ ଝରଣା ନିମୋନିଆରେ ପଡ଼ିଗଲା । ଡାକ୍ତର ଚିକିତ୍ସା କଲେ ଜ୍ୱର ଭଲ ହୋଇଗଲା । କିନ୍ତୁ ଧୀରେ ଧୀରେ ଅଣ୍ଟାପାଖରୁ ନଇଁ ପଡ଼ିଲା ଝରଣା ଦେହଟି ।

ନାରାୟଣବାବୁ ଚିକିତ୍ସାରେ କିଛି ତ୍ରୁଟୀ କରିନଥିଲେ । ସମ୍ବଲପୁର, କଟକ, କଲିକତା ଏପରିକି ବମ୍ବେର ବିଶେଷଜ୍ଞମାନେ ନିରାଶ କରି ଫେରେଇ ଦେଲେ । ଶେଷରେ ନାରାୟଣବାବୁ କହିଥିଲେ, 'ବୁଝିଲେ, ବିଜ୍ଞାନ ଯେଉଁଠି ପରାଜୟ ସ୍ୱୀକାର କରେ ସେତେବେଳେ ଭଗବାନଙ୍କ ଉପରେ ଭରସା ରଖିବା ଛଡ଼ା ଆମର ଉପାୟ କ'ଣ ?' ଅତି ଦୁଃଖରେ ଦୀର୍ଘଶ୍ୱାସ ଛାଡ଼ି ସେ କହିଥିଲେ, 'ଜଣେ ଶିକ୍ଷୟିତ୍ରୀ ହୋଇ ଝରଣା ଅନ୍ତତଃ ନିଜେ ନିଜର ଗୁଜରାଣ ମେଣ୍ଟେଇ ପାରିବ, ଏଇ ଆଶା ନେଇ ତାକୁ ଟ୍ରେନିଙ୍ଗ କଲେଜରେ ଭର୍ତ୍ତି କରେଇଛି । ଆପଣମାନେ ସଦୟ ହେଲେ ସେ ଅନ୍ତତଃ ନିଜଗୋଡ଼ରେ ଠିଆହୋଇ ପାରିବ ।'

କଥା ଛଳରେ ମୁଁ ନାରାୟଣବାବୁଙ୍କୁ ପଚାରିଥିଲି, ଆଉ ସେଇ ପିଲାଟି, ଯେ ଯୋଗଦେଇଛି ମିଲିଟାରୀରେ, ତା'ର ଖବର କ'ଣ ? ସେ କ'ଣ ଝରଣାର ଏ ଦୁର୍ଘଟଣାର କାହାଣୀ ଜାଣିଛି ?

'ହଁ, ଜାଣିଛି । ତେବେ ଆମେ ତା'ର ମନ କଥା କିପରି ଜାଣିବୁ ? ତା'ଛଡ଼ା ମୋ ଝିଅର ବର୍ତ୍ତମାନ ଅବସ୍ଥା ଏହିପରି । ଝରଣାର ବାହାଘର କଥା ଆମେ ଆଉ କଳ୍ପନା କରିପାରୁ ନାହିଁ ।' ଦୁଃଖରେ ଅଭୀଭୂତ ହୋଇ କହିଥିଲେ ନାରାୟଣବାବୁ ।

ତା'ଛଡ଼ା, କେବଳ ଥିଓରୀ କ୍ଲାସରେ ଝରଣା ସମ୍ବନ୍ଧରେ ଯାହା ଜାଣିବା ମୋ' ପକ୍ଷରେ ସମ୍ଭବ ନଥିଲା, ପ୍ରାକ୍ଟିକେଲ କ୍ଲାସରେ କ୍ରମେ ତାହା ପ୍ରସ୍ଫୁଟିତ ହେଲା । ମୋ' ଆଗରେ ବିକଶିତ ହେଲା ଝରଣାର ଅନ୍ତର୍ନିହିତ ପ୍ରତିଭା । ପାଠ୍ୟ ବିଷୟରେ ତାର ଥିଲା ଜ୍ଞାନର ଗଭୀରତା । ଶ୍ରେଣୀ ପରିଚାଳନାର ସୁନ୍ଦର କୌଶଳ ମୋତେ ମୁଗ୍ଧ କଲା । ସ୍ୱଳ୍ପ କେଇଜଣ ଶିକ୍ଷକ-ଶିକ୍ଷୟିତ୍ରୀ ଛାତ୍ରମାନଙ୍କ ହୃଦୟକୁ ଜୟକରି ପାରିଥିଲେ । ସେମାନଙ୍କ ମଧ୍ୟରୁ ଝରଣା ଥିଲା ଅନ୍ୟତମ । ସେକଥା ଆବିଷ୍କାର କରି ମୁଁ ଚମତ୍କୃତ ହେଲି, କାରଣ ଝରଣା ପଙ୍ଗୁ ଥିଲେ ମଧ୍ୟ ତା' ଭିତରେ ଥିଲା ଏକ ଶିଳ୍ପୀ ସୁଲଭ ସୂକ୍ଷ୍ମ କଳାଜ୍ଞାନ, ଯେଉଁ ଶକ୍ତି ବଳରେ କଳାପଟା ଦେହରେ ସୁନ୍ଦର ଚିତ୍ର ଆଙ୍କି ସେ ମୁଗ୍ଧ କରିଦେଉଥିଲା ଛାତ୍ରମାନଙ୍କର ମନକୁ ।

ଏସବୁ ଗୁଣ ସତ୍ତ୍ୱେ ସେ ଏକୁଟିଆ ଚୁପଚାପ ବସୁଥିଲା । ନିଜ ଜୀବନ ପ୍ରତି

ବୈରାଗ୍ୟ । ମୁଁ ଝରଣାକୁ କହିଥିଲି, 'ଦେଖ ଝରଣା, ତୁମ ସାଙ୍ଗମାନେ ଜୁଡ଼ାରେ କେତେ ରଙ୍ଗର ଫୁଲ ପିନ୍ଧୁଛନ୍ତି, ଅଳଙ୍କାର ପିନ୍ଧୁଛନ୍ତି । ସେମାନେ ସୁନ୍ଦର ଡ୍ରେସ ପିନ୍ଧୁଛନ୍ତି, ଶାଢ଼ି ପିନ୍ଧୁଛନ୍ତି । ସାଙ୍ଗ ମେଳରେ ହସଖୁସିରେ କେମିତି ପ୍ରଜାପତିଙ୍କ ଭଳି ଘୂରି ବୁଲୁଛନ୍ତି । ଏ ବୟସରେ ସେଇଟା ହିଁ ସ୍ୱାଭାବିକ । ଶୁଣ ,ତୁମ ଜୀବନ ଉଷାରେ ସୂର୍ଯ୍ୟର ଆଲୁଅକୁ ନିମନ୍ତ୍ରଣ ନକରି ରାତିର ଘୋର ଅନ୍ଧକାର ଭିତରେ ନିଷ୍ଠୁର ଭାବେ ମୁଣ୍ଡ ପିଟି ଜୀବନକୁ ଏପରି ଦୁର୍ବଳ କରି ଲାଭ କ'ଣ ?'

ମୋ' କଥା ଶୁଣି, ଝରଣା ମୁହଁରେ ଫୁଟି ଉଠିଥିଲା ଏକ କରୁଣ ହସର ବିଷଣ୍ଣ ରେଖା । ସେ କହିଥିଲା, 'ସାର୍‌, ଆପଣ ଚାହାନ୍ତି ସାଙ୍ଗମାନଙ୍କ ଭଳି ହସ ଖୁସିରେ ମୁଁ ଦିନ ବିତେଇବି ।' କଲେଜ ଆଗରେ ବହିଯାଉଥିବା ନଈକୁ ଲକ୍ଷ୍ୟ କରି ଝରଣା କହିଥିଲା, 'ଏଇ ନଈରେ ଦିନେ ମୁଁ ମାଛ ଭଳି ପହଁରୁଥିଲି । ପୁଅମାନଙ୍କ ଭଳି ପଥର ଉପରୁ ପାଣି ଭିତରକୁ ଡେଇଁ ପଡୁଥିଲି । କାହାରି ଗଛରେ କଷି ପିଜୁଳିଟିଏ ରଖେଇ ଦେଉନଥିଲି । ମୋର ଅଝଟ, ମୋର ଦୁଷ୍ଟାମିରେ ବିରକ୍ତ ହୋଇ ବୋଉ କହୁଥିଲେ, ତୁ ଯାହା ଘରକୁ ଯିବୁ ମୋ ମୁହଁ ପୋଡ଼ିଯିବ ।' ବୁଝିଲେ ସାର୍‌ ଦିନେ ମୋ ମୁହଁ ପୋଡ଼ିଗଲା । ଯାହାର ଜୀବନର ସବୁ ସମ୍ଭାବନା ପୋଡ଼ି ପାଉଁଶ ହୋଇ ଯାଇଛି ତା'ର ଏଭଳି ଅଭିଶପ୍ତ ଜୀବନର ମୂଲ୍ୟ କ'ଣ କହିପାରିବେ ?'

ମୁଁ କହିଥିଲି, 'ଝରଣା, ତୁମ ବାପାଙ୍କଠାରୁ ମୁଁ ସବୁକଥା ଶୁଣିଛି, ତଥାପି ଜାଣିରଖ, ସାଙ୍ଗ ପାଖରେ ମନ ଖୋଲିଦେଲେ ତୁମର ମନ ହାଲୁକା ହେବ । ଦୁଃଖ ବାଣ୍ଟିଦେଲେ ଜୀବନର ବୋଝ ହାଲୁକା ହେଇଯାଏ ।'

ପ୍ରଥମ ପ୍ରଥମ ପକ୍ଷୁ ଝରଣା ପ୍ରତି ତାହା ଅନୁକମ୍ପା ବୋଲି ବିଚାରି କୂର୍ମ ଭଳି ମୋଠାରୁ ସେ ନିଜକୁ ଗୋଟାଇ ନେଉଥିଲା । କିନ୍ତୁ କ୍ରମେ ସେ ବୁଝି ପାରିଲା, ତା' ପ୍ରତି ମୋର ଆଚରଣ ନିଛକ ଅନୁକମ୍ପା ନୁହେଁ । ସେ ବୁଝିଲା, ମୋ' ଭିତରେ ତା' ପାଇଁ ସଞ୍ଚିତ ଥିଲା ଏକ ଆନ୍ତରିକ ମମତା, ବାତ୍ସଲ୍ୟ ସ୍ନେହ । ସୂର୍ଯ୍ୟ କିରଣର ଉଷୁମ ସ୍ପର୍ଶପାଇଁ ପଦ୍ମଫୁଲର ପାଖୁଡ଼ା ସବୁ ଧୀରେ ଧୀରେ ଖୋଲିଗଲା ଭଳି, ସେ ଖୋଲିଦେଲା ତା'ର ଅବଦମିତ ମନକୁ ।

କ୍ରମେ ଆମ ଦୁହିଁଙ୍କ ମଧ୍ୟରେ ବ୍ୟବଧାନ କମି ଆସିଲା । ଦିନେ ଅତି ଦୁଃଖରେ ପଚାରିଥିଲା, 'ସାର୍‌ ପୋଡ଼ିଗଲା ତିଅଣରେ ସ୍ୱାଦ କ'ଣ ଥାଏ ? ପାଉଁଶରେ ଘିଅ ଢାଳି ଲାଭ କ'ଣ ?'

ମୁଁ କିନ୍ତୁ କହିଥିଲି, 'ବୁଝିଲ ଝରଣା, ନିଜର ମନ ନିଜ ପାଖରେ ଅଜ୍ଞେୟ । ତୁମ ଭିତରେ ଯେଉଁ ମହତ୍‌ ସମ୍ଭାବନା ସୁପ୍ତ ରହିଛି ସେ ବିଷୟରେ ତୁମେ ସଚେତନ ନୁହଁ ।

ତୁମର ଏକ ଶିଳ୍ପୀ ସୁଲଭ ମନ ରହିଛି । ସେଇ ସୁପ୍ତ ସୃଜନୀ ଶକ୍ତିର ସନ୍ଧାନ ପାଇଲେ ତୁମ ଜୀବନରେ ସଫଳତା ନିଶ୍ଚୟ ପାଇବ ।'

ତା'ପରେ ହୁଏତ ଝରଣା ନିଜ ଭିତରେ ନିଜକୁ ଖୋଜିବାକୁ ଚେଷ୍ଟା କରିଥିଲା ଯେପରି ମୃଗନାଭି କସ୍ତୁରୀକୁ ଖୋଜିବୁଲେ ।

କିନ୍ତୁ ଜୀବନ ସଂଗ୍ରାମର ଏକ କଠିନ ମୁହୂର୍ତ୍ତ ଝରଣା ପାଇଁ ଅପେକ୍ଷା କରୁଥିଲା । ସେଇଟା ଥିଲା ପ୍ରାକ୍ଟିକେଲ ପରୀକ୍ଷାର ସମୟ । ଏପରି ଜଣେ ଏକ୍ସଟରନେଲ ପରୀକ୍ଷକଙ୍କ ହାବୁଡ଼ରେ ସେ ପଡ଼ିବ ତାହା ଝରଣା କଳ୍ପନା କରିନଥିଲା । ସେ ପରୀକ୍ଷକ ଜଣକ ଥିଲେ ଭାରି ଷ୍ଟ୍ରିକ୍ଟ୍ ପୁଣି ଅତି ରଢ଼ ପ୍ରକୃତିର ବ୍ୟକ୍ତି । ଅନ୍ଧକୁ ମୁହଁ ଉପରେ ଅନ୍ଧ କହିଲେ, ଛୋଟ ଲୋକକୁ ଛୋଟ କହିଲେ ଯେ ମଣିଷ ମନରେ ଭୟଙ୍କର ଆଘାତ ଲାଗେ ଏକଥା ସେ ବୁଝୁନଥିଲେ । ସେ ସୌଜନ୍ୟର ଅଭାବ ସମସ୍ତେ ଅନୁଭବ କଲେ । ଝରଣାକୁ ଦେଖିଲାବେଳୁ ସେ ବିରକ୍ତି ପ୍ରକାଶ କଲେ । ସ୍ପଷ୍ଟ ଭାବରେ ସେ କହିବାକୁ କୁଣ୍ଠା ବୋଧକଲେ ନାହିଁ ଯେ ଝରଣା ଭଳି ଜଣେ ଅକର୍ମଣ୍ୟ ଝିଅ ଶିକ୍ଷକ ହେବାକୁ ଯୋଗ୍ୟ ନୁହେଁ । ସେ ଦୀର୍ଘ ପଇଁଚାଳିଶ ମିନିଟ୍ ସମୟ ସିଧା ସଳଖ ଭାବରେ ଠିଆ ହୋଇ ଶ୍ରେଣୀରେ ଶିକ୍ଷାଦାନ କରିପାରିବ ଏକଥା ସେ ବିଶ୍ୱାସ କରିବାକୁ ରାଜି ନଥିଲେ ।

ସେଇ ପରୀକ୍ଷକଙ୍କ ଆଚରଣରେ ଝରଣା ନିରାଶ ହୋଇ ଭାଙ୍ଗି ପଡ଼ିଲା । ପୁଣି ପରୀକ୍ଷକଙ୍କ କଠୋର ମନୋଭାବ ଶିକ୍ଷାର୍ଥୀ ମହଲରେ ଅଛପା ନଥିଲା । ବର୍ଷକ ସମୟ ମଧ୍ୟରେ ଝରଣାର ଶିକ୍ଷକ ହିସାବରେ ଦକ୍ଷତାର ପରିଚୟ ସମସ୍ତେ ପାଇସାରି ଥିଲେ । ସେଇ ଏକ୍ସଟେରନେଲ ପରୀକ୍ଷକଙ୍କ ଆଗରେ ଝରଣାର ଦକ୍ଷତା ସମ୍ପର୍କରେ ମୁଁ କିଛି କହିବାକୁ ବିରତ ରହିବାକୁ ଶ୍ରେୟସ୍କର ମନେକଲି । ମୋର ବିଶ୍ୱାସ ଥିଲା ଝରଣାର ପ୍ରାକ୍ଟିକେଲ ଶ୍ରେଣୀ ନିଜ ଆଖିରେ ଦେଖିଲେ ତାଙ୍କର ଧାରଣା ନିଶ୍ଚୟ ବଦଳିଯିବ ।

ମୁଁ ଦେଖିଲି, ଯଥେଷ୍ଟ ଧୈର୍ଯ୍ୟ ଆଉ ଦକ୍ଷତାର ସହିତ ଝରଣା ପ୍ରାକ୍ଟିକାଲରେ ଶିକ୍ଷାଦାନ ଦେଇଥିଲା । କିନ୍ତୁ ସେଇ ପରୀକ୍ଷକଙ୍କ ମନକୁ ସେ କେତେଦୂର ପ୍ରଭାବିତ କରିପାରିଥିଲା, ସେ କଥା ଜାଣିବା କାହାରି ପକ୍ଷରେ ସମ୍ଭବ ନଥିଲା ।

ଝରଣା କାନ୍ଦିବାକୁ ଲାଗିଲା । ଧୈର୍ଯ୍ୟ ନ ହରାଇ ଫଳ ବାହାରିବା ଯାଏ ତାକୁ ଅପେକ୍ଷା କରିବାକୁ କହିବା ଛଡ଼ା ମୋର କିଛି ଉପାୟ ନଥିଲା । ଆଶା ଆଶଙ୍କା ଦୋଳାରେ କେବଳ ଝରଣାର ମନ ନୁହେଁ ମୋ ମନ ମଧ୍ୟ ଅସ୍ଥିର ହେବାକୁ ଲାଗିଲା ।

ସେଇ ସମୟରେ ଏକ ଉଚ୍ଚତର ଟ୍ରେନିଙ୍ଗ ପାଇଁ ତିନିମାସ ଚାଲିଗଲି । ଫେରି ଆସି ଝରଣାର ସଫଳତାର ଖବର ପାଇ ମୁଁ ମନେ ମନେ ଖୁସି ହିଁ ହୋଇଥିଲି ।

ଝରଣା କୌଣସି ଏକ ସ୍କୁଲରେ ଶିକ୍ଷୟିତ୍ରୀ ଚାକିରି ପାଇଥିଲା ଏଣୁ ତା ସଙ୍ଗେ କିଛିଦିନ ଦେଖା ହେଉନଥିଲା । ହଠାତ୍ ଦିନେ ରିକ୍ସାରେ ଆସି ଝରଣା ପହଞ୍ଚିଲା ମୋ କ୍ୱାର୍ଟର୍ସକୁ । ତା' ହାତରୁ ନିମନ୍ତ୍ରଣ ପତ୍ରଟି ପାଇ ମୋ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ତା'ର ଲାଜ ନମ୍ର ଆରକ୍ତ ମୁହଁକୁ ଚାହିଁ ମନେ ମନେ ଭଗବାନଙ୍କୁ ଧନ୍ୟବାଦ ଜଣାଇଲି । ଝରଣାର ବାହାଘର ପୁଣି ଝରଣା ଜୀବନର ଆରମ୍ଭରେ ଯେଉଁ ପିଲାଟିକୁ ଭଲ ପାଇଥିଲା ସେଇ କ୍ୟାପ୍‌ଟେନ ମିଶ୍ର ତାକୁ ହତାଶ କରିନାହିଁ । ମୋ' ମନରେ ଖୁସିର ଜୁଆର ଖେଳିଯାଇଥିଲା । ବାହାଘର ହେବାର କିଛିଦିନ ପରେ କ୍ୟାପ୍‌ଟେନ ମିଶ୍ର ଆଉ ଝରଣା ଦୁଇଜଣ ଥରେ ଆସିଥିଲେ ମୋତେ ଦେଖା କରିବାକୁ । ଝରଣା ଭଳି ଜଣେ ଝିଅକୁ ନିଜର ଜୀବନ ସଙ୍ଗିନୀ ରୂପେ ଗ୍ରହଣ କରିବାକୁ ମନରେ କୁଣ୍ଠା କରିନଥିଲା କ୍ୟାପ୍‌ଟେନ ମିଶ୍ର । ମୁଁ ତାକୁ ମୋର ଆନ୍ତରିକ ଆଶୀର୍ବାଦ ଜଣାଇଥିଲି ।

କ୍ରାଚ ସାହାଯ୍ୟରେ ଝରଣା ମୋ' ପାଖରୁ ଡ୍ରେସିଙ୍ଗରୁମରୁ ଧୀରେ ଧୀରେ ବିଦାୟ ନେଲା । ତାକୁ ଅନୁସରଣ କରି କ୍ୟାପଟେନ ମିଶ୍ର ମଧ ବାହାରିଗଲେ । ସେମାନେ ବିଦାୟ ନେଲା ପରେ କଳ୍ପନା ଆସି ବସିଲା ମୋ ପାଖରେ ଏବଂ ମୁଁ ତାକୁ କହୁଥିଲି ଝରଣାର କାହାଣୀ । ମୁଁ ଜାଣି ନଥିଲି, ଶୁଭ୍ରା କେତେବେଳେ ଆସି ଶୁଣୁଥିଲା ଆମ କଥା । ତାର କଣ୍ଠସ୍ୱର ଶୁଣି ମୁଁ ଚମକି ପଡ଼ିଲି । କାରଣ ସେ କହିଲା, 'ଅଜା, ତୁମେ ଚିନ୍ତା କରନାହିଁ । ମୁଁ ମଧ ଏଇ ଝରଣା ଅପାଙ୍କ ଭଳି ନିଜ ଗୋଡ଼ରେ ଛିଡ଼ାହେବି । ମୁଁ ବୋଉକୁ ବି କହିଦେଇଛି, ମୁଁ ଜଣେ ମେଡ଼ିସିନ୍ ସ୍ପେଶାଲିଷ୍ଟ ହେବି ।' ଆତ୍ମବିଶ୍ୱାସର ଦୃଢ଼ ସ୍ୱର ଶୁଭ୍ରା କଣ୍ଠରୁ ଶୁଣି ମୋ ଆଖିରେ ଲୁହ ଭରିଗଲା ।

ସେତେବେଳକୁ ରାତି ପାହି ଆସୁଥିଲା । ଗଛରେ ସକାଳର ଚଢ଼େଇମାନେ ରାବି ଉଠୁଥିଲେ । ଦେଖିଲି, ପୂର୍ବ ଦିଗନ୍ତରେ ଖେଳିଯାଇଛି ଉଷାର ଅରୁଣ ଆଭା । ଏବଂ ସେଇ ମନୋରମ ରକ୍ତିମ ଆଭାରେ ଉଜ୍ଜ୍ୱଳ ଦିଶୁଥିଲା ମୋ ନାତୁଣୀ ଶୁଭ୍ରାର ମୁହଁଟି ।



# ଆତଙ୍କ

ମୋର ମନେ ହେଲା, ଏଇ ନିର୍ଜନ ପରିବେଶରେ ବେଶ୍ ରୋମାଣ୍ଟିକ୍ ଜୀବନଯାପନ କରୁଛି ମୋର ବନ୍ଧୁ ଡାକ୍ତର ସୁରଜିତ୍ । ନ କରିବ ବା କାହିଁକି ? ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡ଼ିଗ୍ରୀ ହାସଲ କରି ମଧ ଆମେ ଯେତେବେଳେ ଘୂରିବୁଲୁଛୁ ବେକାର ହୋଇ, ସେ ଏମ.ବି.ବି.ଏସ୍ ପାସ୍ କଲା ମାତ୍ରକେ ଚାକିରୀଟିଏ ପାଇଗଲା ଏଇ ମିସ୍‌ନାରୀରେ । ସୁରଜିତ୍ ଭାଗ୍ୟବାନ ନିଶ୍ଚୟ ।

ସୁରଜିତ୍‌ଠାରୁ ଅନୁରୋଧର ଚିଠିଟିଏ ପାଇଥିଲି, ତା' ପାଖକୁ ବୁଲିଯିବା ପାଇଁ । ଭାବିଲି ମୋର ଯେତେବେଳେ କର୍ମହୀନ ଜୀବନର ଅଫୁରନ୍ତ ଅବକାଶ, କିଛିଦିନ ବନ୍ଧୁଙ୍କର ଆତିଥ୍ୟ ନେଲେ କ୍ଷତି କ'ଣ ? ସୁରଜିତ୍ ପାଖରେ ପହଞ୍ଚି ଦେଖିଲି, ଏଠାକାର ପ୍ରାକୃତିକ ଶୋଭା ବେଶ୍ ମନୋରମ । ଶାଳ ମହୁଲର ସବୁଜ ସୁନ୍ଦର ଅରଣ୍ୟର ଶାନ୍ତ ପରିବେଶ । ସହରର ଆବର୍ଜନା ଆଉ କୋଳାହଳ ଠାରୁ ଖୁବ୍ ଦୂର ଏକପ୍ରକାର ଜନମାନବଶୂନ୍ୟ ନିର୍ଜନ ଅରଣ୍ୟ ଭିତରେ ଛୋଟ ବସ୍ତିଟିଏ । ବସ ଚଳାଚଳ କରୁଥିବା ପ୍ରଧାନ ସଡ଼କ ପାଖରେ ମିସ୍‌ନାରୀ ଡାକ୍ତରଖାନା । ଭାବିଲି, ଏଇ ଜନବିରଳ ଜଙ୍ଗଲରେ ବନ୍ଧୁ ସୁରଜିତ୍‌ର ଜୀବନ ନିଶ୍ଚୟ ଦୁର୍ବିସହ ହୋଇ ଉଠୁଥିବ । ଏଠି ଲୋକ କାହାନ୍ତି ? ରୋଗୀ କାହାନ୍ତି ? ସହରର ଜନଗହଳି ଭିତରେ ଗଢ଼ି ଉଠିଥିବା ସୁରଜିତ୍ ପାଇଁ ଏହା ଏକ ନିର୍ଜନ ଦ୍ୱୀପରେ ନିର୍ବାସନ ନିଶ୍ଚୟ । କିନ୍ତୁ ସେଦିନ ସେଇ ଅରଣ୍ୟର ଶାନ୍ତ ସବୁଜ ବନଭୂଇଁକୁ ଉଇଁଲା ସୂର୍ଯ୍ୟର ସୁନେଲି କିରଣ ଛୁଇଁଲା ବେଳକୁ, ତାର ଭ୍ରମଣରେ ଜଣେ ସୁନ୍ଦରୀ ତରୁଣୀର ଆବିର୍ଭାବ ଦେଖି ମନରେ ରୋମାଞ୍ଚ ଖେଳିଗଲା । ବୋଧହୁଏ, ସେଇଟା ଥିଲା ନୂଆ ବସନ୍ତର ମଧୁର ଉଷାର ସମୟ । ତେଣୁ ସମଗ୍ର ବଣ ରାଜ୍ୟରେ ଘଟିଥିଲା, ଆମ୍ବ ବଉଳ ଆଉ ରକ୍ତ ପଳାଶର ବିପୁଳ ସମାରୋହ ।

ଭ୍ରମଣରେ ଆମେ ଦୁହେଁ ତା'ପିଇ ବିଶ୍ୱ ପ୍ରକୃତିର ସେଇ ଅପୂର୍ବ ସୌନ୍ଦର୍ଯ୍ୟ ଉପଭୋଗ କରୁଥିଲୁ । ମହୁଲ ଗଛରୁ ଝରି ପଡୁଥିଲା ମହୁଲ ଫୁଲ । ଭାସି ଆସୁଥିଲା ମହୁଲ ଫୁଲର ମିଠା ଗନ୍ଧ ସଙ୍ଗେ ଆମ୍ବ ବଉଳର ସୁବାସ । ଏଭଳି ମଧୁମୟ ପରିବେଶରେ ଋଗ୍‌ବେଦର ସେଇ ସୂକ୍ତଟି ମନେ ପଡ଼ିଗଲା : ''ଓଁ ନକ୍ତମୁତୋଷସୋ ମଧୁମଦ୍ ପାର୍ଥିବଂ ରଜଃ । ମଧୁ ଦ୍ୟୌରସ୍ତୁ ନଃ ପିତା ।। ମଧୁମାନ୍ନୋ ବନସ୍ପତି ମଧୁମାନ୍ ଅସ୍ତୁ ସୂର୍ଯ୍ୟଃ । ମାଧ୍ୱୀର୍ଗାବୋ ଭବନ୍ତୁ ନଃ ।। ଓଁ ମଧୁ ଓଁ ମଧୁ ଓଁ ମଧୁ ।'' ଅର୍ଥାତ୍ ବାୟୁ ମଧୁମୟ ହୋଇ ପ୍ରବାହିତ ହେଉଛି । ନଦୀ ସବୁ ମଧୁ କ୍ଷରଣ କରୁଛନ୍ତି । ଔଷଧି ସମୂହ ଆମପାଇଁ ମଧୁମୟ

ହେଉ । ରାତ୍ରି ଓ ଉଷା ମଧୁମୟ ହେଉ । ମଧୁମୟ ହେଉ ଏ ପୃଥିବୀର ମାଟି । ସ୍ୱର୍ଗଲୋକ ଓ ପିତୃଲୋକ ମଧୁମୟ ହେଉ । ବନସ୍ପତି ମଧୁମୟ ହେଉ । ସୂର୍ଯ୍ୟ ମଧୁମୟ ହେଉ । ଗୋସମୂହ ଆମପାଇଁ ମଧୁମୟ ହେଉ ।

ସୂକ୍ତଟିର ଭାବାର୍ଥଟି ସୁରଜିତ୍‌କୁ ବୁଝାଉଥିବା ବେଳେ ଡ୍ରଇଂରୁମର ଜାଲିକବାଟ ଖୋଲି ପଶି ଆସିଥିଲା, ସେଇ ରୂପସୀ ମହିଳା । ଅଯତ୍ନରେ ଉଡୁଥିଲା ମଥାର ଅବିନ୍ୟସ୍ତ କେଶରାଶି । ରଙ୍ଗିନ ଛିଟ ଶାଢ଼ିର ଅଞ୍ଚଳ ପବନରେ ଇତସ୍ତତଃ । ସେଥିପାଇଁ ତା'ର ଭ୍ରୂକ୍ଷେପ ବି ନଥିଲା । କୋଳରେ ତା'ର ଶୋଭା ପାଉଥିଲା ସଦ୍ୟଫୁଟା ପଦ୍ମଫୁଲ ପରି କୋମଳ ସୁନ୍ଦର ଶିଶୁଟିଏ । ଛ'ସାତ ମାସର ହେବ । ଆକୁଳ କଣ୍ଠରେ 'ଡାକ୍ତର ସାବ୍, ଡାକ୍ତର ସାବ୍' କହୁଁ କହୁଁ ମହିଳାଟି ତଳ କାର୍ପେଟ୍ ଉପରେ ଶୁଆଇଦେଲା କୋଳର ଶିଶୁଟିକୁ । ଶିଶୁଟିର ଅବସ୍ଥା ଦେଖି ମୁଁ ଚମକି ପଡ଼ିଲି । ହାତ ଗୋଡ଼ ସହିତ ତା'ର ସମସ୍ତ ଦେହ ଅସ୍ୱାଭାବିକ ଭାବେ ଥରୁଥିଲା ।

ଶିଶୁଟିର ଏଭଳି ଅବସ୍ଥା ଦେଖି ଅଧାଖିଆ ଚା କପଟିକୁ ଥୋଇଦେଇ ଉଠିଗଲା କର୍ତ୍ତବ୍ୟ ସଚେତନ ଡାକ୍ତର ସୁରଜିତ୍ । ଯଥାଶୀଘ୍ର, ଇଂଜେକ୍‌ସନଟିଏ ସେ ଫୋଡ଼ିଦେଲା ଶିଶୁଟିର ପିଚାରେ ଏବଂ ତା'ପରେ ଶିଶୁଟିର ଜନନୀ, ସୁରଜିତ୍ ଆଉ ମୁଁ ତିନିଜଣଯାକ ଚାହିଁ ରହିଲୁ ଶିଶୁଟିକୁ । ଇଞ୍ଜେକ୍‌ସନର ପ୍ରଭାବରେ ଧୀରେ ଧୀରେ ଶିଶୁଟିର ହାତଗୋଡ଼ ଥରିବା ବନ୍ଦ ହେଇଗଲା । ଗଭୀର ସମୁଦ୍ରରେ ଶାନ୍ତ ତରଙ୍ଗ ଭଳି ନିସ୍ତେଜ ହୋଇ ଶୋଇଗଲା ଶିଶୁଟି । ଶିଶୁର ସ୍ୱାଭାବିକ ଅବସ୍ଥା ଦେଖି କ୍ରମ ପ୍ରଶମିତ ହେଲା ତରୁଣୀର ମନର ଉଦ୍‌ବେଗ । ଡାକ୍ତରଙ୍କୁ ପଚାରି ସେ କୋଳକୁ ଟେକିନେଲା ଶିଶୁଟିକୁ । ତା'ପରେ ଡ୍ରଇଂରୁମ୍‌ରୁ ବାହାରି ତା' ବାଟରେ ଚାଲିଗଲା । ମନେ ହେଉଥିଲା ସେ ଏକ ରାଜସ୍ଥାନୀ ସୁନ୍ଦରୀ । ଭୂଗୋଳ ଭୁଲି ଯେପରି ବଣ ଭିତରକୁ ପଶି ଆସିଛି ।

ମୁଁ ଚାହିଁ ରହିଲି ମହିଳାଟିର ଛନ୍ଦମୟ ଚଲାପଥକୁ । ଶାଳ ମହୁଲର ନିବିଡ଼ ଅରଣ୍ୟ ଭିତରେ ସଂପୂର୍ଣ୍ଣ ରୂପେ ସେ ହଜିଯିବା ଯାଏ ମୁଁ ଚାହିଁ ରହିଥିଲି ଅପଲକ ଆଖିରେ ।

ସମ୍ବିତ୍ ଫେରି ପାଇଲି ବନ୍ଧୁ ସୁରଜିତ୍‌ର ଡାକ ଶୁଣି: 'ଏଇ, କ'ଣ ଦେଖୁଛୁ ?' ଟିକିଏ ହସିବାର ଚେଷ୍ଟା କରି ମୋତେ ପ୍ରଶ୍ନ କଲା ସୁରଜିତ୍ । ସେତେବେଳକୁ ସଂପୂର୍ଣ୍ଣ ରୂପେ ଥଣ୍ଡା ହୋଇ ଯାଇଥିଲା ମୋ ଚା । ମୋ ମୁହଁରେ ଜଳିଯାଇଥିଲା ସିଗାରେଟ୍ ଖଣ୍ଡିକ ମଧ୍ୟ । ଆଉ ଗୋଟିଏ ସିଗାରେଟ୍‌ରେ ନିଆଁ ଲଗେଇ ମୁଁ ଚାହିଁଲି ସୁରଜିତ୍‌ର ମୁହଁକୁ । ତା' ମୁହଁରୁ କିଛି ପାଠୋଦ୍ଧାର କରିବାର ଚେଷ୍ଟା କରୁ କରୁ ମୋ ମୁହଁରୁ ମନ୍ତବ୍ୟଟି ବାହାରି ପଡ଼ିଲା: 'ବାଃ ତୋର ଜୀବନ ବେଶ୍ ରୋମାଣ୍ଟିକ୍ ମନେ ହେଉଛି ।'

ମୋର ମନ୍ତବ୍ୟ ଶୁଣି ହସିଥିଲା ସୁରଜିତ୍ । ସେ ଏକ ଅଦ୍ଭୁତ ଧରଣର କରୁଣ

ହସ । ତା'ପରେ ଶାଳ-ପଳାଶର ଅରଣ୍ୟକୁ ଦୃଷ୍ଟି ମେଲିଦେଇ ସୁରଜିତ୍ ବିଷଣ୍ଣ କଣ୍ଠରେ କହିଥିଲା, 'ହଁ, ଆପାତତଃ ତୋ ପାଇଁ ରୋମାଣ୍ଟିକ୍ ମନେ ହେବାଟା କିଛି ବିଚିତ୍ର ନୁହେଁ । କିନ୍ତୁ... ।' ଗୋଟିଏ ଦୀର୍ଘଶ୍ୱାସ ବାହାରିଲା ତା' ଛାତିରୁ । - 'କିନ୍ତୁ ?' ପ୍ରଶ୍ନ କରି ମୁଁ ଚାହିଁଲି ତା'ର ଗମ୍ଭୀର ବିଷର୍ଣ୍ଣ ମୁହଁକୁ । କ୍ଷଣକ ପରେ ପୁଣି ପଚାରିଲି :

'ଏଇ ମହିଳା ଜଣକ କ'ଣ ସୁନ୍ଦରୀ ନୁହନ୍ତି ?'

'ସୁନ୍ଦରୀ ! ସତରେ ମୁନ୍ନାବାଈ ଅପୂର୍ବ ସୁନ୍ଦରୀ । ତା'ର ମନର ସାରଲ୍ୟ ତା'କୁ ଅଧିକ ସୁନ୍ଦରୀ କରିଛି । ହୁଏତ ଜୀବନରେ ଖୁବ୍ ଅଳ୍ପ ନାରୀ ମୋ' ଆଖିରେ ପଡ଼ିଥିବେ, ଯେ ଏଭଳି ଅସାମାନ୍ୟ ରୂପର ଅଧିକାରିଣୀ ।' ବିଷୟଟିକୁ ହାଲୁକା କରିବା ପାଇଁ ମୁଁ କହିଲି, 'ବନ୍ଧୁ, ମୁଁ ତ ସେଇଆ ଭାବୁଥିଲି । ତାଛଡ଼ା ଏ ବଣ ଜଙ୍ଗଲରେ ନିଛାଟିଆ ତୋର ଏଇ ବଙ୍ଗଳା । କେଡ଼େ ନିର୍ଭୟ, ନିଃସଂକୋଚରେ ମହିଳାଟି ଧାଇଁ ଆସିଲା ତୋ'ପାଖକୁ... ।'

ମୋ କଥା ସଂପୂର୍ଣ୍ଣ କରିବାକୁ ନଦେଇ ମୋତେ କହିଲା ସୁରଜିତ: 'ଜୀବନର କେଉଁ ମୁହୂର୍ତ୍ତରେ ଜଣେ ମା' ବ୍ୟାକୁଳ ହୋଇ ଜଣେ ଡାକ୍ତରଙ୍କ ପାଖକୁ ଧାଇଁ ଆସେ, ସେକଥା ବୋଧହୁଏ ତୋତେ ଜଣା ନାହିଁ ।'

ସୁରଜିତ୍‌ର ମନ୍ତବ୍ୟରେ ମୁଁ ନୀରବ ହେଲି । ମୁଁ ଅନୁଭବ କଲି, ସୁରଜିତ ଆମଭଳି ଜଣେ ଶିକ୍ଷିତ ବେକାର ନୁହେଁ ଯେ ଇଆମଛଡ଼ା କଥା କହିବ । ସେ ଏବେ ଜଣେ ଦାୟିତ୍ୱଶୀଳ ଚିକିତ୍ସକ । ମୁଁ ଲଜ୍ଜିତ ହେଲି । ସୁରଜିତର କଥାରେ ମୋର ମନେ ପଡ଼ିଲା, ସେଇ ରୂପସୀ ମୁନ୍ନାବାଈ କୋଳର ସେଇ ପଦ୍ମଫୁଲ ପରି ଶିଶୁଟିର କଥା । ଓଃ କି କରୁଣ ଦୃଶ୍ୟ ! ସୁରଜିତକୁ ମୁଁ ପଚାରିଲି 'ଶିଶୁଟି କ'ଣ ଜନ୍ମରୁ ଏଇପରି ?'

'ହଁ, ଜନ୍ମରୁ ।' ଉତ୍ତର ଦେଲା ସୁରଜିତ ଗମ୍ଭୀର କଣ୍ଠରେ । 'ଜନ୍ମରୁ ? କିନ୍ତୁ କାହିଁକି ? କିଛି କାରଣ ଆବିଷ୍କାର କରିପାରିଛୁ ସୁରଜିତ ?' ମୁଁ ଅଧୀର ସ୍ୱରରେ ପଚାରିଲି ।

'ତାର କାରଣ ଜାଣିଲେ ହୁଏତ ତୋ' କଳ୍ପନାର ରଙ୍ଗିନ ଜଗତଟି ମୁହୂର୍ତ୍ତକ ମଧ୍ୟରେ ଉଭେଇଯିବ । ତୁ କ'ଣ ବିଶ୍ୱାସ କରିପାରିବୁ, ଜଣେ ମଣିଷର ମନ କେତେ କଠୋର ହୋଇପାରେ ।' ବାସ୍ତବରେ ସେଦିନ ମୋତେ ବିସ୍ମିତ କରିଦେଇଥିଲା ଡାକ୍ତର ସୁରଜିତ । ସେଇ ନିରୀହ ନିରପରାଧ ଶିଶୁଟିର ଦୂରବସ୍ଥାର କାରଣ କହିବାକୁ ଯାଇ ସୁରଜିତ କହିଥିଲା ପ୍ରାୟ ଦେଢ଼ବର୍ଷ ତଳର କଥା । 'ସେଇଟା ବୋଧହୁଏ ଅକ୍ଟୋବର ମାସ । ସଞ୍ଜବେଳୁ ଲାଗିଥିଲା ଭୟଙ୍କର ଝଡ଼ବର୍ଷା । ପ୍ରବଳ ଶୀତ ଯୋଗୁଁ କମ୍ବଳ ଘୋଡ଼େଇ ମୁଁ ମୋ ଶେଯରେ ଆରାମରେ ଶୋଇଥାଏ । ରାତି କେତେହେବ କିଏ ଜାଣେ । ବାହାରେ କାହାର ଡାକ ଶୁଣି ମୋର ନିଦ ଭାଙ୍ଗିଗଲା । କବାଟ ଖୋଲିଦେଲି । ଝଡ଼ ବର୍ଷା ଭିତରେ ମୋ ଘର

ଭିତରକୁ ପଶିଆସିଲେ ଜଣେ ନାରୀ । ମୁଁ ମୋର ନିଜ ଆଖିକି ବିଶ୍ୱାସ କରିପାରିଲି ନାହିଁ । ମହିଳାଟି ସଂପୂର୍ଣ୍ଣ ଏକୁଟିଆ । ଝଡ଼ପବନରେ ମୋ ଘରର ଆଲୁଅ ଲିଭିଯାଇଥିଲା । ଏଣୁ ମୁଁ ଲ୍ୟାମ୍ପ ଜାଳିଲି । ଆଲୁଅଟି ଜାଳି କିନ୍ତୁ ମୁଁ ଲଜ୍ଜିତ ହେଲି । କାରଣ ରମଣୀର ସର୍ବାଙ୍ଗ ବର୍ଷାରେ ତିନ୍ତିଯାଇଥିଲା । ଓଦାଲୁଗା ଲାଗି ଯାଇଥିଲା ମହିଳାଟିର ଦେହରେ । ସେଇ ଓଦାଲୁଗା ଭିତରୁ ଶ୍ୱେତପଦ୍ମଭଳି ଫୁଟି ଉଠୁଥିଲା, ସେଇ କମନୀୟ ଦେହର ଶୋଭା । ମୋର ମନେହେଲା, ଜୀବନ୍ତ ମଣିଷ ନୁହେଁ, କୌଣସି ଇଟାଲୀୟ ଶିଳ୍ପୀହାତର ମାର୍ବଲ ମୂର୍ତ୍ତିଟିଏ ମୁଁ ଦେଖୁଛି ।

'ନିର୍ଜନ ଘରେ ବର୍ଷାମୁଖର ରାତି । ଘରେ ଆମେ ଦୁଇଜଣ । କେତୋଟି ମୁହୂର୍ତ୍ତ ବିତିଗଲା ଦୁଃସହ ନୀରବତା ମଧ୍ୟରେ । ମନର ସଂକୋଚ ଏଡ଼େଇ ସେ ମୋତେ ଅନୁରୋଧ କଲା ତାଙ୍କ ଘରକୁ ଯିବାକୁ । କହିଲା, ଘରେ ପାଞ୍ଚ-ଛ' ବର୍ଷର ଝିଅଟିଏ, ନାଁ ସ୍ୱପ୍ନା । ସେ ଶଯ୍ୟାଶାୟୀ, ମରଣାପନ୍ନ । ସ୍ୱାମୀ କିଷନଲାଲଜୀ ଘରେ ନାହାନ୍ତି । ମହୁଲ ଆଦି ସଂଗ୍ରହ କରିବା ଉଦ୍ଦେଶ୍ୟରେ ଯାଇଛନ୍ତି କେଉଁ ଦୂର ଗାଁକୁ ।

'କିଷନଲାଲଜୀ ଘରେ ନାହାନ୍ତି । ଏତେ ରାତିରେ କେମିତି ଯିବି ତାଙ୍କ ଘରକୁ ? ତେଣୁ ମୁଁ କହିଲି, ବାଈ, ମୁଁ କାଲି ସକାଳେ ଯିବି । କିନ୍ତୁ ମୋ କଥା ଶୁଣି କାନ୍ଦିପକାଇଲା ମୁନ୍ନାବାଈ । କହିଲା, ଡାକ୍ତର ସାବ୍, ସକାଳେ ମୋ ଝିଅ ଆଉ ଜୀବନରେ ନଥିବ । ଆପଣ ବିଳମ୍ବ ନ କରି ଶୀଘ୍ର ଚାଲନ୍ତୁ । ସନ୍ତାନର ସଂକଟରେ ଚରମ ଅବସ୍ଥାରେ ମାତୃମନରୁ ଉଭେଇଯାଏ ସମସ୍ତ ଲାଜ-ସଂକୋଚ ଭୟ-ଭ୍ରାନ୍ତି । ଭୟଙ୍କର ଝଡ଼ବର୍ଷାକୁ ବେଖାତିର କରି ସେ ଏକୁଟିଆ ଧାଇଁଆସିଲା ମୋ ପାଖକୁ । ତେଣୁ ସେଇ ରାତିରେ ମୁନ୍ନାବାଈ ଘରକୁ ନଯାଇ ରହି ପାରିଲି ନାହିଁ ।

'ଝିପିଝିପି ବର୍ଷା ପଡୁଥିଲା । ନିର୍ଜନ ବନପଥ । ମୁଁ ମୁନ୍ନାବାଈକୁ ଅନୁସରଣ କଲି । ମୋର ମନେହେଲା, ସତେ ଯେମିତି ଦେହହୀନ ଏକ ଆତ୍ମାକୁ ମୁଁ ଅନୁସରଣ କରୁଛି । ସମ୍ବିତ ଫେରିପାଇଲି ତା ଘର ନିକଟରେ ପହଞ୍ଚି । ଅସହ୍ୟ ଯନ୍ତ୍ରଣାର କରୁଣ ଚିତ୍କାର ଶୁଭୁଥିଲା, ଘର ଭିତରୁ । କବାଟ ଫିଟାଇ ମୁନ୍ନାବାଈ କହିଲା, ''ଆଇୟେ ଡାକ୍ତର ସାବ୍, ମେରୀ ଲଡ଼କୀ ସ୍ୱପ୍ନାକୀ ହାଲତ ଦେଖିଏ ।

'ସେଇ ରଢ଼ ଅଥଚ ବାସ୍ତବ ଦୃଶ୍ୟ, ପୁଣି ନିଦାରୁଣ ଯନ୍ତ୍ରଣାର ଛାଟିପଟା ଶବ୍ଦରେ ମୁହୂର୍ତ୍ତକ ଭିତରେ ଭାଙ୍ଗି ଚୂରମାର ହୋଇଗଲା ମୋର ସମ୍ମୋହିତ କଳ୍ପନାର ଜଗତ । ଦେଖିଲି ଝିଅଟିଏ ବେକ ପଛପଟେ ମସ୍ତବଡ଼ ବଥଟିଏ ହୋଇଛି । ଅସହ୍ୟ ଯନ୍ତ୍ରଣାରେ ଛଟପଟ ହେଉଥାଏ ସେଇ ଝିଅଟି । ଶୋଇବା ପାଇଁ ରୋଗୀକୁ ଗୋଟାଏ ଇଂଜେକ୍ସନ ଦେଇ ମୁନ୍ନାବାଈକୁ ମୁଁ କହିଲି, ବାଈଜୀ, ବଥଟିକୁ ଅପରେସନ କରିବାକୁ ପଡ଼ିବ, କିନ୍ତୁ

ଆମର ଏଇ ଛୋଟ ଦବାଇଖାନାରେ ଏପରି ଅପରେସନ କରିବା ସମ୍ଭବ ନୁହେଁ । ଝିଅକୁ ସହରର ବଡ଼ ଡାକ୍ତରଖାନା ନେବାକୁ ପଡ଼ିବ । କିଷନଲାଲଜୀ ଫେରିଲେ, ତାଙ୍କୁ ପଠାଇଦେବେ ମୋ ପାଖକୁ ।

'ମୋ କଥା ଶୁଣି ଆହତ ହରିଣୀ ଭଳି ସେ ମୋତେ ଚାହିଁଲା । ଡ଼ିବି ଆଲୁଅରେ ମୁଁ ଦେଖିଲି, ମୁନ୍ନାବାଈର ଆଖିରୁ ଝରିପଡୁଥିଲା ଲୁହଧାର । ତା'ପରେ ସେ ଦେହରୁ କେତେକ ଅଳଙ୍କାର ଖୋଲି ଥୋଇଦେଲା ମୋ ପାଦ ପାଖରେ । ତା'ପରେ ସେ ଯାହା ବର୍ଣ୍ଣନା କଲା: ଶୁଣି ବିସ୍ମିତ ନହୋଇ ରହିପାରିଲି ନାହିଁ । ସେ କହିଲା, ଆଜିକୁ ସପ୍ତାହେ ହେବ ମୁଁ ସ୍ୱପ୍ନାର ବାପାକୁ ଅନୁରୋଧ କରି ଥକିଗଲିଣି । କହିଲି, ଝିଅକୁ ସହରର ବଡ଼ ଦବାଇଖାନାକୁ ଘେନିଯାଅ । ନହେଲେ ଏଇ ମିଶନ ଡାକ୍ତରବାବୁଙ୍କୁ ଡାକି ଇଲାଜ କରାଅ, କିନ୍ତୁ ସେ ପଥର ପାଲଟି ଯାଇଛନ୍ତି । ତାଙ୍କର ସେଇ ଗୋଟିଏ ଜବାବ, ସ୍ୱପ୍ନା ଲଡ଼କା ନୁହେଁ, ଏକ ମାମୁଲି ଲଡ଼କୀ । ଲଡ଼କୀକେ ଲିୟେ ରୂପିୟା କେଁୟୋ ବରବାଦ ହୋଗା ।

'ଅଧୀର ଆବେଗରେ ସେ ପୁଣି ଅନୁରୋଧ କଲା, ଡାକ୍ତର ସାବ୍, ଲିଜିୟେ ୟେ ଜେୱର୍ । ସ୍ୱପ୍ନାକୋ ଲେକର ଆପ ସହର ଯାଇୟେ । ଉସ୍‌କୀ ଜାନ୍ ବଚାଇୟେ ।

'ମୁନ୍ନାବାଈର କରୁଣ ନିବେଦନ ମୁଁ ଶୁଣିଲି । କିନ୍ତୁ ମୁଁ ମନରେ ସାହସ ସଞ୍ଚୟ କରିପାରିଲି ନାହିଁ । କିଷନଲାଲଜୀଙ୍କ ଅନୁପସ୍ଥିତିରେ ତାଙ୍କ ସ୍ତ୍ରୀର ସୁନାଅଳଙ୍କାର ଆଉ ଝିଅକୁ ଘେନିଯିବାକୁ ମୁଁ ସମ୍ମତ ହୋଇ ପାରିଲି ନାହିଁ । କାରଣ, ଏ ଯୁଗରେ କିଏ ବିଶ୍ୱାସ କରିବ ମୋର ସତ୍ ଉଦ୍ଦେଶ୍ୟକୁ ? ତା'ଛଡ଼ା କିଏ ଜାଣେ କିଷନଲାଲଜୀ ମୋ କାମକୁ କିପରି ଭାବରେ ଗ୍ରହଣ କରିବେ ? ତେଣୁ ମୁନ୍ନାବାଈକୁ ମୁଁ କହିଥିଲି, ବାଈଜୀ, ବ୍ୟସ୍ତ ହେବେନାହିଁ । କିଷନଲାଲଜୀ ଫେରିଲେ ମୋ ପାଖକୁ ପଠେଇଦେବେ । ମୁଁ ତାଙ୍କୁ ବୁଝେଇ ସୁଝେଇ ଅପରେସନ ପାଇଁ ପଠେଇଦେବି ସହରକୁ ।

'କିନ୍ତୁ ସ୍ୱାମୀଙ୍କୁ ଭଲଭାବେ ଚିହ୍ନିଥିଲା ମୁନ୍ନାବାଈ । କିଷନଲାଲ ଫେରିଲା ପରେ ମୁଁ ଅବଶ୍ୟ ତାଙ୍କୁ ଅନୁରୋଧ କରିଥିଲି । ହେଲେ, ତାଙ୍କର ସେଇ ଗୋଟିଏ ଜବାବ୍, ଏକ ଲଡ଼କୀକେ ଲିୟେ ପୟସା ବରବାଦ୍ କରନେକୋ ମୈଁ ତୟାର ନାହିଁ । ବରଂ ସେ ମୋତେ ବୁଝେଇବାକୁ ଚେଷ୍ଟା କରିଥିଲେ 'ଏକ ମାମୁଲି ଲଡ଼କୀ । ୱହି ଜୀନେ ୟା ମରନେ ମେ ଫରକ କୁଛ ନେହିଁ । ଜୀନେସେ ୱହି ମେରେ ଲିଏ ଏକ ଭାରି ବୋଝ ବନେଗୀ । ଉସକୀ ସାଦିକେ ଲିୟେ କମ୍‌ସେ କମ୍ ତୋ ପଚାଶ ହଜାର ରୂପୟେ କି ଜରୁରତ୍ ପଡ଼େଗା । ହାମାରା ବିଜ୍‌ନେସମେ ନୁକସାନ ହୁଆ । ଇସଲିୟେ ସହର ଛୋଡ଼କେ ମୈ ଇଧର ଗାଓଁକୋ ଚଲାଆୟା ।

'ସୁତରାଂ ଅଳ୍ପ କିଛିଦିନ ଭିତରେ ଶୃଙ୍ଖଳା ଭୂଇଁରେ କଉମାଛ ଭଳି ନିଦାରୁଣ ଯନ୍ତ୍ରଣାରେ ଛଟ୍‌ପଟ ହେଇ ଚାଲିଗଲା ଝିଅଟିର ଜୀବନ । ମୁନ୍ନାବାଈ ଅସହାୟ ହୋଇ ଆଖି ଆଗରେ ଦେଖିଥିଲା ସେଇ ଝିଅଟିର ଅସହ୍ୟ ମୃତ୍ୟୁ ଯନ୍ତ୍ରଣା ।

'ତା'ପରେ ବିତିଯାଇଥିଲା କେତୋଟି ମାସ । ହଠାତ୍ ଦିନେ କିଷନଲାଇଜୀଙ୍କର ଆବିର୍ଭାବ ଘଟିଲା ଆମ ଡାକ୍ତରଖାନାରେ । ସେ ମୋତେ ଅନୁରୋଧ କଲେ ତାଙ୍କ ଘରକୁ ଯିବାପାଇଁ । ମୋ ବିଚାରରେ, କିଷନଲାଲ ଗୋଟିଏ ନିରୀହା ଝିଅର ହତ୍ୟାକାରୀ ବ୍ୟତୀତ ଆଉ କିଛି ନୁହନ୍ତି । ମୋ ମନରେ ତାଙ୍କ ବିରୁଦ୍ଧରେ ଜମିଥିଲା ନିଦାରୁଣ ଘୃଣା । ମାତ୍ର ଯେତେବେଳେ ତାଙ୍କ ମୁହଁରୁ ଶୁଣିଲି ଯେ ଖୋଦ୍ ମୁନ୍ନାବାଈ ଅସୁସ୍ଥ, ମୁଁ ତାଙ୍କ ଘରକୁ ନଯାଇ ରହିପାରିଲି ନାହିଁ । ଯାଇ ଦେଖିଲି, ମୁନ୍ନାବାଈ ପାଞ୍ଚ ଛ ମାସର ଗର୍ଭବତୀ । ଗର୍ଭବତୀ ହେଲାପରଠାରୁ ସେଇ ଅଦ୍ଭୁତ ରୋଗର ଲକ୍ଷଣ ତା'ପରେ ଦେଖା ଦେଇଥିଲା । ରୋଗଟି ହେଲା, ମଝିରେ ମଝିରେ ମୁନ୍ନାବାଈର ଗୋଡ଼-ହାତ ଥରେ ବରଡ଼ା ପତ୍ରଭଳି । ତା'ପରଠାରୁ ମୁନ୍ନାବାଈର ଚିକିତ୍ସା ଉଦ୍ଦେଶ୍ୟରେ ମୋତେ ବାରମ୍ବାର ଯିବାକୁ ପଡ଼ିଲା । କିନ୍ତୁ ମୁଁ ନିର୍ଣ୍ଣୟ କରିପାରିଲି ନାହିଁ ସେଇ ଅଦ୍ଭୁତ ରୋଗର କାରଣ । ଦିନେ ଏକାନ୍ତରେ ମୁନ୍ନାବାଈ ମୋତେ ପଚାରିଥିଲା, ଡାକ୍ତର ସାବ୍, ଯେ ବଚା ଆନେ ବାଲା ହୈ । ଆପ ବତାଇଯେ ୱହ ଲଡ଼କା ହୈ ୟା ଲଡ଼କୀ ?

'ମୁନ୍ନାବାଈ ମୁହଁରୁ ସେ ପ୍ରକାର ପ୍ରଶ୍ନ ଶୁଣି ମୁଁ ପଡ଼ିଗଲି ଆଉ ଏକ ବିଷମ ସମସ୍ୟାରେ । କିନ୍ତୁ ଏଥର ମୁନ୍ନାବାଈର ରୋଗର କାରଣ ମୋ ଆଗରେ ସ୍ପଷ୍ଟ ହୋଇଗଲା । ରୋଗର ଲକ୍ଷଣ ଦେଖି ମୁଁ ବିଚାରିଲି, ମୁନ୍ନାବାଈର ଗର୍ଭସ୍ଥ ସନ୍ତାନ ଯଦି ପୁଅ ହୁଏ ତାହାହେଲେ ମଙ୍ଗଳ; କିନ୍ତୁ ଯଦି ପୁଣି ଝିଅ ହୁଏ, ତାହାହେଲେ ଭୟଙ୍କର ବିପଦ । କାରଣ ମୁନ୍ନାବାଈ, ମନେପ୍ରାଣେ ବିଶ୍ୱାସ କରୁଥିଲା, ତାର ମୃତ ଝିଅ ସ୍ୱପ୍ନାର ଅତୃପ୍ତ ଆତ୍ମା ପୁଣି ଫେରି ଆସିଛି ତା କୋଳକୁ । କିନ୍ତୁ ସେ ଯଦି ଝିଅ ହୋଇ ଜନ୍ମ ହୁଏ, ତାକୁ କିଷନଲାଲଜୀ ପୁଣି ହତ୍ୟା କରିବ ନିଷ୍ଠୁର ଭାବେ ।

'ମୁନ୍ନାବାଈର ଗର୍ଭସ୍ଥ ସନ୍ତାନ ପୁଅ ହେବ କି ଝିଅ ହେବ ସେ କଥା ଆଗରୁ ଠିକ୍ ଭାବେ କହିବା ସମ୍ଭବ ନଥିଲା ମୋ ପକ୍ଷରେ । ହେଲେ ମୋର ପେସେଣ୍ଟ ମୁନ୍ନାବାଈ ପକ୍ଷରେ ତାହା ଥିଲା ଏକ ଜୀବନ-ମରଣର ସମସ୍ୟା । ତେଣୁ ଏଭଳି ବିଷମ ପରିସ୍ଥିତିରେ ମୋତେ କିଛି ପରିମାଣରେ ଛଳନାର ଆଶ୍ରୟ ନେବାକୁ ପଡ଼ିଲା । ମୁନ୍ନାବାଈକୁ ସାମୟିକ ଆଶ୍ୱାସନା ଦେବା ପାଇଁ ମୁଁ ତାକୁ ଅନେକ ସମୟ ଧରି ପରୀକ୍ଷା କରିଥିଲି । ତା'ପରେ ତାର ମନମୁତାବକ ଉତ୍ତରଟିଏ ଦେଇ କହିଥିଲି, ବାଈଜୀ, ଆନେ ବାଲା ବଚା ମାଲୁମ ହୋତା ହୈ ଲଡ଼କା ହୋଗା । 'ଲଡ଼କା' ମୋର ଉତ୍ତର ଶୁଣି ଆନନ୍ଦରେ ଭରି ଉଠିଥିଲା ମୁନ୍ନାବାଈର ମନ । ସେଇ ଅନାଗତ ଆଶାର ଉଲ୍ଲାସରେ ଉଜ୍ଜ୍ୱଳ ହୋଇ ଉଠିଥିଲା

ମୁନ୍ନାବାଈର ବେଦନାସିକ୍ତ ସୁନ୍ଦର ମୁହଁଟି । ସୁଖର ବିଷୟ, ପୁଅ ହେବାର ଆଶାରେ ମୁନ୍ନାବାଈର ମନରେ ଶାନ୍ତିର ସଞ୍ଚାର ହେବା ସଙ୍ଗେ ସଙ୍ଗେ କମିଯାଇଥିଲା ତା'ର ଦେହ ଥରିବାର ପ୍ରକୋପ ।

'ପ୍ରସବ ଦିନଟି ପାଖେଇ ଆସିବା ସଙ୍ଗେ ସଙ୍ଗେ ପୁଣି ଅସ୍ଥିର ହେଲା ମୁନ୍ନାବାଈର ମନ । ତା'ଠାରୁ ଅଧିକତର ବ୍ୟଗ୍ର ହେଲା ମୋର ମନ ଏକ ଅନାଗତ ଝଡ଼ର ଆଶଙ୍କାରେ । କାରଣ ଚିକିତ୍ସକର ଭବିଷ୍ୟତ୍ ବାଣୀ ଯଦି ସତ୍ୟ ନହୁଏ, ତା'ର ପରିଣାମ ହେବ କି ଭୟଙ୍କର, ସେ କଥା ଚିନ୍ତା କରି ଶଙ୍କିତ ହେଉଥିଲା ମୋର ମନ । ହୁଏତ ଭାରସାମ୍ୟ ହରାଇ ବସିବ ମୁନ୍ନାବାଈର ଆଶାହତ ମନ ଏବଂ ମୁନ୍ନାବାଈ ପାଗଳିନୀ ହେବା କିଛି ବିଚିତ୍ର ନୁହେଁ । ସୁତରାଂ ଭଗବାନଙ୍କ ନିକଟରେ ମୁନ୍ନାବାଈ ପାଇଁ ପୁତ୍ରକାମନା କରିବା ବ୍ୟତୀତ ମୋର ଅନ୍ୟ କିଛି ଉପାୟ ନଥିଲା ।

କିନ୍ତୁ ଯାହାହେଉ, ଭଗବାନ ମୋର ମାନ ରକ୍ଷା କରିଥିଲେ । ଜନ୍ମ ହେଲା ସେଇ ପୁଅଟି । ମୁନ୍ନାବାଈର ଜୀବନ ରହିଗଲା । ଛୁଆଟିକୁ ଦେଖି କ୍ରମେ ମୁନ୍ନାବାଈ ଆରୋଗ୍ୟ ଲାଭ କଲା । ଥରିବା ରୋଗଟି ତାର ଅପସରି ଗଲା । ଆଉ ସେ ମନେ ପ୍ରାଣେ ମୋତେ ବସାଇଦେଲା ଭଗବାନଙ୍କ ଆସନରେ । ଆଉ ନିଷ୍ଠୁର, କୃପଣ କିଷନ୍‌ଲାଲଜୀ ଦୁଇହାତରେ ଦାନ ଖେରାତ୍ କରିବାକୁ ଲାଗିଲେ ଖୁସି ମନରେ । କିନ୍ତୁ ସେଇ ଗର୍ଭଅବସ୍ଥାରୁ ହିଁ ମାତୃମନର ଆତଙ୍କ ସଂଚରିତ ହୋଇ ଯାଇଥିଲା ଶିଶୁଟିର ଦେହକୁ । ତେଣୁ ଶିଶୁଟିର ଏପରି ଦୁରବସ୍ଥା ।'

ଏତକ ବର୍ଣ୍ଣନା କରି ନୀରବ ରହିଲା ଡାକ୍ତର ସୁରଜିତ ।

ସେଇ ପଦ୍ମଫୁଲ ପରି ସୁନ୍ଦର ଅଥଚ ରୋଗାକ୍ରାନ୍ତ ଶିଶୁଟିର ରୂପ ଭାସିବାକୁ ଲାଗିଲା ଆଖି ଆଗରେ । କିଷନ୍‌ଲାଲଜୀଙ୍କ ନିଷ୍ଠୁରତାର କଥା ପାସୋରି ଆମେ ଦୁହେଁ ଏକାତ୍ମ ହୋଇ ଯାଇଥିଲୁଁ ମୁନ୍ନାବାଈ ଏବଂ ତାର ରୁଗ୍‌ଣ ପୁତ୍ରସନ୍ତାନର ମଙ୍ଗଳ କାମନାରେ । ଆଖି ବୁଜି ନୀରବରେ ବସିଥିଲା ସୁରଜିତ୍ । ମୁଁ ମନେମନେ ପ୍ରାର୍ଥନା କରିବାକୁ ଲାଗିଲି, 'ହେ ଭଗବାନ, ଏ ରୋଗରୁ ମୁକ୍ତ କର ଏଇ ନିରୀହ ନିଷ୍ପାପ ଶିଶୁଟିକୁ ।'

ମୋ ଆଖିରେ ଭାସିଉଠିଲା କୋଳରେ ଶିଶୁଟିଏ ଧରିଥିବା ମୋଡ଼େନାଙ୍କ କମନୀୟ ମାତୃମୂର୍ତ୍ତି ।



# ଆମ ଗାଁ ଝିଅ ଚମ୍ପା

ନୂଆ ବଦଳି ହୋଇ ମୁଁ ଆସିଥାଏ ଏଇ ସହରକୁ । ସେଦିନ ରବିବାର । କଲିଙ୍ଗବେଲ୍ ବାଜିଲା । ମୁଁ ଦୁଆର ଖୋଲି ଦେଖିଲି, ଠିଆହୋଇଥିଲେ ଜଣେ ଅପରିଚିତ ବ୍ୟକ୍ତି ।

କିଏ ? କାହାସଙ୍ଗେ ଦେଖା କରିବାକୁ ଚାହାନ୍ତି ? ଇତ୍ୟାଦି ପ୍ରଶ୍ନବାଣରେ ଆଗନ୍ତୁକଟିକୁ ମୁଁ ବେଶ୍ ବିବ୍ରତ କରିପକାଇଲି ।

ଜଜ୍ ସାହେବଙ୍କ ଚିଠିପାଇ, ତାଙ୍କୁ ଦର୍ଶନ କରିବାର ଅଭିଳାଷ ନେଇ ମୁଁ ଆସିଛି । ଆଗନ୍ତୁକ ମୁହଁରୁ ନାଟକୀୟ ସଂଳାପ ଶୁଣି ମୁଁ ତାକୁ କୁଣ୍ଢାଇ ପକାଇଲି । କହିଲି, ଆରେ କଳ୍ପ ତୁ ? ହଁ, ହଁ, ତୋତେ ଚିଠି ଦେଇଥିଲି । ଆ, ଭିତରକୁ ଆ । କଳ୍ପତରୁକୁ ଡ୍ରଇଂରୁମ୍‌ର ଶୋଫାରେ ବସେଇଦେଲି । କିନ୍ତୁ ମୁଁ ନିଜକୁ ମଧ ଦୋଷ ଦେଇପାରିଲି ନାହିଁ ।

ଦଶବର୍ଷ ପରେ ଦେଖା । ଚେହେରା ଦେଖି ଚିହ୍ନି ହେଉନି । ଏପରି ସ୍ୱାସ୍ଥ୍ୟ ନଷ୍ଟହେଲେ ମଣିଷକୁ ଚିହ୍ନିବା କଷ୍ଟକର । ପଚାରିଲି, କ'ଣ ହେଲା ? ତୋର ସ୍ୱାସ୍ଥ୍ୟ ଏପରି ଖରାପ ହେଲା କିପରି ?

କଳ୍ପତରୁ ତା'ର ଶୁଖିଲା ଓଠରେ ମ୍ଳାନ ହସର ରେଖାଟିଏ ଟାଣି କହିଲା, ନା ଭାଇ, ହେବ କ'ଣ ? କିଛି ହୋଇନି; ହେଲେ, ଆଗଭଳି ମୋର ସ୍ୱାସ୍ଥ୍ୟ ନାହିଁ । ମୁଁ କହିଲି, ହେଉ, ଭିତରକୁ ଆ । ମୋ ଶ୍ରୀମତୀଙ୍କ ସଙ୍ଗେ ପରିଚୟ କରେଇଦିଏ ।

ଶ୍ରୀମତୀଙ୍କ ସଙ୍ଗେ ପରିଚୟ ବିନିମୟ ହେଲା । ଶ୍ରୀମତୀ ମଧ ତା' ଜଳଖିଆରେ ବନ୍ଧୁକୁ ଆପ୍ୟାୟିତ କଲେ ଏବଂ ମୋତେ ମନେପକେଇଦେଲେ, ସହରକୁ ଆସିଥିବା ଅପେରାର ଶୁଭ ଉଦ୍‌ଘାଟନ ଉତ୍ସବରେ ପୌରୋହିତ୍ୟ କରିବା ପାଇଁ ତୁମର ମଞ୍ଚଶିଳ୍ପୀ ବନ୍ଧୁକୁ ଡାକିଥିଲ ପରା ? ଶ୍ରୀମତୀଙ୍କ କଥା ଶୁଣି କୌତୂହଳୀ ଆଖିରେ ମୋତେ ଚାହିଁଲା କଳ୍ପତରୁ । ମୁଁ କହିଲି, କଳ୍ପ; ତୁ ତ ଜାଣିଛୁ, ଯାନ୍ତ୍ରିକ ମାଇକ୍‌ର ଯନ୍ତ୍ରଣା ଭିତରେ ଆଜିକାଲିର ଏଇ ରୁଚିହୀନ ଅପେରାର ନଗ୍ନଦୃଶ୍ୟକୁ ଦେଖିବାର ଆଗ୍ରହ ଏବଂ ଧୈର୍ଯ୍ୟ ମୋର ଅନ୍ତତଃ ନାହିଁ । ତୋ' ଭଳି ଜଣେ ବିଖ୍ୟାତ ମଞ୍ଚଶିଳ୍ପୀ ଏଠି ଥାଉ ଥାଉ ସେମାନେ ଭୁଲକ୍ରମେ ମୋ' ନିକଟରେ ପହଞ୍ଚିଥିଲେ । ତୋ' ତରଫରୁ ମୁଁ ସେମାନଙ୍କୁ ପ୍ରତିଶ୍ରୁତି ଦେଇଛି । ତୁ ଅପେରା ଉଦ୍‌ଘାଟନ କରିବୁ ।

ଚା' କପଟିକୁ ଧୀରେ ଧୀରେ ଟି'ପୟ ଉପରେ ଥୋଇଦେଲା କଳ୍ପତରୁ । ଦୀର୍ଘଶ୍ୱାସ ଛାଡ଼ି ଆହତ ହରିଣୀଭଳି ସେ ଯାହା କହିଲା, ସେକଥା ଶୁଣି ଆମେ ଦୁହେଁ ବୁଡ଼ିଗଲୁ

ବିସ୍ମୟର ଅତଳ ସମୁଦ୍ରରେ । ବିନୟରେ ହାତଯୋଡ଼ି ସେ କହିଲା, ମୋତେ କ୍ଷମାକରିବୁ ଭାଇ, ଅପେରା କିମ୍ବା ଥିଏଟର କଥା କହି ମୋତେ ଆଉ ଲଜ୍ଜା ଦେବୁନାହିଁ । ସେ ମାଇକ୍ ଆଉ ମଞ୍ଚଠାରୁ ମୁଁ ଏବେ ଅନେକ ଦୂରରେ । ବିଶ୍ୱାସ କର ।

ମୁଁ ଚାହିଁଲି ବନ୍ଧୁ କଳ୍ପତରୁର ସେଇ ବିଷାଦ କାଳିମାବୋଳା ବେଦନାହତ ମୁହଁକୁ । ମୁଁ ବିଶ୍ୱାସ କରିପାରିଲି ନାହିଁ ତା କଥାକୁ । ବାଲ୍ୟ କୈଶୋର ଜୀବନରେ ସେ ଅଭିନୟ କରିଥିବା ହସକୁହଭରା ଦୃଶ୍ୟଗୁଡ଼ିକ ଭାସିବାକୁ ଲାଗିଲା ମୋ ଆଖି ଆଗରେ । ବିସ୍ମୟରେ ତେଣୁ ମୁଁ ପଚାରିଲି, କ'ଣ ତୁ ଏମିତି କହୁଚୁ କଳ୍ପ ? କଳ୍ପତରୁ କହିଲା, ହେଉ, ସବୁକଥା ଦିନେ ଜାଣିପାରିବୁ । ତୁ ଏଠାକାର ସବ୍‌ଜଜ ହୋଇ ଆସିଲୁ, ଭଲ ହେଲା । ଦୀର୍ଘଦିନ ପରେ ଆମର ପୁଣି ଦେଖାହେଲା । ତୋ ପାଇଁ ଏଇଟା ନୂଆ ଜାଗା । ହଁ, .ଏଠି ଅଳ୍ପ ଦୂରରେ ଯେଉଁ ପାହାଡ଼ିଆ ଝରଣାଟି ଝରି ପଡୁଛି, ସୂର୍ଯ୍ୟାସ୍ତ ସମୟରେ ତା'ର ଦୃଶ୍ୟ ଭାରି ସୁନ୍ଦର । ସେ ଦୃଶ୍ୟ ତୋତେ ନିଶ୍ଚୟ ଭଲଲାଗିବ । ଚାଲ, ଟିକିଏ ସେଠୁ ବୁଲି ଆସିବା ।

ଆମ କଥାର ପ୍ରସଙ୍ଗ ବଦଳାଇ କଳ୍ପତରୁ ଏଠାକାର ଝରଣାର ଦୃଶ୍ୟ ଦେଖିବା ପାଇଁ ଅନୁରୋଧ କଲାରୁ ମୋର ବୁଝିବାକୁ ବାକି ରହିଲା ନାହିଁ ଯେ ଘରେ ଶ୍ରୀମତୀଙ୍କ ଉପସ୍ଥିତିରେ ସଂକୋଚର ଆବରଣରୁ ନିଜକୁ ମୁକ୍ତ କରିବାକୁ ସେ ଚାହୁଁଥିଲା । ତେଣୁ ଅନୁରୂପ ଆଗ୍ରହ ଦେଖାଇ ମୁଁ ମଧ ବାହାରି ପଡ଼ିଲି ସେହି ଝରଣା କୂଳକୁ ।

ଅବଶ୍ୟ ବିଚାରବିଭାଗର ଜଣେ କର୍ମଚାରୀ ହିସାବରେ ମୁଁ ପାରୁ ପର୍ଯ୍ୟନ୍ତ ଦୂରେଇ ରହୁଥିଲି ସମସ୍ତଙ୍କ ସଂସର୍ଗରୁ । ଏ ବିଶ୍ୱ ପ୍ରକୃତିର ଅମୃତମୟ କୋଳ ମୋତେ ଦିଏ ଆନ୍ତରିକ ସ୍ନେହର ସ୍ପର୍ଶ, ଠିକ୍ ଯେମିତି ମା' ।

ଦେଖିଲି, କଳ୍ପର କଥା ହିଁ ସତ । ସେଇ ପାହାଡ଼ୀ ଝରଣାର ଝରଝର ବୁଝା ଅବୁଝା ଶବ୍ଦ ତରଙ୍ଗ, ସ୍ୱପ୍ନଭଳି ନୀଳ ଅରଣ୍ୟର ଦୃଶ୍ୟ, କ୍ଳାନ୍ତ ଶିଶୁଭଳି ଦିଗନ୍ତରେ ଢଳିପଡୁଥିବା ଲାଲ ସୂର୍ଯ୍ୟ, ସବୁକିଛି ମୋତେ ମନ୍ତ୍ରମୁଗ୍ଧ କରିଦେଲା ।

ଆଖିଆଗରେ ଦୁଷ୍ଟ ଝିଅଟିଏ ଭଳି ଝରିପଡୁଥିଲା ଝରଣାର ଜଳଧାରା କିନ୍ତୁ ଭାବଗମ୍ଭୀର କଳ୍ପତରୁର ମୁହଁକୁ ଚାହିଁ ଦେଖିଲି, ତା' ମନର ପଥର ଭିତରେ ଏକ ବନ୍ଦୀ ଝରଣା ବ୍ୟାକୁଳ ହୋଇ ମୁଣ୍ଡ ପିଟୁଛି । ତାର ବିଷଣ୍ଣ ମୁଖରେ, ନିରବ ଆଖିର ତାରାରେ ଫୁଟି ଉଠୁଥିଲା ଏକ ଅପ୍ରକାଶ୍ୟ ବେଦନାର କରୁଣ ଛବି ।

ମୁଁ କହିଲି, କଳ୍ପତରୁ, ତୋ' କଥା ସତ । ଏ ଝରଣା, ଏ ପାହାଡ଼, ଏ ଆକାଶ, ଏ ଅରଣ୍ୟ ଆଉ ସୂର୍ଯ୍ୟାସ୍ତର ଏ ଦୃଶ୍ୟ ସତରେ ଭାରି ଚମତ୍କାର । କିନ୍ତୁ ତୋର ମଞ୍ଚାଭିନୟ ବିଷୟରେ ତୁ ଯାହା କହିଲୁ, ମୁଁ ସେକଥା ବିଶ୍ୱାସ କରିପାରିଲି ନାହିଁ । ମଞ୍ଚର ପାଦପ୍ରଦୀପ

ତଳେ ତୋର ଅଭିନୟ ଯେ ନିଜ ଆଖିରେ ଦେଖିବାର ସୁଯୋଗ ନ ପାଇଛି ସେ ହୁଏତ ତୋ କଥା ବିଶ୍ୱାସ କରିପାରେ । ଆଚ୍ଛା କହ, ତୋର ମନେପଡୁଛି, ଆମ ଗାଁର ସେଇ ଝିଅ ଚମ୍ପା କଥା ?

ମୋ ମୁହଁରୁ ଚମ୍ପାର ନାଁ ଶୁଣି ବିଦ୍ୟୁତ୍‌ର ଏକ ଝଲକ ଖେଳିଗଲା କଳ୍ପତରୁର ଦୁଇ ଆଖିର କୋଣରେ ।

ଝରଣାର ଜଳସ୍ରୋତ ଝରଝର ଶବ୍ଦରେ ଝରିପଡୁଥିଲା ଅବିରାମ ଗତିରେ । ଢଳିଲା ସୂର୍ଯ୍ୟର ରକ୍ତିମ କିରଣ ଝରିପଡୁଥିଲା ସେଇ ଝରଣାର ଜଳ ଭିତରଦେଇ । ସେ ରକ୍ତିମ ସୂର୍ଯ୍ୟକିରଣରେ ଉଜ୍ଜ୍ୱଳ ଦିଶୁଥିଲା କଳ୍ପତରୁର ମୁଖଶ୍ରୀ । ମୁଁ ତାକୁ ମନେ ପକେଇ ଦେଇ କହିଲି, ହଁ କହ, ଆମ ଗାଁର ସେଇ ଚମ୍ପାକୁ ତୋର ନିଶ୍ଚୟ ମନେଥିବ । ଆମେ ବି.ଏ. ପରୀକ୍ଷା ଦେଇ ଗାଁରେ ବସିଥାଉ । ହାଇସ୍କୁଲରେ ମଞ୍ଚସ୍ଥ ହେଲା ସେଇ ପୌରାଣିକ ନାଟକ, 'ସପ୍ତରଥୀ' । ତୁ ଅଭିନୟ କଲୁ ଅଭିମନ୍ୟୁର ଭୂମିକାରେ ଆଉ ଉତ୍ତରାର ଭୂମିକାରେ, ଚମତ୍କାର ଅଭିନୟ କରିଥିଲା, ସେଇ ଝିଅଟି.. ।

ଆମ ଦୁଇଜଣଙ୍କ ମୁହଁରୁ ଏକ ସଙ୍ଗରେ ଉଚ୍ଚାରିତ ହେଲା, 'ଚମ୍ପା' ।

ମୋ କାନ୍ଧରେ ଉଷୁମ ହାତରେ ସ୍ପର୍ଶଦେଇ କଳ୍ପତରୁ କହିଲା, ତା'ହେଲେ ତୋର ମନେଅଛି ଚମ୍ପାକୁ ? ତୁ ଭୁଲିନାହୁଁ ?

ମୁଁ ଏବେ ବୁଝିପାରିଲି, କଳ୍ପତରୁର ହୃଦୟର ଅନ୍ତରାଳରେ ଯେଉଁ ଅଦୃଶ୍ୟ ଆଲୋଡ଼ନ ହେଉଥିଲା ତାହା କେବଳ ସେଇ ଝିଅ ଚମ୍ପା ପାଇଁ । ସକାଳର ସଜଫୁଟା ଫୁଲଭଳି କମନୀୟ ଚମ୍ପାର ମୁହଁଟି ନିଶ୍ଚୟ ସୁରଭିତ ପାଖୁଡ଼ା ମେଲିଥିଲା କଳ୍ପତରୁର ମାନସପଟରେ ।

ତା' ପ୍ରଶ୍ନର ଉତ୍ତରରେ ମୁଁ କହିଥିଲି, ହଁ କହ, ତୋ ସଙ୍ଗେ ଉତ୍ତରାର ଭୂମିକାରେ ଚମ୍ପା ଯେମିତି ଜୀବନ୍ତ ଅଭିନୟ କରିଥିଲା ସେକଥା କ'ଣ ସହଜରେ ପାସୋରି ହେବ ?

ମୋର ସେଇକଥା ପଦକରେ କଳ୍ପତରୁ କଳ୍ପନା-ରାଜ୍ୟରେ ଚାଲିଗଲା ଦୀର୍ଘ କେଇବର୍ଷ ତଳକୁ । ସେଠି ପୃଥିବୀର ରଙ୍ଗ ଥିଲା ଇନ୍ଦ୍ରଧନୁଭଳି ବହୁ ବର୍ଣ୍ଣର । କଳ୍ପତରୁର ରକ୍ତରେ ଖେଳୁଥିଲା ତାରୁଣ୍ୟର ପ୍ରବଳ ଜୁଆର । ପ୍ରାଣରେ ଭରି ରହିଥିଲା ପାର୍ବତ୍ୟ ଝରଣାର ଅଫୁରନ୍ତ ଉଲ୍ଲାସ ।

କଳ୍ପତରୁ କହିଲା, ତୋର ମନେପଡୁଛି, ଗାଁ ସ୍କୁଲର ରଙ୍ଗମଞ୍ଚରେ କୁରୁକ୍ଷେତ୍ରର ସେଇ ରକ୍ତାକ୍ତ ସମର ପ୍ରାଙ୍ଗଣର ଦୃଶ୍ୟ । ସପ୍ତରଥୀଙ୍କ କ୍ରୂର ଆକ୍ରମଣରେ ଧରାଶାୟୀ ହୋଇଥିଲା ବୀର ଅଭିମନ୍ୟୁ । ଆଉ ସେହି ଅଭିମନ୍ୟୁର ଛାତିଉପରେ ଲୋଟି ପଡ଼ିଥିଲା

ତରୁଣୀ ଉତ୍ତରା । ଉତ୍ତରାର ଆକୁଳ କ୍ରନ୍ଦନ, ସେ ଆବେଗ, ସେ ଉଚ୍ଛ୍ୱାସ ମନେପଡୁଛି ?

ମୁଁ କହିଲି ହଁ କଳ୍ପ, ସେ ଗଭ୍ର କରୁଣ ଦୃଶ୍ୟ ମୋର ବେଶ ମନେପଡୁଛି ।

ତେବେ ଶୁଣ ! କଳ୍ପତରୁ ଧୀରେ ଧୀରେ ଆରମ୍ଭ କରିବାକୁ ଲାଗିଲା ସେଇ ଚମ୍ପାର କାହାଣୀ ଯାହା ତା' ମନର ପାର୍ବତ୍ୟଗୁହାରେ ବନ୍ଦୀ ହୋଇଥିଲା ଦୀର୍ଘଦିନ ଧରି । ମୁଁ ବିଚାରିଲି, ସତେ ଯେପରି ତା' ଜୀବନରେ ସେ ଏକ ନିର୍ଝରର ସ୍ୱପ୍ନଭଙ୍ଗ । କଳ୍ପତରୁ କହୁଥିଲା: ସ୍କୁଲ ରଙ୍ଗମଞ୍ଚରେ ସେ ରାତି ନାଟକ ଶେଷ ହେଲା । ଯେ ଯାହା ଘରକୁ ଲେଉଟିଗଲେ । ମୁଁ ମଧ ଖାଇପିଇ ଶୋଇବାକୁ ଗଲି; ହେଲେ ମୋ' ଆଖିକି ଟୋପାଏ ନିଦ ଆସିଲା ନାହିଁ । ଶେଯରେ ପଡ଼ିଗଲାମାତ୍ରକେ ମୋର ମନେହେଲା, ମୋ' ଛାତି ଉପରେ ଥରିଉଠୁଥିଲା କିଶୋରୀ ଚମ୍ପାର କୋମଳ ଦେହଲତା । ମୁଁ ଅନୁଭବ କରୁଥିଲି, ତା' ଉନ୍ନତ ବକ୍ଷର ମଧୁର ଉତ୍ତାପ । କାନକୁ ମୁଁ ଶୁଣିପାରୁଥିଲି ଚମ୍ପାର ହୃଦୟର ରୋମାଞ୍ଚକର ସ୍ପନ୍ଦନ । ମୋ ମୁହଁ ଉପରେ ମୁଁ ଅନୁଭବ କରୁଥିଲି ତା'ର ଶ୍ୱାସପ୍ରଶ୍ୱାସର ସଞ୍ଚରଣ । ଆଉ ମୋ' ଶିରାପ୍ରଶିରାରେ ଖେଳିଯାଉଥିଲା ବିଦ୍ୟୁତ୍‌ର ମଧୁର ତରଙ୍ଗ । ଜଣେ କିଶୋରୀର ପ୍ରଥମ ସ୍ପର୍ଶର ମଧୁର ଅନୁଭୂତିରେ ମୁଁ ହୋଇଯାଉଥିଲି ସମ୍ପୂର୍ଣ୍ଣ ଆତ୍ମହରା ।

ରାତି କେତେ ହୋଇଥିଲା କିଏ ଜାଣେ । ମନେହେଲା, କିଏ ଯେମିତି ବ୍ୟସ୍ତରେ ପିଟୁଥିଲା ଆମ ଘରର ଦାଣ୍ଡ କବାଟରେ । ମୋର ମଧୁର ସ୍ୱପ୍ନର ଅନୁଭୂତି ତୁଟିଗଲା । ମୋତେ ଶୁଭିଲା, ଜଣେ ନାରୀକଣ୍ଠର ଆକୁଳ ସ୍ୱର : 'କଳ୍ପଭାଇ', 'କଳ୍ପଭାଇ' । ମୁଁ ଦାଣ୍ଡଘରେ ଶୋଇଥିଲି । କବାଟ ଫିଟେଇ ମୁଁ ଚମକିପଡ଼ିଲି । ଅନ୍ଧାରରେ ଏକୁଟିଆ ଯେଉଁ ଝିଅଟି ଠିଆହୋଇଥିଲା, ସେ ଚମ୍ପା । ସେ ଧାଇଁଆସି ମୋତେ ଜାବୁଡ଼ି ପକେଇ କାନ୍ଦିବାକୁ ଲାଗିଲା । ତା'ର ସମସ୍ତ ଦେହ ଥରୁଥିଲା ପ୍ରବଳ ଭୟ ଆଉ ଦାରୁଣ ଉତ୍ତେଜନାରେ । ମୁଁ କ'ଣ କରିବି, କିଛି ବୁଝିପାରିଲି ନାହିଁ । ମୁଁ ଜାଣେନାହିଁ, କେତେ ମିନିଟ୍ ବିତିଯାଇଥିଲା । ମୁଁ ସମ୍ବିତ ଫେରିପାଇଲି, ଆରଘରୁ ନୂଆବୋହୂଙ୍କ ଡାକରେ । ଧାଇଁଯାଇ କବାଟ ଫିଟେଇଦେଲି । ଚମ୍ପା ଧାଇଁଯାଇ ଭାଉଜଙ୍କୁ କୁଣ୍ଢେଇ କାନ୍ଦିବାକୁ ଲାଗିଲା ।

ଘଟଣା ହେଲା : ଗାଁରେ ପୁଅପିଲାଙ୍କ ସଙ୍ଗେ ଅଭିନୟ କରିବାକୁ ଝିଅମାନେ ରାଜିହେଉ ନଥିଲେ; ଚମ୍ପାର କିଛିଟା ଆଗ୍ରହ ଥିଲା । ସେକଥା ଜାଣି ପିଲାମାନେ ରାଜି କରେଇଥିଲେ ଚମ୍ପାର ମାମୁଙ୍କୁ । କିଛି ଟଙ୍କା ପାଇବା ଆଶାରେ ମାମୁ ରାଜିହେଲେ । ରିହାର୍ସଲ ଚାଲିଲା । ମାମୁ ମଝିରେ ପନ୍ଦରଦିନ ପାଇଁ ଚାଲିଗଲେ କଟକ । ପନ୍ଦରଦିନ ପରେ ଗାଁକୁ ଫେରି ଚମ୍ପାର ମାମୁ ନବଘନବାବୁ ଦେଖିଲେ ସ୍କୁଲ ରଙ୍ଗମଞ୍ଚରେ ନାଟକ ମଞ୍ଚସ୍ଥ ହୋଇସାରିଲାଣି । ଟଙ୍କା ପଇସା କିଛି ମାମୁଙ୍କ ହାତକୁ ଯାଇ ନଥାଏ; ଅଥଚ ନାଟକ ସରିଗଲାଣି । ଗାଁ ଟୋକାଙ୍କୁ ବିଶ୍ୱାସ କଣ ? ଏଣୁ ମାମୁଁଙ୍କର ସବୁତକ ରାଗରୋଷ

ଯାଇ ପଡ଼ିଲା ଚମ୍ପା ଉପରେ । ସେ ଧାଇଁଲେ ଚମ୍ପାକୁ ମାଡ଼ ଦେବାପାଇଁ । ଅଗତ୍ୟା ଜୀବନ ବିକଳରେ ଚମ୍ପା ଧାଇଁଆସିଥିଲା ଆମ ଘରକୁ, ତା' ଭାଉଜଙ୍କ ପାଖକୁ ।

ଆମ ଘରକୁ ଚମ୍ପା ଆସିବାର କିଛି ସମୟ ଯାଇଛି କି ନାହିଁ ପାଟିତୁଣ୍ଡ କରି ନବଘନ ବାବୁ ହାଜର ହେଲେ ଆମ ଦାଣ୍ଡପିଣ୍ଡାରେ । ରାଗରେ ଆକ୍ରମଣ କଲେ ମୋ ଭାଇନାଙ୍କୁ । ସେ କହିଲେ, ହଇହୋ ମିଶ୍ରେ, ରାତିକ ପାଇଁ କାହିଁକି ଘରେ ରଖିଛ ଆମ ଚମ୍ପାକୁ ? କ'ଣ ସବୁଦିନ ପାଇଁ ତାକୁ ରଖିପାରିବ ତୁମ ଘରେ ?

ରାଗଚୋଟରେ ଭାଇନା ମଧ ପାଲଟା ଜବାବ ଦେଲେ : ଆରେ ନବ, ଚମ୍ପା ବ୍ରାହ୍ମଣ ଘରର ଝିଅ ହୋଇଥିଲେ ସେକଥା ତୋତେ କହିବାକୁ ପଡ଼ିନଥାନ୍ତା; ହେଲେ... । ତା'ପରେ ସେ ବୁଝାଇବାକୁ ଚେଷ୍ଟା କଲେ, କହିଲେ, ଆରେ ଚମ୍ପା ଆମରି ଗାଁର ଝିଅ । ଗାଁ ପିଲାଙ୍କ ସାଙ୍ଗରେ ନାଟକରେ ଅଭିନୟ କଲା । ସେଥିରେ କ'ଣ ଏମିତି ଭାସିଗଲା ଯେ ତୁ ରାଗି ନିଆଁ ହେଇଗଲୁ ? ଝିଅଟାକୁ ହାତ ଉଠେଇଲୁ । ଆଉ ଜୀବନ ବିକଳରେ ଝିଅଟା ଧାଇଁ ଆସିଲା ତା' ଭାଉଜ ପାଖକୁ । କ'ଣ ରାତିଅଧରେ ଆମେ ତଡ଼ିଦେଇଥିଲେ କଥାଟା ସୁନ୍ଦର ଦିଶିଥାନ୍ତା ? ତୋର ଭାଣିଜୀ, ତୁମ ଘରକୁ ଯିବ ନାହିଁ, କ'ଣ ଏଠି ରହିବ ?

ସେତେବେଳକୁ ଗାଁ ଲୋକେ ଜମା ହୋଇ ଯାଇଥିଲେ । ଗାଁ ପିଲାଏ କିଛି ଟଙ୍କା ନବଘନବାବୁଙ୍କ ହାତରେ ଧରେଇ ଦେଲାରୁ ଅବସ୍ଥା ସମ୍ଭାଳ ପଡ଼ିଲା ସେଦିନ ରାତିରେ ।

କଳ୍ପତରୁ କହୁଥିଲା; ତା'ପରେ ଏମ୍.ଏ. ପାସ୍ କରି ମୁଁ ଏ କଲେଜରେ ଯୋଗଦେଲି ଅଧ୍ୟାପକ ରୂପେ । ତୁମ୍ଭେମାନେ ଜାଣିଛ, ମୋତେ ନାଟକର ନିଶା ଘାରିଥାଏ । କଲେଜରେ ପ୍ରତିବର୍ଷ ନାଟକର ଆୟୋଜନ କରି ମୁଁ ଆନନ୍ଦ ପାଉଥିଲି । ନିର୍ଦ୍ଦେଶନା ମଧ ଦେଉଥିଲି । ପୁଣି ଭ୍ରାମ୍ୟମାଣ ଥିଏଟର ଦଳ ସହରରେ କ୍ୟାମ୍ପ ପକେଇଲେ ମୁଁ ସେମାନଙ୍କୁ ସାହାଯ୍ୟ କରିବାକୁ ଆଗଭର ହେଉଥିଲି ।

ହଁ, ୟା ଭିତରେ ବିତିଯାଇଥାଏ କେତୋଟି ବର୍ଷ । ସେଦିନ ମୋ ଭାଇନା, ଗାଁରୁ ଆସି ପହଞ୍ଚିଗଲେ । ଭାଉଜ କୁଆଡ଼େ ତାଙ୍କୁ ବ୍ୟସ୍ତ କରୁଥାନ୍ତି ମୋ ବାହାଘର ପାଇଁ । ତାଙ୍କ ମତରେ ଭଲ ପ୍ରସ୍ତାବଟିଏ ଆସିଥିଲା, ପୁରୀରୁ । ତେଣୁ ଭାଇନା ଆସିଥିଲେ । ମୋ ସଙ୍ଗେ ପରାମର୍ଶ କରି ଏଇବାଟେ ପୁରୀ ଯିବେ । ପାତ୍ରୀଟିକୁ ଦେଖିବେ । କିନ୍ତୁ ସେଦିନ ସକାଳେ କଲିଙ୍ଗବେଲ୍ ଶୁଣି କବାଟ ଫିଟେଇ ମୁଁ ସ୍ତମ୍ଭୀଭୂତ ହୋଇଗଲି । ଦେଖିଲି, ମୋ ଆଗରେ ଠିଆହୋଇଛି ଜଣେ ସୁନ୍ଦରୀ ତରୁଣୀ । ଦେହରେ ଆଧୁନିକ ଢଙ୍ଗର ଚମତ୍କାର ଶାଢ଼ି, ଗଳାରେ ଚମ୍ପାମାଳ, ହାତରେ ଭ୍ୟାନିଟୀ ବ୍ୟାଗ । ବିସ୍ମୟରେ ମୁଁ ପଚାରିଲି, ଚମ୍ପା, ହଠାତ୍ ତୁମେ ଆସିଲ କୁଆଡୁ ?

ଭାଇନା ଏବଂ ମୋତେ ଲୁହାର କଲା ଚମ୍ପା । ଭୟଙ୍କର କ୍ଳାନ୍ତକଣ୍ଠରେ ସେ କହିଲା, ମୋତେ ଭାରି ନିଦ ମାଡୁଛି କଣ୍ଟଭାଇ । ଗାଧୁଆ ଘରଟା ଟିକିଏ ଦେଖେଇ ଦେଲ, ଗାଧୋଇପାଧୋଇ ମୁଁ ଦଣ୍ଡେ ନିଶ୍ଚିନ୍ତରେ ଶୋଇବି । ନିଦରୁ ଉଠିଲାପରେ ତୁମକୁ ସବୁକଥା କହିବି ।

ଚମ୍ପାର ବ୍ୟାକୁଳତା ଦେଖି ମୋ ମନରେ କରୁଣା ହେଲା । ମୁଁ ଗାଧୁଆଘର ଦେଖେଇ ଦେଲି । ଚମ୍ପା ପଶିଗଲା, ଗାଧୁଆ ଘରକୁ ।

ହଁ, ସେତେବେଳକୁ ମୋ' ମନଅରଣ୍ୟରେ ହଜିଯିବାକୁ ବସିଥିଲା ଚମ୍ପାର ସ୍ମୃତି; କିନ୍ତୁ ସେଦିନ ତା'ର ଆକସ୍ମିକ ଆର୍ବିଭାବରେ ମୋ ମନଗହନରେ ପୁଣି ଚେଇଁଉଠିଲା, ସେଇ ବାଲ୍ୟ-କୈଶୋରର ସ୍ମୃତିସବୁ । ଗାଧୁଆଘରକୁ ଗଲାବେଳେ ଚମ୍ପା ଅବଶ୍ୟ ଦିଶୁଥିଲା ଖୁବ୍ କ୍ଳାନ୍ତ-ଶ୍ରାନ୍ତ । କିନ୍ତୁ ସେ ଆଉ ଗାଁର ସେଇ ଛୋଟ ଝିଅଟିଏ ହୋଇ ନଥିଲା । ଇତିମଧ୍ୟରେ ଚୁମୂଳ ପରିବର୍ତ୍ତନ ଘଟିଯାଇଥିଲା ତା'ର ଦେହ ଓ ମନରେ । ଏବେ ସେ ଜଣେ ସୁନ୍ଦରୀ ତରୁଣୀ । ଚମ୍ପା ରଙ୍ଗର ମୁହଁରେ ଭରିଉଠିଥିଲା ଯୌବନର ରୂପ ମାଧୁର୍ଯ୍ୟ ।

ଭାଇନା କିନ୍ତୁ ମୋତେ ପଚାରିଲେ, ତୁ ନିଶ୍ଚୟ ଜାଣିଥୁ କଣ୍ଟ, ଚମ୍ପା ଏବେ କ'ଣ କରୁଛି । ମୁଁ ଶୁଣିଥିଲି, ଚମ୍ପା ମେଟ୍ରିକ୍ ସି.ଟି. ପାସ୍ କରି କୌଣସି ସ୍କୁଲରେ ଶିକ୍ଷୟିତ୍ରୀ କାମ କରୁଛି । ତେଣୁ ଭାଇନାଙ୍କୁ ମୁଁ ସେଇଆ କହିଲି । ମୋ କଥା ଶୁଣି ଭାଇନା ମୋ ଉପରେ ବିରକ୍ତ ହେଲେ । ମୋ ଉତ୍ତରରେ ସେ ଅସନ୍ତୁଷ୍ଟ ହେଲେ; ବରଂ ସନ୍ଦେହ ବୋଳି ହୋଇଗଲା ତାଙ୍କର ଦି' ଆଖିରେ । ରାଗିଉଠି ଭାଇନା ମୋତେ କହିଲେ, ଜାଣି ଜାଣି ତୁ ମୋତେ ମିଛ କହୁଛୁ ? ସେ ଅଭିଯୋଗ କଲେ ।

ମିଛ ? ନାହିଁ ତ ଭାଇନା । ମୁଁ ଭାଇନାଙ୍କୁ ବୁଝାଇବାକୁ ଚେଷ୍ଟାକଲି । କିନ୍ତୁ ତାଙ୍କର ହୃଦ୍‌ବୋଧ ହେଲା ନାହିଁ । ଶେଷକୁ ଚମ୍ପା ବିଷୟରେ ଯାହା କହିଲେ ସେଥିରେ ମୋର ବିସ୍ମୟର ସୀମା ରହିଲା ନାହିଁ ।

ବୁଝିଲୁ କଣ୍ଟ, ଚମ୍ପା ବିଷୟରେ ଗାଁର ସମସ୍ତେ ଜାଣିଗଲେଣି । ତୁମର ଏଇ ସହରରେ ଗୋଟିଏ ଥିଏଟର ଦଳ କ୍ୟାମ୍ପ ପକେଇଚି, ତୁ ଜାଣିଚୁ ?

ମୁଁ କହିଲି, ହଁ, ମୁଁ ଜାଣିଛି ।

ମୋ କଥା ଶୁଣି ଭାଇନା ବିଦ୍ରୂପର ହସଟିଏ ହସିଲେ । କହିଲେ, ଏ ସହରର ରିକ୍ସାବାଲାଠାରୁ ଆରମ୍ଭ କରି ହୋଟେଲ, ଚା', ପାନ-ବିଡ଼ି ଦୋକାନୀ ସମସ୍ତେ ଜାଣିଚନ୍ତି ଚମ୍ପା ଏ ଥିଏଟର ଦଳରେ ଅଭିନୟ କରୁଛି । ସେ ଜଣେ ପେଶାଦାର ଅଭିନେତ୍ରୀ; ଅଥଚ ତୁ କହୁଚୁ କ'ଣ ନା ସେ ଶିକ୍ଷୟିତ୍ରୀ ? ବୁଝିଲୁ କଣ୍ଟ, ଚମ୍ପା ପାଠ ପଢ଼ିଛି । ସେ ହିନ୍ଦୀ,

ଇଂରାଜୀ, ଓଡ଼ିଆରେ ଭଲ ସଂଳାପ କହିପାରେ । ସେ ମଧ ଭଲ ନାଚି-ଗାଇପାରେ । ଓଡ଼ିଶାର ଥିଏଟର ଦଳ ଏମିତି ଜଣେ ଆର୍ଟିଷ୍ଟକୁ ପାଇଲେ ଟଙ୍କା ଢାଳିଦେବ, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ବୁଝିଲୁ, ତା ମାମୁଁ ନବଘନ, ଟଙ୍କା ପାଇଁ ଝିଅଟାକୁ ଚାକିରିରୁ ଛଡ଼େଇ ଥିଏଟର ଦଳକୁ ବିକିଦେଇଛି ।

ବିକିଦେଇଚି ? ଭାଇନାଙ୍କ କଥା ଶୁଣି ମୁଁ ଚମକି ପଡ଼ିଲି । ଭାଇନା ପୁଣି ଚାପାଗଳାରେ କହିଲେ, ଖାଲି ସେତିକି ନୁହେଁ, ଚମ୍ପାର ବାହାଘର ପାଇଁ ଯେତେ ଭଲ ଭଲ ପ୍ରସ୍ତାବ ଆସିଲା ସେମାନଙ୍କୁ ସବୁ କଟେଇଦେଲା । ନବଘନର ନିଜର ଝିଅମାନେ ତ ଅଛନ୍ତି ! ନବ ମଣିଷ ନୁହେଁ, ପଶୁଟାଏ, ଜଙ୍ଗଲୀ ଜାନୁଆର ।

ଚମ୍ପା ସ୍କୁଲର ଚାକିରି ଛାଡ଼ି ପେସାଦାର ଅଭିନେତ୍ରୀ ହେଲାଣି । ସେ କଥାଟାକୁ ମୁଁ ମଧ ଖୁବ୍ ପସନ୍ଦ କରିପାରିଲି ନାହିଁ; ହେଲେ ଭାଇନାଙ୍କ ଆଗରେ କୌଣସି ମନ୍ତବ୍ୟ ପ୍ରକାଶ ନ କରି ନିରବ ରହିଲି ।

ପୁରୀ ଗଲାବେଳେ ଭାଇନା ପୁଣି ମୋତେ ସତର୍କ କରିଦେଇଗଲେ । କହିଲେ, ଦେଖ କନ୍ଥ, ମୁଁ ପୁରୀ ଯାଉଛି । ଭଲ ଘରୁ ସମ୍ବନ୍ଧ ଆସିଛି । ଝିଅ ଗ୍ରାଜୁଏଟ୍ । ବାପା ଅଧ୍ୟାପକ । ମୁଁ ଯାଉଛି । ତୁ ଅବିବାହିତ ଯୁବକ । ନିଜର ମାନମର୍ଯ୍ୟାଦା ଜଗି ଚଳିବୁ । ଚାପା ଗଳାରେ ସେ କହିଦେଲେ, ଦେଖ୍, ଚମ୍ପାଭଳି ଜଣେ ପେସାଦାର ଥିଏଟରେ ଝିଅ ସଙ୍ଗେ କୌଣସି ସମ୍ପର୍କ ରଖିବା ତୋର ଉଚିତ ନୁହେଁ ।

ଭାଇନା ମୋତେ ସତର୍କ କରେଇ ଝିଅ ଦେଖିବାକୁ ପୁରୀ ବାହାରିଗଲେ । ଗାଧୁଆପାଧୁଆ ସାରି କପେ ଚା' ପିଇ ଚମ୍ପା ଶୋଇପଡ଼ିଲା । ମୁଁ କଲେଜକୁ ବାହାରିଗଲି । କଲେଜରୁ ଫେରି ମୁଁ ଦେଖିଲି, ଚମ୍ପା ଶୋଇଚି ନିଘୋଡ଼ ନିଦରେ । ନିଦ ଭାଙ୍ଗିଲାବେଳକୁ ସହରରେ ସଞ୍ଜ ନଇଁ ଆସିଥାଏ ।

ଚମ୍ପା କହିଲା, ଯା' ହେଉ, ମଣିଷ ଦି'ଘଣ୍ଟା ନିଶ୍ଚିନ୍ତରେ ଶୋଇ ପାରିଲା ।

ଥିଏଟର କଲେ ରାତିରେ ଆଉ ଶୋଇବ କେମିତି ? ଏକଥା କହି ମୁଁ ଚମ୍ପାକୁ ବିଦ୍ରୂପ କରିବାକୁ ଚାହିଁଲି । ମୁଁ କହିଲି, ଚମ୍ପା, ମୁଁ ଶୁଣିଲି, ଏଇ ଥିଏଟର ଦଳରେ ତୁମେ ଅଛ ।

ମୋ କଥା ଶୁଣି ଚମ୍ପାର ମୁହଁ କଳା ପଡ଼ିଗଲା । କହିଲା, ହଁ କନ୍ଥ ଭାଇ, ମୁଁ ମିଶିଛି; ହେଲେ ମୋତେ ଆଉ ଭଲ ଲାଗୁନାହିଁ । ପହିଲୁ ପହିଲୁ ଅଭିନୟ କରିବା ପାଇଁ ମନରେ ଜାଗୁଥିଲା ପ୍ରବଳ ଆଗ୍ରହ, ବିପୁଳ ଉନ୍ମାଦନା; ହେଲେ ବର୍ଷ ଦୁଇଟା ଭିତରେ ମନରୁ ସେସବୁ କଥା ଉଭେଇଗଲାଣି । ମୋତେ ମନେହେଉଛି, ଦର୍ଶକର ପ୍ରଶଂସା, କରତାଳି ମୋ ପାଇଁ କେବଳ ମୂଲ୍ୟହୀନ ନୁହେଁ, ଦୂରନ୍ତ ପରିହାସ ।

କାହିଁକି, କ'ଣ ହେଲା ? ମୁଁ ପ୍ରଶ୍ନ କଲି ।

ମୋ ପ୍ରଶ୍ନ ଶୁଣି ଚମ୍ପା ମୁଣ୍ଡ ପୋତିଦେଲା । ଧୀରେ ଧୀରେ ସେ କହିଲା, ଥିଏଟର ଦଳରେ ରହିଲେ ଏଠିସେଠି ଘୂରି ବୁଲିବାକୁ ପଡ଼େ । ଆମଭଳି ଝିଅମାନଙ୍କୁ ସେସବୁ କ'ଣ ପୋଷାଏ ? ସବୁ ଅଭିନେତା ଆଉ ଦର୍ଶକମାନଙ୍କର ଦୌରାତ୍ମ୍ୟ ରହିଛି; ହେଲେ, ଖୋଦ୍ ମେନେଜର କିମ୍ବା ଡାଇରେକ୍ଟରମାନଙ୍କୁ ସନ୍ତୁଷ୍ଟ କରିବା ସବୁ ଝିଅଙ୍କ ପକ୍ଷରେ ସମ୍ଭବ ନୁହେଁ । କଜ୍ଜ ଭାଇ, ସେ ଯେ କେଡ଼େ କଷ୍ଟକର ବ୍ୟାପାର ସେକଥା ତୁମକୁ ବୁଝେଇବା ସମ୍ଭବ ନୁହେଁ । ମୋର ମନେହେଲା, ମାନସିକ ଯନ୍ତ୍ରଣାରେ ଭାଙ୍ଗିପଡ଼ିଲା ଚମ୍ପା ।

କରୁଣ କଣ୍ଠରେ ସେ କହିଲା, ମୁଁ ଆଉ ସେ ଥିଏଟରକୁ ମାଡ଼ିବି ନାହିଁ କି ମେନେଜର ମୁହଁକୁ ଚାହିଁବି ନାହିଁ । ମୁଁ ଯେ ଆଉ ସହିପାରୁନି କଜ୍ଜଭାଇ, ମୋତେ ଏ ନରକ ଯନ୍ତ୍ରଣାରୁ ରକ୍ଷା କର ।

ମୋ ମନରେ ମଧ କ୍ଷୋଭ ଜମିଉଠିଥିଲା । ମୁଁ କହିଲି, ରଙ୍ଗମଞ୍ଚରେ ଜଣେ ଝିଅର ଗ୍ଲାମର୍ ବେଶୀଦିନ ରହେନି ଏକଥା କ'ଣ ତୁମକୁ ଜଣା ନଥିଲା । ସ୍କୁଲର ଚାକିରି ଛାଡ଼ି ଅଭିନୟକୁ ପେଶା କରି ନେଇଥିଲ ତୁମେ କେଉଁ ମୁହଁରେ ?

ତୁମ ରାଣ ପକେଇ ମୁଁ କହୁଛି କଜ୍ଜଭାଇ, ପେଶାଦାର ଅଭିନେତ୍ରୀ ହେବାର ଅଭିଳାଷ ମୋର କେବେ ନଥିଲା ।

ତେବେ ? ମୁଁ ପ୍ରଶ୍ନକଲି ଅତି ରୁଢ଼ କଣ୍ଠରେ ।

ତମେ ଜାଣିଚ, ମୋର ଉପାର୍ଜନ ହିଁ ମାମୁଙ୍କ ସଂସାରର ଏକମାତ୍ର ଆଶା ଭରସା । ସି.ଟି. ସ୍କୁଲ ନାଟକରେ ଏଇ ଥିଏଟରର ମେନେଜର ମୋର ଅଭିନୟ ଦେଖିଥିଲେ । ସେ ମାମୁଙ୍କୁ ଧଇଲେ । ଅଧିକ ଟଙ୍କା ଅଫର କଲେ । ମାମୁଁ ମୋତେ ବାଧକଲେ ।

ସେଦିନ ଥିଲା ନାଟକର ପ୍ରଥମ ରଜନୀ । ଚମ୍ପା ପୁଣି ମୁଖ୍ୟ ନାୟିକା । ତଥାପି ଚମ୍ପା ଗଲା ନାହିଁ । ଜୋରକରି ସେ ରହିଗଲା ମୋ ଘରେ । ମୁଁ ଜୋରକରି ପାରିଲି ନାହିଁ । କିନ୍ତୁ ଆରଦିନ ରାତି ନପାହୁଣୁ ଝାଳନାଳ ହେଇ ମେନେଜର ନିଜେ ଆସି ହାଜର ହେଲେ ମୋ ଘରେ । ସିଗାରେଟଟାକୁ ହାତମୁଠାରେ ଧରି ଜୋରରେ ଟାଣୁ ଟାଣୁ ମେନେଜର ମୋତେ କହିଲେ, ସାର୍, ଚମ୍ପା ଆପଣଙ୍କ ଘରେ ରହିଚି । କାଲି ନାଟକର ଶୁଭାରମ୍ଭ ଗଲା; ଅଥଚ ଚମ୍ପା ଗଲା ନାହିଁ । ଯେଉଁ ସଙ୍କଟ, ଚମ୍ପାକୁ ଖୋଜି ଖୋଜି ଯେଉଁ ହଇରାଣ । ଉତ୍ତେଜିତ ଦର୍ଶକଙ୍କୁ ମୋତେ କଞ୍ଚା ମିଛକଥା କହିବାକୁ ପଡ଼ିଲା । କହିଲି, ଆକସ୍ମିକଭାବେ ଆମର ହୀରୋଇନ ଚମ୍ପାବତୀ ଦେବୀ ଅସୁସ୍ଥ; ହେଲେ ଏ ସହରର ଦର୍ଶକ ଆମକୁ କ୍ଷମା କଲେନାହିଁ । ଟେକାପଥର, ଜୋତା ଚପଲ, ବର୍ଷା ହେଲା ଷ୍ଟେଜ୍ ଉପରେ । ଚମ୍ପା

ପରିବର୍ତ୍ତରେ ଅନ୍ୟ ଝିଅର ଅଭିନୟ ଦେଖିବାକୁ ସେମାନେ ରାଜି ନୁହନ୍ତି । ବୁଝିଲେ ସାର୍, ଆଜି ହୁଏତ ସେମାନେ ଷ୍ଟେଜ୍‌ରେ ନିଆଁ ଲଗେଇ ଦେବେ ।

ରୁମାଲରେ ଝାଳ ପୋଛିଲେ ମେନେଜର । ଅର୍ଦ୍ଧିକନାରେ ଫିନ୍ ଫିନ୍ ପଞ୍ଜାବୀ, ହାତରେ ମଲ୍ଲୀଫୁଲର ଗଜରାମାଳ, ମୁହଁରେ ଜଳନ୍ତା ସିଗାରେଟ୍, ଆଖିରେ ସୁର୍ମା । ସେଇ ମେନେଜର ସଙ୍ଗେ କଥା କହିବାକୁ ଘୃଣା ଲାଗିଲା । ଠିକ୍ ସେତିକିବେଳେ ଘରୁ ବାହାରି ଆସିଲା ଚମ୍ପା, ମେନେଜରଙ୍କ ହାତକୁ ଖଣ୍ଡିଏ କାଗଜ ବଢ଼େଇଦେଇ ସେ କହିଲା ମେନେଜର ବାବୁ, ନିଅନ୍ତୁ ମୋର ଇସ୍ତଫାପତ୍ର ।

ଇସ୍ତଫାପତ୍ର ଧରି ମେନେଜରବାବୁ ଚାହିଁଲେ ମୋତେ ଏକ ହତାଶ ଆଖିରେ । ମୁଁ କହିଲି, ଚମ୍ପା ଯେବେ ଅଭିନୟ କରିବାକୁ ଅନିଚ୍ଛୁକ, କ'ଣ ଆଉ କରାଯାଇ ପାରିବ କୁହନ୍ତୁ ?

ମେନେଜର କହିଲେ, ଦେଖନ୍ତୁ ସାର୍, ବର୍ତ୍ତମାନ ଚମ୍ପା ଅନିଚ୍ଛୁକ କହିଲେ ଚଳିବ କେମିତି ? ପକେଟରୁ ଆଉ ଖଣ୍ଡେ କାଗଜ ବାହାର କରି ସେ ବଢ଼ାଇଦେଲେ ମୋ ହାତକୁ । ଦେଖିଲି, ଅଳ୍ପଦିନ ଆଗରୁ ଚମ୍ପା ଏଡ୍‌ଭାନ୍‌ସ ନେଇଛି ଛ' ମାସର ଟଙ୍କା । ମୁଁ ଚମ୍ପାର ମୁହଁକୁ ଚାହିଁଲି । ଦେଖିଲି, ବିବର୍ଣ୍ଣ ମୁହଁରେ ଭୂଇଁରେ ସେ ପାଦର ବୁଢ଼ାଆଙ୍ଗୁଳି ଘଷୁଛି । ସେ ଧୀରେ ଧୀରେ କହିଲା, ମାମୁ ଟଙ୍କା ନେଇଯାଇଛନ୍ତି, ତାଙ୍କ ଝିଅ ପୁଷ୍ପାର ବାହାଘର ।

ଦେଖିଲି ଚମ୍ପା ନିରୂପାୟ । ମୁଣ୍ଡ ତଳକୁ କରି ଚମ୍ପା ମେନେଜରଙ୍କ ହାତରୁ ଫେରାଇ ନେଇଥିଲା ତା'ର ଇସ୍ତଫାପତ୍ରଟିକୁ ଏବଂ ଇସ୍ତଫାପତ୍ରଟିକୁ ଫେରାଇଦେଇ ଶାନ୍ତିରେ ନିଃଶ୍ୱାସ ମାରି ମେନେଜର ବସିପଡ଼ିଲେ । ମୋତେ ଗୋଟିଏ ସିଗ୍ରେଟ୍ ଅଫର କରି ମୁଠାଏ ଧନ୍ୟବାଦ ଅଜାଡ଼ିଦେଇ ହଳଦିଆ ଦାନ୍ତସବୁ ମେଲିଦେଇ ହସିଲେ । ଗଲାବେଳେ ମୋତେ ପାସ୍‌ଟିଏ ଦେଇ ଅନୁରୋଧ କଲେ, ସେଦିନ ନାଟକ ଦେଖିବାକୁ ଯିବାନିମନ୍ତେ ।

ସେଇ ଦୁର୍ଘଟଣା ପରେ ନାଟକ ଦେଖିବାର ଆଗ୍ରହ ମୋର ଲିଭିଯାଇଥିଲା । କନ୍ତୁ ଚମ୍ପାର ଅନୁରୋଧକୁ ମୁଁ ଏଡ଼ାଇପାରି ନଥିଲି । ବାଧହେଇ ଚମ୍ପା ଫେରି ଯାଇଥିଲା ଏକଥା ସତ, ଗଲାବେଳେ ଚମ୍ପାର ଦୁଇ ଆଖିରେ ଟଳମଳ କରୁଥିଲା ବେଦନାର ଅଶ୍ରୁବିନ୍ଦୁ । ବିଦାୟ ମୁହୂର୍ତ୍ତରେ ସେ କହିଲା, କଣ୍ଟଭାଇ, ଆଉ କେବେ ଯାଅ କି ନଯାଅ, ଆଜି କିନ୍ତୁ ନିଶ୍ଚୟ ଆସିବ, ମୋ ରାଣ । ଦିନେ ତୁମେ ସ୍କୁଲରେ ଯେଉଁ ଚମ୍ପାକୁ ଅଭିନୟ କରିବାକୁ ଶିଖେଇଥିଲ, ସେ ଚମ୍ପାକୁ ପେସାଦାର ମଞ୍ଚର ପାଦପ୍ରଦୀପତଳେ ଥରେ ଦେଖିବନି ?

ଚମ୍ପାର ଅନୁରୋଧ ସେଦିନ ଏଡ଼େଇଦେବା ମୋ ପକ୍ଷରେ ସମ୍ଭବ ନଥିଲା । ମୋ ଶିକ୍ଷୀର ମନ ତଳେ ଏକ ଗଭୀର ଆକର୍ଷଣ ମୁଁ ଅନୁଭବ କଲି ଏବଂ ମଞ୍ଚରେ ସେଦିନ ଚମ୍ପାର ଅଭିନୟରେ ଚମତ୍କାର ଶିଳ୍ପ ଚାତୁର୍ଯ୍ୟର ନମୁନା ଦେଖି ମୁଁ ବୁଝିଲି କେଉଁଠି ତା'ର

ସେ ପ୍ରେରଣାର ଉତ୍ସ । ନାଟକର କଥାବସ୍ତୁ ଦେଖି ମୁଁ ବିସ୍ମିତ ହେଲି, କାରଣ ସେଥିରେ ଚମ୍ପାର ଜୀବନର କରୁଣ କାହାଣୀ ହିଁ ପ୍ରତିଫଳିତ । ସବୁକ୍ଷେତ୍ରରେ ନାୟିକା ହିଁ ହୋଇଛି ନିଷ୍ଠୁର ଶୋଷଣର ଶିକାର । ନାୟିକାର ଶିକ୍ଷା, ତାର ଅର୍ଥନୈତିକ ଦୁର୍ବଳତା, ତାର ଦୈହିକ ରୂପ-ସୌନ୍ଦର୍ଯ୍ୟ ସବୁକିଛିକୁ ଏକ୍‌ସପ୍ଲୟେଟ୍ କରାଯାଇଥିଲା ଅତି ନିଷ୍ଠୁର ଭାବେ । ନାୟିକା ଜୀବନରେ ଦୂରବସ୍ଥାର ଚରମସୀମା ଛୁଇଁଛି ଯେତେବେଳେ ଖୋଦ୍ ଆଶ୍ରୟଦାତା ଆରମ୍ଭ କରିଛି ତା'ପ୍ରତି ଶୋଷଣ ଓ ଅତ୍ୟାଚାର । ପରିଣାମ ଭୟାବହ ହେବା ହିଁ ସ୍ୱାଭାବିକ । ନାୟିକା ନିଜ ହାତରେ ହିଁ ଲିଭେଇଦେଇଛି ନିଜର ଜୀବନ ଦୀପଟିକୁ ।

ଆଭିଭୂତ ହୋଇ ମୁଁ ଦେଖୁଥିଲି ନାୟିକା ଚମ୍ପାର ଅଭିନୟ । ଜୀବନ୍ତ ମର୍ମସ୍ପର୍ଶୀ । ନାୟିକାର ଅନ୍ତିମ ସଂଳାପରେ ବିମୁଗ୍ଧ ଦର୍ଶକମଣ୍ଡଳୀ ଅଜାଡ଼ିଦେଲେ ଅଜସ୍ର କରତାଳି । ମନଖୁସିରେ ମୋତେ ଜାବୁଡ଼ିଧରିଲେ ସ୍ୱୟଂ ମେନେଜର ସାହେବ । ପ୍ରଚ୍ଛଦପଟରେ ବେହେଲାର କରୁଣ ମୂର୍ଚ୍ଛନାରେ ଦୋହଲି ଉଠୁଥିଲା ସମବେତ ଦର୍ଶକଙ୍କ ମନ । ଧୀରେ ଧୀରେ ନଇଁପଡ଼ିଲା ମଞ୍ଚର ଯବନିକା ।

ଆସନ ଛାଡ଼ି ମୁଁ ଉଠିଲି । ଦ୍ରୁତ ପଦକ୍ଷେପରେ ମୁଁ ଆଗେଇଗଲି । ଚମ୍ପା ସଙ୍ଗେ ଦେଖାକରିବାକୁ ହେବ । ମୁଁ ନିଜେ ଚମ୍ପାକୁ ଜଣେଇ ଦେବି ମୋର ଚରମ ନିଷ୍ପତ୍ତି । ମେନେଜର ସମସ୍ତ ଋଣକୁ ମୁଁ ଶୁଝିଦେବି । ଚମ୍ପାକୁ ମୁଁ ମୁକ୍ତ କରିବି ସେ ନିଦାରୁଣ ନରକ ଯନ୍ତ୍ରଣାରୁ । ଆଉ ଯଦି ଚମ୍ପାର ନିଜର କିଛି ଆପତ୍ତି ନଥାଏ ମୁଁ ଚମ୍ପାକୁ ଗ୍ରହଣ କରିନେବି ନିଜର ସ୍ତ୍ରୀ ରୂପରେ, ସେ ନ ହେଉ ପଛକେ ବ୍ରାହ୍ମଣ ଘରର ଝିଅ ।

କିନ୍ତୁ ମୋର ନିଷ୍ପତ୍ତି ଜଣାଇବାରେ ବୋଧହୁଏ ବିଳମ୍ବ ହୋଇଯାଇଥିଲା । କାରଣ ସେଯାଏଁ ଚମ୍ପା ଶୋଇଥିଲା ମଞ୍ଚଉପରେ । ଡାକ୍ତର ଆସି ଜଣାଇଦେଲେ, ନାୟିକା ଚମ୍ପା ସତକୁ ସତ ବିଷ ପିଇ ଆତ୍ମହତ୍ୟା କରିଛି ।

କଳ୍ପତରୁ ନିରବ ହେଲା ।

ମୁଁ ଆକାଶକୁ ଚାହିଁ ଦେଖିଲି, ଦିଗନ୍ତରେ ସୂର୍ଯ୍ୟ ଅସ୍ତ ହେଇଯାଇଥିଲା ଅନେକବେଳୁ । ଚାରିଦିଗରୁ ନଇଁ ଆସୁଥିଲା ଗଭୀର ଅନ୍ଧକାର । ସେଇ ତରଳ ଅନ୍ଧାର ଭିତରେ ପଡ଼ିଆରେ ଗୋଟିଏ ଧଳା ରଙ୍ଗର ସମାଧି ପୀଠକୁ ଦେଖାଇ କଳ୍ପତରୁ କହୁଥିଲା, ଚମ୍ପା ଅବଶ୍ୟ ଲେଖିଦେଇ ଯାଇଥିଲା, ତା'ର ମୃତ୍ୟୁପାଇଁ କେହି ଦାୟୀ ନୁହନ୍ତି । କିନ୍ତୁ ଭାଇ, ମୁଁ ବିଚାରୁଛି, ଚମ୍ପାର ସେଇ ଅକାଳମୃତ୍ୟୁ ନିମନ୍ତେ ମୁଁ ସଂପୂର୍ଣ୍ଣରୂପେ ଦାୟୀ । ତେଣୁ ପ୍ରତିଦିନ ସଂଧ୍ୟାକୁ ମୁଁ ଏଠିକି ଆସେ, ଆଉ ଚମ୍ପାର ଏଇ ସମାଧିପୀଠରେ ତା'ର ପ୍ରିୟ ଚମ୍ପାଫୁଲଟିଏ ଅର୍ପଣ କରି ତା'ଠାରୁ ମୋର ଅପରାଧ ପାଇଁ କ୍ଷମା ଭିକ୍ଷା କରେ । କଳ୍ପତରୁ ନିରବ ହେଲା ।

ଅନ୍ଧାର ଭିତରେ ମୁଁ କଳ୍ପତରୁର ମୁହଁକୁ ସବ୍ଷ୍ଟଭାବେ ଦେଖିପାରୁ ନଥିଲି । କିନ୍ତୁ ମୁଁ ବୁଝିପାରୁଥିଲି, ତା'ର ଅନ୍ତର ଜଳୁଥିଲା ତା'ର ସେଇ ସ୍ୱୀକାରୋକ୍ତି ଭିତରେ । ମୃତ୍ୟୁର ଯନ୍ତ୍ରଣା ଠାରୁ ବଳିପଡୁଥିଲା ଅଦୃଶ୍ୟ ଅପରାଧବୋଧର ସେଇ ଦହନ ।

ପାର୍ବତ୍ୟ ଝରଣାର ଉଦ୍ଦାମ ଜଳସ୍ରୋତ ଝର ଝର ଶବ୍ଦ କରି ଝରିପଡୁଥିଲା ରାତିର ଅନ୍ଧକାର ଛାତି ଉପରେ ।



# ରକ୍ତଗୋଲାପ

ସ୍ମରଣ କରିବାକୁ ଚେଷ୍ଟାକଲେ ଅଧ୍ୟାପକ ବିଶ୍ୱଭୂଷଣ । କେଇ ମୁହୂର୍ତ୍ତ ଆଗରୁ ସେ ଯାହା ଦେଖୁଥିଲେ, ତାହା କ'ଣ ନିଛକ ସ୍ୱପ୍ନ ? ଓଃ, ମନରେ କି ଦାରୁଣ ଜ୍ୱାଳା ? କି ଅଦଭୂତ ସ୍ୱପ୍ନ ? ଏବେ ସେ ତାଙ୍କ ମନ ସମୁଦ୍ରରେ ଅନୁଭବ କରୁଛନ୍ତି ଏକ ଭୟଙ୍କର ଝଡ଼ର ତୀବ୍ର ସଂଚରଣ । ମନରେ ଦାଉଦାଉ ହେଇ ଜଳୁଛି ଲାଲ ବହ୍ନିଶିଖା । ସେ ନିଆଁ ଲିଭିବନି, ଅଥଚ ସେଥିରେ ସାରା ଜୀବନ ତାଙ୍କୁ ଜଳିବାକୁ ପଡ଼ିବ ।

ଦୀର୍ଘଶ୍ୱାସଟିଏ ବାହାରି ଆସିଲା ତାଙ୍କର ଛାତି ଭିତରୁ । ଶେଯରୁ ଉଠି ବସିଲେ ବିଶ୍ୱଭୂଷଣ । ଗୋଲାପ ବଗିଚାକୁ ଗଲେ ହୁଏତ ମନର ଜ୍ୱାଳା କମିବ, ଏଇ ଆଶା ନେଇ ସେ ଗଲେ ପ୍ରିୟ ବଗିଚାକୁ । ଜୀବନର ବହୁମୂଲ୍ୟ ଜିନିଷ ମଧ୍ୟ ତାଙ୍କର ଏଇ ରକ୍ତଗୋଲାପ ଆଗରେ ମନେ ହୁଏ ଅତି ତୁଚ୍ଛ । ଏ ଗୋଲାପ ଗଛ ଗୁଡ଼ିକ ତାଙ୍କ ଜୀବନର ଅମୂଲ୍ୟ ସଂଗ୍ରହ କହିଲେ ଚଳେ । ପ୍ରତ୍ୟେକ ସୁରଭିତ ରକ୍ତଗୋଲାପ ତାଙ୍କର ଅନ୍ତରର ଗଭୀର ସ୍ନେହରେ ଲାଳିତ । ମମତାର ଜୀବନ୍ତ ପ୍ରତୀକ ପ୍ରତ୍ୟେକ ଫୁଲ । ସନ୍ତାନ ମଧ୍ୟରେ ଯେପରି ଅନୁଭୂତ ହୁଏ ଜନନୀର ଆତ୍ମସତ୍ତା, ଠିକ୍ ସେମିତି, ପ୍ରତି ଗୋଲାପର କଅଁଳ ପାଖୁଡ଼ାରେ ସେ ଅନୁଭବ କରିଥାନ୍ତି ସୁଷମାର ସେଇ କମନୀୟ ତନୁଲତାର ସ୍ନିଗ୍ଧ ସୁରଭିତ ମଧୁର ସ୍ପର୍ଶ । ସେଇ ରକ୍ତଗୋଲାପଠାରୁ ସେ ଶୁଣି ପାରନ୍ତି ସୁଦୂର ଅତୀତରେ ହଜିଗଲା ହୃଦୟର ଏକ ଛନ୍ଦମୟ ରାଗିଣୀର ମୂର୍ଚ୍ଛନା ।

ଶୋଇବାଘରୁ ଯାଇ ବଗିଚାରେ ପହଞ୍ଚି ଚମକି ଉଠିଲେ ବିଶ୍ୱଭୂଷଣ । ଏ କ'ଣ ? ସେ କ'ଣ ଦେଖୁଛନ୍ତି ତାଙ୍କର ପ୍ରିୟ ଗୋଲାପ ବଗିଚାରେ ? ଯେତ ସ୍ନିଗ୍ଧ-ସୁରଭିତ ରକ୍ତଗୋଲାପର କୋମଳ ପାଖୁଡ଼ା ନୁହେଁ, ସତେ ଯେମିତି ଜ୍ୱଳମାନ ବହ୍ନିଶିଖା ! ଆଜି ଶ୍ରାବଣପୂର୍ଣ୍ଣିମାର ଜହ୍ନ ଆଲୁଅରେ ସେ ଦେଖିପାରୁଛନ୍ତି ଗୋଲାପ ଫୁଲ ଦେହରୁ ଝରିପଡ଼ିଛି ରକ୍ତର ତରଙ୍ଗ । କୁଆଡ଼େ ହଜି ଯାଇଛି ସେହି ସ୍ନିଗ୍ଧ ସୁରଭିତ କୋମଳ ଲାବଣ୍ୟ ?

ହତାଶ ଆଖିରେ ସେ ଚାହିଁଲେ ନୀରବ ରାତିର ଦିଗହରା ଆକାଶକୁ । ଶ୍ରାବଣପୂନେଇ ଜହ୍ନ ଆଉ ମେଘର ଆକାଶ କଳା ବଉଦର ଅଞ୍ଚଳରେ ଜହ୍ନର ଲୁଚକାଳି । ଜହ୍ନ ନୁହେଁ, ମନେହେଲା ଦୁଷ୍ଟ ଶିଶୁଟିଏ । ମନ ମେଘରେ ଘନର ଆବରଣ ଭିତରୁ ଧୀରେ ଧୀରେ ଫୁଟି ଉଠିଲା ସେଇ ସ୍ୱପ୍ନଟି : ହଁ, ସେଇ ସ୍ୱପ୍ନରେ ମନରେ ଆକୁଳ ଆବେଗନେଇ ବିଶ୍ୱଭୂଷଣ ଧାଇଁ ଯାଇଥିଲେ ସୁଷମା ଘରକୁ । ସେଠାରେ ପହଞ୍ଚି ସେ ଦେଖିଲେ, ସୁଷମା

ଶୋଇଯାଇଛି । ସୁଷମା ରୂପସୀ, ତନ୍ୱୀ । ମୁଣ୍ଡରେ ଅଜସ୍ର କେଶଗୁଚ୍ଛ ଏବଂ ତା ଭିତରେ କମନୀୟ ମୁହଁଟି, ସତେ ଯେମିତି ଦରବିକଶିତ ରକ୍ତଗୋଲାପଟିଏ । ମୁଦ୍ରିତ ଦୁଇଆଖିର ଦୀର୍ଘ ଭ୍ରୂଲତାରେ ଅଙ୍କିତ ହୋଇଥିଲା ସୁଷମା ମନର ଗଭୀର ପ୍ରଶାନ୍ତି ।

ଜଣେ ସୁପ୍ତା ନାରୀଙ୍କୁ ଏମିତି ଏକାନ୍ତରେ ଦେଖିବା ଶୋଭନୀୟ ନୁହେଁ । ଏଣୁ ବିଶ୍ୱଭୂଷଣଙ୍କ ମନରେ ଏକ ଗଭୀର ଦ୍ୱନ୍ଦର ଆଲୋଡ଼ନ ହୋଇଥିଲା । ମନରେ ଉତ୍କଣ୍ଠା । ମନକଥା ସୁଷମାକୁ ନଜଣାଇ ଫେରିଯିବା ସଂଭବ ନୁହେଁ । କିଏ ଜାଣେ, ଜୀବନରେ ସୁଷମା ସଙ୍ଗେ ଆଉ ଦେଖାହେବ କି ନାହିଁ ।

ହଁ ଅସମୟରେ ଅନାହୂତ ଆଗନ୍ତୁକର ପାଦଶବ୍ଦରେ ହୁଏତ ତୁଟିଯାଇଥିଲା ସୁଷମାର ନିଦ୍ରା । ସେ ମେଲିଥିଲା ତା'ର ନୀଳକଇଁ ଆଖିର ପାଖୁଡ଼ା ଯୋଡ଼ିକ । ସୁଷମା ଦେଖିଲା, ଆଗରେ ଆଉ କେହି ନୁହେଁ - ସ୍ୱୟଂ ବିଶ୍ୱଭୂଷଣ । ବିଶ୍ୱଭୂଷଣ ଲକ୍ଷ୍ୟ କରି ଦେଖିଲେ, ସୁଷମାର ଗୋଲାପି ଓଠରେ ଖେଳିଯାଇଥିଲା ଏକ ସୁପ୍ତ ପୁଲକର ମଧୁର ରୋମାଞ୍ଚ । କିନ୍ତୁ, ସେ ପୁଲକ, ସେ ରୋମାଞ୍ଚ କ୍ଷଣିକ ପାଇଁ । ଆଗରେ ବିଶ୍ୱଭୂଷଣଙ୍କୁ ଦେଖି ସଚେତନ ହୋଇ ଉଠିଲା ସୁଷମା, କାରଣ ଅକସ୍ମାତ୍ କ'ଣ ଭାବି କୁଞ୍ଚିତ କଲା ତାର ଖଣ୍ଡାଧାର ଭଳି ଦୀର୍ଘ ଭ୍ରୂଲତାକୁ । କ୍ଷଣିକ ମଧ୍ୟରେ ସେଥିରେ ଫୁଟି ଉଠିଥିଲା ବିରକ୍ତିର ସ୍ୱାକ୍ଷର । ସତେ ଯେମିତି ସେ ଚାହାଣୀରେ ବିଶ୍ୱଭୂଷଣଙ୍କ ପୌରୁଷରେ ଲାଗିଲା ବିଦ୍ୟୁତର ଆଘାତ ।

ବିଶ୍ୱଭୂଷଣ ଦେଖିଲେ, ଶେଯରୁ ଉଠିପଡ଼ି ସୁଷମା ସଜାଡ଼ିନେଲା ତା' ଦେହର ଅବିନ୍ୟସ୍ତ ଅଞ୍ଚଳକୁ । ଲାବଣ୍ୟହୀନ ରକ୍ଷ କଣ୍ଠ ସ୍ୱରରେ ସେ ପ୍ରଶ୍ନ କଲା, ଏତେ ରାତିରେ ଆପଣ ? ହଁ ସୁଷମା, ଏଠାରୁ ବିଦାୟ ନେବା ପୂର୍ବରୁ ତୁମକୁ ଜରୁରୀ କଥା ପଦେ କହିବା ପାଇଁ ମୁଁ ଆସିଥିଲି । ବିଶ୍ୱଭୂଷଣ ସ୍ୱୀକାର କରିଥିଲେ ।

ଜରୁରୀ କଥା ? ସୁଷମାର ଦି' ଆଖିରେ ଖେଳିଗଲା ବିଦ୍ରୂପର ଶାଣିତ ତରବାରୀର ଚମକ । ଶରାହତ ବନହଂସୀ ଭଳି ତାର ଶଂଖ-ଶୁଭ୍ର ଗ୍ରୀବାଟିକୁ ବୁଲାଇ ସେ ପ୍ରଶ୍ନ କରିଥିଲା, କ'ଣ ଏମିତି ଜରୁରୀ କଥା ଯେ ଏତେ ରାତିରେ ଆପଣ ଚାଲି ଆସିଲେ ମୋ ଘରକୁ ?

ତା'ପରେ ଆହତ ନାଗୁଣୀ ଭଳି ସୁଷମା କହିଥିଲା, ଆପଣ ନିଶ୍ଚୟ ଦେଖି ପାରୁଛନ୍ତି ସୁଷମାର ସୀମନ୍ତରେ ସିନ୍ଦୂରର ରକ୍ତ ରେଖା ! ବିଶ୍ୱଭୂଷଣଙ୍କ ନିଜ ମୁହଁ ଶାଣିତ ମନ୍ତବ୍ୟ ଫେରି ଆସୁଥିଲା ଅଭିମାନୀ ସୁଷମାର କଣ୍ଠରୁ । ଲାଜ, ସଂକୋଚ, ଅନୁଶୋଚନାରେ ଜର୍ଜରିତ ହୋଇଥିଲା ବିଶ୍ୱଭୂଷଣଙ୍କ ସର୍ବାଙ୍ଗ । ମନେହେଲା, ସୁଷମାର କପାଳର ଉଇଁଲା ଜହ୍ନଭଳି ଲାଲ ସିନ୍ଦୂର ଟୋପା ତାଙ୍କୁ ପରିହାସ କରୁଛି । ଉପହାସ କରୁଛି, ସୁଷମାର ସୀମନ୍ତର ଦୀର୍ଘ ସିନ୍ଦୂର ରେଖା ।

ମନକଥା ମନରେ ଗୋପନ ରଖି ବିଶ୍ୱଭୂଷଣ ନୀରବରେ ଫେରିଗଲେ କ'ଣ ସତରେ ଖୁସି ହେବ ସୁଷମାର ମନ ? ଭାବୁଥିଲେ ବିଶ୍ୱଭୂଷଣ ଆଉ ଠିକ୍ ସେତିକିବେଳେ ଆକାଶରେ ଆକସ୍ମିକ ହୋଇଥିଲା ବଜ୍ରାଘାତ । ସେଇ ଘଡ଼ଘଡ଼ି ଶବ୍ଦରେ ଭାଙ୍ଗି ଯାଇଥିଲା ତାଙ୍କର ନିଦ, ତୁଟି ଯାଇଥିଲା ତାଙ୍କର ସେ ସ୍ୱପ୍ନ । ତାଙ୍କର ଗୋଲାପ ବଗିଚାରେ ଠିଆହୋଇ ସେ ଭାବିବାକୁ ଲାଗିଲେ, ସତରେ କି ଅଦ୍‌ଭୂତ ଏ ସ୍ୱପ୍ନ ? କି ମାରାତ୍ମକ ଭାବେ ଭୟଙ୍କର ?

ହଁ, ବିଶ୍ୱଭୂଷଣଙ୍କର ମନେ ପଡ଼ିଲା, ଆଜି ବି ସେଇ ଶ୍ରାବଣ ପୂନେଇଁର ରାତି । ଆକାଶରେ ସେଇ ଜହ୍ନ-ମେଘର ଖେଳ । ପୃଥିବୀ ନୀରବ ନିସ୍ତବ୍ଧ । ଜହ୍ନ ଆଲୁଅରେ ଦୋହଲୁଛି ରକ୍ତ ଗୋଲାପ ଗୁଡ଼ିକ । ଦୋଲୁଥିବା ଗୋଲାପ ଗୁଡ଼ିକ ଦେଖି ସେଇ ଗୋଲାପ ଭଳି ଗୋଟିଏ ମୁହଁ ହସି ଉଠିଲା ତାଙ୍କର ଆଖି ଆଗରେ । ସେତ ସେଇ ସୁ ମୋର । କିନ୍ତୁ, ସୁଷମା ଏବେ କେଉଁଠି ? କିଏ ଜାଣେ ? ଜୀବନର ଏଇ ଦ୍ୱନ୍ଦ୍ୱମୟ ନିଦାରୁଣ ମୁହୂର୍ତ୍ତରେ ବିଶ୍ୱଭୂଷଣଙ୍କୁ କିଏ ଦେଇ ପାରିବ ସୁଷମାର ଖବର । ସୁଷମା, ଏବେ ସେ କ'ଣ ଭାରତରେ ଅଛି ? ନା ଭାରତ ବାହାରେ ପୃଥିବୀର ଅନ୍ୟ କେଉଁ ପ୍ରାନ୍ତରେ ? ହଁ, ସୁଷମା ଝିଅଟି ଥିଲା ପ୍ରକୃତ ଜିନିୟସ । ସୁଷମା ଜୀବନର ବିପୁଳ ସଂଭାବନାକୁ ଯେ ଆବିଷ୍କାର କରିଥିଲା, ସେ ତ ନିଜେ ଅଧ୍ୟାପକ ବିଶ୍ୱଭୂଷଣ । ହଁ, ପରିଶେଷରେ ନିୟୁକ୍ଲିୟର ବିଜ୍ଞାନରେ ଜ୍ଞାନ ଆହରଣ କରିବା ପାଇଁ ସୁଷମା ଚାଲି ଯାଇଥିଲା ଆମେରିକା । ଏବଂ ତା'ପରେ ଆଉ ସୁଷମାର ଖବର ରଖିବା ସମ୍ଭବ ହୋଇନାହିଁ ବିଶ୍ୱଭୂଷଣଙ୍କ ପକ୍ଷରେ । ଏହା ମଧ୍ୟରେ ବିତିଗଲାଣି ଦୀର୍ଘ କେତେବର୍ଷ । ଅଥଚ ସେ ବୁଝି ପାରୁନାହାନ୍ତି ତାଙ୍କ ମନ ହୃଦରେ ଏପରି ତୀବ୍ର ଝଡ଼ର ସଂଚରଣ କାହିଁକି ? କାହିଁକି ଏ ଭୟଙ୍କର ସ୍ୱପ୍ନର ସୃଷ୍ଟି ?

ବିଶ୍ୱଭୂଷଣ ସ୍ମରଣ କରିବାକୁ ଲାଗିଲେ ସେଇ ଦୀର୍ଘ ପନ୍ଦର ବର୍ଷ ତଳର କାହାଣୀ ! ସେଇ ସହରରେ ନୂଆ ହୋଇ ସେ ଯୋଗ ଦେଇଥିଲେ ଅଧ୍ୟାପକ ଭାବରେ । ଆଜିକା ଭଳି ସେଦିନ ମଧ୍ୟ ଥିଲା ଏକ ବର୍ଷାମୁଖର ଶ୍ରାବଣ ପୂର୍ଣ୍ଣିମାର ରାତି । ଆକାଶରୁ ଝରି ପଡୁଥିଲା ବର୍ଷା ବିନ୍ଦୁର ରୂପାଫୁଲ ସବୁ । ବନପଥରେ ଝରି ପଡୁଥିଲା କଦମ୍ବର ଅଜସ୍ର ସ୍ୱର୍ଣ୍ଣରେଣୁ । ତରୁଣ ବିଶ୍ୱଭୂଷଣ କବିର ମନ ନେଇ ଝରକା ବାଟେ ଦେଖୁଥିଲେ ପ୍ରକୃତିର ସେଇ କମନୀୟ ସୌନ୍ଦର୍ଯ୍ୟ ।

ସେଦିନ ସେଇ ନିର୍ଜନ ଘରେ ଜଣେ ତରୁଣୀକୁ ବର୍ଷାରେ ଭିଜି ଭିଜି ଆସିବାର ଦେଖି ବିସ୍ମିତ ହୋଇଥିଲେ ବିଶ୍ୱଭୂଷଣ । ସେ ପଚାରିଥିଲେ, 'ସୁଷମା, ତୁମେ ?' ସୁଷମାର ଦୁଇ ଆଖିରେ କିନ୍ତୁ ଖେଳୁଥିଲା ଏକ ଦୁଷ୍ଟ ଶିଶୁର ନିଷ୍ପାପ ହସର ଲହରୀ । ମୁଣ୍ଡର ଚୂର୍ଣ୍ଣ କୁନ୍ତଳରୁ ଝରି ପଡୁଥିଲା ବିନ୍ଦୁ ବିନ୍ଦୁ ବର୍ଷାଜଳ । ସୁଷମାର କମନୀୟ ମୁହଁରେ କିନ୍ତୁ ଲେଖାଥିଲା ପ୍ରତ୍ୟୟର ଅଭୟ ମୁଦ୍ରା ।

ତଥାପି ସେ ପଚାରିଥିଲେ, ତୁମ ସାଙ୍ଗରେ ଆଉ କିଏ ଆସିଛି ?

ନା, ଆଉ କେହି ଆସି ନାହାନ୍ତି । ମୁଁ ଏକୁଟିଆ ଆସିଛି । ପଢୁ ପଢୁ ଭଲ ଲାଗିଲାନି । ତେଣୁ ଚାଲି ଆସିଲି । ବେଶ ବେପରୁଆ ଢ଼ଙ୍ଗରେ କହୁଥିଲା ସୁଷମା ।

ଶଙ୍କିତ ହୋଇ ଉଠିଥିଲା ତରୁଣ ବିଶ୍ୱଭୂଷଣର ମନ । ସେ କହିଥିଲେ, ତୁମେ ଏକୁଟିଆ ? ରାତିବି ଢ଼େର ହେଲାଣି । ଜାଣିଛ, ଛୋଟ ସହର । କଥାଟା କଲେଜରେ ଅଛପା ରହିବନି ।

ହଁ ସାର, ଆପଣଙ୍କୁ ମୋର ଗୋଟିଏ କଥା କହିବାର ଥିଲା, ସେଥିପାଇଁ ମୁଁ ଚାଲି ଆସିଲି ଆପଣଙ୍କ ପାଖକୁ । କହିଲା ସୁଷମା ।

ସୂର୍ଯ୍ୟୋଦୟରେ ରାତିର ଅନ୍ଧାର ହଜିଗଲା ପରି ତାରୁଣ୍ୟର ଚପଳତା ପଲକରେ ହଜିଗଲା ସୁଷମା ମୁହଁରୁ । ସେଠି ରୂପ ପାଇଲା ଏକ ନାରୀର ଆନ୍ତରିକ ଆବେଦନ ।

ବିଶ୍ୱଭୂଷଣ ବେଶ ବୁଝିପାରିଲେ, ଏଇ ବର୍ଷାମୁଖର ଜ୍ୟୋସ୍ନା ରାତିରେ ସୁଷମା ଅକସ୍ମାତ ଚାଲିଆସିନି । ତା'ମନରେ ରହିଛି ଦୀର୍ଘ ଦିନର ପ୍ରସ୍ତୁତି । ବର୍ଷାଝଡ଼କୁ ଭ୍ରୁକ୍ଷେପ ନକରି ସେ ଆଜି କବି କାଳିଦାସଙ୍କର ଅଭିସାରିକା ସାଜିଛି । ତଥାପି ସେ ପଚାରିଥିଲେ, କ'ଣ କହିଲ, କଥା କହିବାର ଥିଲା ? ଏମିତି କ'ଣ ଜରୁରୀ କଥା ଯେ ସେଥିପାଇଁ ଏତେ ରାତିରେ ଏଇ ମେଘ ବର୍ଷାରେ ତୁମେ ଏକୁଟିଆ ଚାଲି ଆସିଲ ସୁଷମା ?

ବିଶ୍ୱଭୂଷଣଙ୍କ କଥା ଶେଷ ହେବାଆଗରୁ ଖୁବ୍ ପାଖକୁ ଆଗେଇ ଆସିଥିଲା ସୁଷମା । ତା' ପଦକ୍ଷେପରେ ଅଙ୍କିତ ହେଉଥିଲା ପ୍ରତ୍ୟୟର ସ୍ୱାକ୍ଷର । ସେ ସ୍ପଷ୍ଟ ଦେଖିପାରିଲା ସୁଷମା ଦୁଇ ହାତରେ ଟେକୁଥିବା ସଜଫୁଟା ରକ୍ତଗୋଲାପର ସୁନ୍ଦର ମାଳଟିଏ । କିଛି କହିବାକୁ ଅବକାଶ ନଦେଇ ସେଇ ଗୋଲାପମାଳଟିକୁ ସରାଗରେ ସୁଷମା ପିନ୍ଧେଇ ଦେଇଥିଲା ବିଶ୍ୱଭୂଷଣଙ୍କ ଗଳାରେ ।

ସମୟର ଆକାଶରେ ସେ ମଧୁର ସ୍ମୃତି ଏକ ଉଜ୍ଜ୍ୱଳ ତରାଭଳି ବିଶ୍ୱଭୂଷଣଙ୍କ ମନରେ ଅମ୍ଳାନ ରହିଛି । ତାଙ୍କ ଜୀବନରେ ସେ ତ ଏକ ଅନନୁଭୂତ ଦୁର୍ବଳ ମୁହୂର୍ତ୍ତ । ସଜ ଗୋଲାପର ସ୍ନିଗ୍ଧ ସୌରଭରେ ଆକୁଳିତ ସେଇ ଶ୍ରାବଣୀ ସନ୍ଧ୍ୟା, ସେ ତ ଏକ ଅଭୁଲା ସ୍ମୃତି । ତାଙ୍କର ତରୁଣ-ମନ ସମୁଦ୍ରରେ ଖେଳିଯାଉଥିଲା ଏକ ରୋମାଞ୍ଚକର ଅନୁଭୂତି । ସୁଷମାର ନିବିଡ଼ ସାନ୍ନିଧ୍ୟର ମଧୁର ଆବେଗରେ ଉନ୍ମନା ହୋଇଯାଉଥିଲା ତାଙ୍କର ସମଗ୍ର ଚିତ୍ତ । ସେ ଅନୁଭବ କଲେ ତନ୍ୱୀ ସୁଷମାର ସେଇ ଲାବଣ୍ୟଭରା ତନୁର ପ୍ରଥମ କଦମ୍ବର ରୋମାଞ୍ଚ ।

କିନ୍ତୁ କ୍ରମେ ବିଶ୍ୱଭୂଷଣ ସଚେତନ ହେଲେ । ମୁହୂର୍ତ୍ତକ ପାଇଁ ହଜି ଯାଇଥିବା ଆତ୍ମସତ୍ତାକୁ ସେ ଖୋଜି ପାଇଲେ । ଖୋଜି ପାଇଲେ ନିଜର ସ୍ଥିତିକୁ । ସମ୍ବିତ ପାଇ

ଦୁଇପାଦ ପଛେଇ ଆସିଲେ । ବିବେକର ଆଘାତରେ ସେ କହିବାକୁ ଲାଗିଲେ, ସୁଷମା, ତୁମେ ଯେ କଣ କଲ ? ହୁଏତ ତୁମେ ବୁଝିପାରୁନ ଗୋଟିଏ ମୁହୂର୍ତ୍ତର ଆବେଗରେ... ।

କିନ୍ତୁ ସୁଷମାର ଓଠରେ ଭଉଁରୀ ଭଳି ଖେଳୁଥିଲା ଦୁଷ୍ଟାମୀର ହସ । ଆଖିରେ ଭରି ଯାଇଥିଲା ଲାଜସିକ୍ତ ମଧୁର ତୃପ୍ତିର ଚାହାଣୀ । ସେ ଫିସ୍ ଫିସ୍ କହୁଥିଲା, ମୁଁ ଠିକ୍ ବୁଝିଛି, ସାର୍, ମୁଁ କିଛି ଭୁଲ କରିନାହିଁ ।

ସେଇ ମୁହୂର୍ତ୍ତରେ ବିଶ୍ୱଭୂଷଣ ଆଉ କିଛି କହିବାକୁ ଚାହିଁନଥିଲେ । କିନ୍ତୁ ସାମାଜିକ ବିବେକର ବାଣୀକୁ ସଂଯତ କରି ନପାରି କହିଥିଲେ, ତୁମେ କଣ ଭୁଲିଯାଉଛ ସୁଷମା ତୁମ ନିଜକୁ ? ତୁମେତ କୁମାରୀ ଝିଅଟିଏ ନୁହଁ । ତୁମେ ବିବାହିତା । ତୁମ ନିଜର ଦେହ ଉପରେ ତୁମର ଅଧିକାର କେତେ ତାହା କଣ ତୁମେ ବିଚାରିଛ ?

ମୁହୂର୍ତ୍ତେ ଅପେକ୍ଷା ନକରି ସୁଷମା ଉତ୍ତର ଦେଇଥିଲା, କେଉଁ ଅତୀତ ଦିନର ପିଲା ବୟସରେ ଦିନେ ମୋ ନନା-ବୋଉ ବେଦୀରେ ବସେଇ କଣ୍ଢେଇଖେଳ ଖେଳିଥିଲେ । ସେଇଟା ସେମାନଙ୍କର ଖୁସୀ ପାଇଁ । ସେ ସମୟ ଆଜି ବଦଳି ଗଲାଣି । ସେ ବିବାହକୁ ମୁଁ ଆଉ ମାନି ନେବାକୁ ଚାହୁଁନାହିଁ ।''

ମାନି ନେବାକୁ ଚାହୁଁ ନାହିଁ ମାନେ ? ଦୃଢ଼ ଆଘାତ କରିଥିଲେ ବିଶ୍ୱଭୂଷଣ ।

ଆପଣ ଜାଣିଛନ୍ତି ? ସେଇ ନାମକୁ ମାତ୍ର ବାହାଘର ପରେ ହାୟେର ଷ୍ଟଡ଼ି ନାଁରେ ସେ ଏଦେଶ ଛାଡ଼ି ଚାଲିଗଲେ ଇଂଲଣ୍ଡକୁ । ଫେରିବା ତ ଦୂରର କଥା, ଚିଠିପତ୍ରର ଯୋଗାଯୋଗ ବି ରଖିନାହାନ୍ତି ।

ହଁ, ଏଠିକି ଆସିଲା ପରେ ତୁମ ଘରେ ସେ କଥା ମୁଁ ଶୁଣିଥିଲି । ବିଶ୍ୱଭୂଷଣ ସ୍ୱୀକାର କଲେ ।

ଆପଣ ସେକଥା ଶୁଣିଛନ୍ତି, ସତ, ହେଲେ ଯେ ନିଷ୍ଠୁର ଅବଜ୍ଞା, ନୀରବ ଅତ୍ୟାଚାରର ଅନ୍ତରାଳରେ ଯେଉଁ ଜଘନ୍ୟ ରହସ୍ୟ ଲୁଚି ରହିଛି ସେ କଥା ଆପଣ ଜାଣି ନାହାନ୍ତି । ଜଘନ୍ୟ ରହସ୍ୟ ? ବିଶ୍ୱଭୂଷଣଙ୍କର ମନେ ହେଲା ଏକ ବିସ୍ଫୋରଣ ଘଟିବାକୁ ଯାଉଛି ।

ଉତ୍ତରରେ ସୁଷମା କହିଲା, ହଁ ଆମ ଠାରୁ ତାଙ୍କର ବିଲାତ ଯାତ୍ରାର ଖର୍ଚ୍ଚ କୌଣସି ପ୍ରକାରେ ଆଦାୟ କରି ଇଂଲଣ୍ଡରେ ଭୋଗବିଳାସରେ ନିଜକୁ ହଜେଇଦେବା ଥିଲା ତାଙ୍କର ମୂଳ ଉଦ୍ଦେଶ୍ୟ । ସେତେବେଳେ ମୋର ବୟସ ଅଳ୍ପ । ସବୁକଥା ବୁଝିବାର କ୍ଷମତା ନ ଥିଲା । କିନ୍ତୁ ଏବେ ମୁଁ ବୁଝୁଛି ସେ ପ୍ରତିକାରହୀନ ଯନ୍ତ୍ରଣାର ଶେଷ ନାହିଁ ।

କ'ଣ କହୁଛ ସୁଷମା ?

କେବଳ ସେତିକି ନୁହେଁ । ଏ ଦେଶର କୌଣସି ଝିଅ ତାଙ୍କ ପାଇଁ ଉପଯୁକ୍ତ ନୁହନ୍ତି ।

ମାନେ ?

ଏ ଦେଶରେ କିଟୀ, ସୁଶାନଙ୍କ ଭଳି ଝିଅ ଆସିବେ କେଉଁଠୁ ?

କିଟୀ, ସୁଶାନ ? ବିସ୍ମୟରେ ପ୍ରଶ୍ନ କରିଥିଲେ ବିଶ୍ୱଭୂଷଣ ।

ହଁ, କିଟୀ, ସୁଶାସନ ।

ସୁଷମାର ବେଦନାହତ ମୁହଁକୁ ଚାହିଁ କୌଣସି ସାନ୍ତ୍ୱନାର ଭାଷା ଖୋଜି ପାଇନଥିଲେ ବିଶ୍ୱଭୂଷଣ । ସୁଷମା କହିଚାଲିଥିଲା, ସାର୍, ସେ ସବୁ ଅନେକ କାହାଣୀ । ସେ ସବୁ କଥା ଶୁଣି ଆପଣଙ୍କର ଲାଭ କ'ଣ ? ଆପଣ ସେ ସବୁକୁ ପାସୋରି ପକାନ୍ତୁ । ବରଂ ଏ ମିଛ ବନ୍ଧନରୁ ଆପଣ ମୋତେ ମୁକ୍ତି ଦିଅନ୍ତୁ ।

ମିଛ ବନ୍ଧନ ? ସେ ଚମକି ଉଠିଲେ ସୁଷମାର କଥା ଶୁଣି ।

ହଁ ସାର୍, ମିଛ ବନ୍ଧନ । ଚାଲନ୍ତୁ, ଆମେ ଏଠୁ ଚାଲିଯିବା ଅନେକ ଦୂରକୁ । ମୋ' ଜୀବନର ଯାହାକିଛି ସଂଭାବନା, ଯାହା କିଛି କୃତିତ୍ୱ ସେସବୁ ତ ଆପଣଙ୍କର ଅବଦାନ । ସେ ଋଣ ଶୁଝିବାକୁ ମୋତେ କ'ଣ ସୁଯୋଗ ଦେବେ ନାହିଁ ?

ଋଣ ? ନା ସୁଷମା । କସ୍ତୁରୀମୃଗ କସ୍ତୁରୀର ସଂଧାନ ପାଇ ନଥାଏ । ତୁମେ ତୁମର ଜିନିୟସ, ତୁମର ଟ୍ୟାଲେଣ୍ଟ ବିଷୟରେ ଅବହିତ ନୁହେଁ । ତୁମର ସେଇ ଅନ୍ତର୍ନିହିତ ପ୍ରତିଭାକୁ ବିକଶିତ କରିବାରେ ହୁଏତ ମୁଁ କିଛି ପ୍ରେରଣା ଦେଇଛି ।

ହଁ, ସେଇୟା ମୋ'ର ଏଇ ଅଲୋଡ଼ା ଜୀବନର ଏକମାତ୍ର ଅବଲମ୍ବନ । ମୋ' ଭିତରେ କିମ୍ବା ବାହାରେ କିଛି ବିଶେଷତ୍ୱ ଦେଖି ନପାରି ଛିଣ୍ଡା କାଗଜ ଭଳି ଜଣେ ବ୍ୟକ୍ତି ମୋତେ ଡ଼ଷ୍ଟବିନ୍‌ରେ ପକେଇ ଦେଇ ଚାଲିଗଲା । ଅଥଚ ଆପଣ ଆବିଷ୍କାର କଲେ ମୋ ଭିତରେ ଅନେକ ବିଭବର ସମ୍ଭାବନା ।

ଫୁଲର ସୌରଭ ଆବିଷ୍କାରର ଅପେକ୍ଷା ରଖେନାହିଁ ସୁଷମା ! କହିଲେ ବିଶ୍ୱଭୂଷଣ ।

ଆପଣଙ୍କ ସ୍ୱପ୍ନକୁ ଆପଣ ରୂପ ଦେବେ ମୋ' ଭିତରେ, ସୁଷମା ବୋଲି ଏଇ ଝିଅ ମଧ୍ୟରେ, ଯାହାକୁ ଆପଣ... । ଏ କଥା କହୁ କହୁ ଭାବାବେଗରେ ଅଧୀର ହୋଇ ସୁଷମା ଅଜାଡ଼ି ହୋଇପଡ଼ିଲା ବିଶ୍ୱଭୂଷଣଙ୍କ ଛାତି ଉପରେ । ସୁଷମାର ତନୁଲତାର ନିବିଡ଼ ସ୍ପର୍ଶରେ ସେ ଆତ୍ମସତ୍ତା ହଜେଇ ପକେଇଲେ । ପାସୋରି ଗଲେ ନିଜକୁ । ବିତିଯାଇଥିଲା କେତୋଟି ବିରଳ ମୁହୂର୍ତ୍ତ । ବାହାରେ ଝଡ଼ ବର୍ଷା ହେଉଥିଲା କିନ୍ତୁ ଶ୍ରାବଣ ରାତିର ସେ

ଝଡ଼ ବର୍ଷା ଠାରୁ ପ୍ରବଳତର ଆଲୋଡ଼ନ ବିଶ୍ୱଭୂଷଣ ଅନୁଭବ କଲେ ନିଜ ମଧ୍ୟରେ । ପ୍ରଥମକରି ସେ ଗଭୀର ଦୃଷ୍ଟିନିକ୍ଷେପ କଲେ ନିଜ ମନ ଭିତରକୁ । ତାଙ୍କ ଜୀବନରେ ଯେଉଁ ଝିଅଟିର ଅନନ୍ୟ ପ୍ରତିଭା ତାଙ୍କୁ ସ୍ୱତଃ ମୁଗ୍ଧ କରିଥିଲା ସେ ସେଇ ସୁଷମା । ତେଣୁ ଅନ୍ତର ଦେଇ ସେ ମଧ୍ୟ ଭଲ ପାଇଥିଲେ ସେଇ ଝିଅଟିକୁ । କିନ୍ତୁ ସେ ନିଜକୁ ପ୍ରଶ୍ନ କରିଥିଲେ, ସୁଷମାକୁ ଭଲ ପାଇବାର ଅଧିକାର ତାଙ୍କୁ କିଏ ଦେବ ? ମନେ ହେଲା, ଭୂମିକମ୍ପରେ ତାଙ୍କ ପାଦ ଥରି ଉଠିଛି । ସୁଷମାର ନିବିଡ଼ ସାନ୍ନିଧ୍ୟରୁ ଜୋର କରି ନିଜକୁ ଓଟାରି ଆଣିଲେ । କିନ୍ତୁ ଏକ ଅପ୍ରକାଶ୍ୟ ଦହନ, ଅବ୍ୟକ୍ତ ଯନ୍ତ୍ରଣା ସେ ଅନୁଭବ କଲେ । ଭାବିଲେ ତାହା ଭଲ ପାଇବାର ଯନ୍ତ୍ରଣା । ସେ ସୁଷମାକୁ କହିଲେ, ସୁଷମା, ତୁମ ନିଜକୁ ଥରେ ଚାହିଁ ଦେଖ । ତୁମ ମଥାରେ ଦାଉ ଦାଉ ହୋଇ ଜଳୁଛି, ଲାଲ ସିନ୍ଦୂର ରେଖା, ତାକୁ ତୁମେ କଣ ଅସ୍ୱୀକାର କରିପାରିବ ? ତୁମର ବାପା-ବୋଉ, ଆତ୍ମୀୟ-ସ୍ୱଜନ ସେ ସବୁକୁ ତୁଚ୍ଛ କରିପାରିବ ? ସମାଜର ନିଷ୍ଠୁର ବନ୍ଧନକୁ ତୁମେ କ'ଣ ଛିଣ୍ଡେଇ ପାରିବ ?

ବିଶ୍ୱଭୂଷଣଙ୍କର ମନେହେଲା, ତାଙ୍କ କଥା ସୁଷମାକୁ ଶୁଭୁ ନଥିଲା । ହେଲେ ଏକ ନିର୍ବାତ ଦୀପଶିଖା ଭଳି ଠିଆ ହୋଇଥିଲା ସୁଷମା ଅନ୍ଧାର ଘର ଭିତରେ । ବିଶ୍ୱଭୂଷଣ ଅନୁଭବ କରୁଥିଲେ, ସୁଷମାର ଆଖିରୁ ଝରିପଡୁଥିଲା ଧାର ଧାର ଲୁହ ।

ବାହାରେ ଝରିପଡୁଥିଲା ଶ୍ରାବଣର ବର୍ଷାଧାରା । ଘରର ତିମିର ଅନ୍ଧକାର ମଧ୍ୟରେ କେବଳ ଶୁଭୁଥିଲା ପବନର ହୁ ହୁ ଶବ୍ଦ । ଅକସ୍ମାତ୍ ବିଦ୍ୟୁତ୍‌ର ତୀବ୍ର ଝଲକରେ ଥରକ ପାଇଁ ଝଲସି ଉଠିଥିଲା ସମସ୍ତ ଦିଗ୍‌ବଳୟ । ସେଇ ଆଲୁଅରେ ଆଲୋକିତ ହେଲା ବିଶ୍ୱଭୂଷଣଙ୍କ ଶୂନ୍ୟକୋଠରି । ଶସ୍ୟହୀନ ବିଲ ଭଳି ଶୂନ୍ୟ କୋଠରିକୁ ଚାହିଁ ହା ହା କାର କରି ଉଠିଲା ତାଙ୍କର ବେଦନାହତ ହୃଦୟ । ମେଘ-ବର୍ଷା, ଝଡ଼-ପବନକୁ ବେଖାତିର କରି ଯେ ଆସିଥିଲା, ସେଇ ସୁଷମା ନୀରବରେ ବିଦାୟ ନେଇଥିଲା ମେଘ-ବର୍ଷାକୁ ଭ୍ରୂକ୍ଷେପ ନକରି । ପୁଣି ବଜ୍ରପାତର ଭୟଙ୍କର ଶବ୍ଦ ଭିତରେ ବିଶ୍ୱଭୂଷଣ ଖୋଜି ବୁଲିଲେ ନିଜର ଆତ୍ମସତ୍ତା । ବିଦାୟ ନେଲାବେଳେ ସୁଷମାର କଥା କେଇପଦ କେବଳ ପ୍ରତିଧ୍ୱନିତ ହେଉଥିଲା ତାଙ୍କ ଶୂନ୍ୟଘରେ । ତୁଚ୍ଛ ସଂସ୍କାରର କାଚ କାନ୍ଥ ଭାଙ୍ଗିବାକୁ ଆପଣଙ୍କର ଏତେ କୁଣ୍ଠା କାହିଁକି ? ମୁଁ ଜଣେ ରକ୍ତ ମାଂସର ନାରୀ, ମନେ ରଖନ୍ତୁ, ଜଣେ ନାରୀ ସବୁ ପୁରୁଷ ପାଖରେ ନିଜକୁ ଟେକି ଦେଇ ପାରେନା । ନିଜର ଦେହ ମନକୁ ସେ କେବଳ ଜଣକ ପାଖରେ ଫୁଲପରି ଅଜାଡ଼ି ଦେଇପାରେ ।

ସେଇ ମୁହୂର୍ତ୍ତରେ ବିଶ୍ୱଭୂଷଣ ଜାଣି ନଥିଲେ, ସେ କିପରି ବୁଝେଇବେ ସୁଷମା ଭଳି ସେଇ ଝିଅଟିକୁ । ସୁଷମା ହୁଏତ ଠିକ କହିଥିଲା, ମରୁପଥରେ ହଜିଯାଉଥିବା ନଇରେ

ବିଶ୍ୱଭୂଷଣ ଜଗେଇ ଦେଇଥିଲେ ବନ୍ୟାର ଆଲୋଡ଼ନ । ସେଇ ନବଜୀବନର ସ୍ପର୍ଶ ପାଇ ଆତ୍ମହରା ହୋଇଥିଲେ ସୁଷମା । ସେଥିପାଇଁ ସଂସ୍କାର ବିରୁଦ୍ଧରେ ବିଦ୍ରୋହ ଜାଗିଉଠିଥିଲା ସୁଷମାର ମନରେ । କିନ୍ତୁ ବିଶ୍ୱଭୂଷଣ, ସୁଷମା ସହିତ ପାଦ ମିଳେଇ ଆଗେଇ ଯାଇ ପାରିନଥିଲେ । ଅଥଚ ସେ ବରଣ କରି ନେଇଥିଲେ ଏଇ ଯନ୍ତ୍ରଣା, ଅନ୍ତର୍ଦାହର ନିଦାରୁଣ ଜ୍ୱାଳା ! ଭଲପାଇବାର ବେଦନାରେ ନିଜକୁ ଅଭୀଭୂତ କରିଥିଲେ ବିଶ୍ୱଭୂଷଣ । ମାତ୍ର, ବିଜୁଳି ଚମକରେ ସେଇ ଶୂନ୍ୟ କୋଠରିକୁ ଦେଖି ହୁ ହୁ କରି ଉଠିଲା ତାଙ୍କର ଅନ୍ତରାତ୍ମା । ନିଜ ବେକରେ ଦୋଳୁଥିବା ସୁଷମାର ସେଇ ରକ୍ତଗୋଲାପର ମାଳଟି ଦେଖି ନିଜର ଲୁହକୁ କ'ଣ ସେ ସମ୍ବରଣ କରିପାରିଥିଲେ ସେଦିନ ? ଏକ ନିଃସହାୟ ଶିଶୁ ଭଳି ସେ ଚିତ୍କାର କରି ଉଠିଥିଲେ । କିନ୍ତୁ ମେଘ-ବର୍ଷା-ବିଜୁଳି ଘଡ଼ଘଡ଼ି ଭିତରେ ହଜିଯାଉଥିଲା ସେ ଆକୁଳ ଚିତ୍କାରର ଶବ୍ଦ ।

ବିଶ୍ୱଭୂଷଣ ଦେଖିଲେ, ସେଦିନ ଭଳି ଆଜି ମଧ୍ୟ ନିର୍ଜନ ରାତିରେ ସେ ଗୋଲାପ ବଗିଚାରେ ଠିଆହୋଇଛନ୍ତି ଏକ ନିଃସହାୟ ଶିଶୁଭଳି । ହତାଶାର ଦୀର୍ଘଶ୍ୱାସରେ ସେ ଚାହିଁଲେ ଶ୍ରାବଣ ପୂର୍ଣ୍ଣମୀର ଆକାଶକୁ । ସେଠି ମେଘ ଆଉ ଜହ୍ନ । ଜହ୍ନ ଆଉ ମେଘ । ସେଇ ଛାଇ ଆଲୁଅର ଦୂରନ୍ତ ମାୟାପୁରୀରେ ସେ ଦେଖିବାକୁ ଚେଷ୍ଟା କଲେ ତାଙ୍କ ବଗିଚାରେ ସଯତ୍ନ ପାଳିତ ଲାଲ ଗୋଲାପ ଫୁଲ ଗୁଡ଼ିକୁ । ଆକାଶରୁ ଝରି ପଡୁଥିଲା ଶ୍ରାବଣ ପୂର୍ଣ୍ଣମୀର ଜହ୍ନରଆଲୋକ ଧାରା ଆଉ ତା ସାଙ୍ଗେ ଝରିପଡୁଥିଲା ବର୍ଷାବିନ୍ଦୁ ସବୁ । ମନେହେଲା, ବିରହିଣୀ ମେଘକନ୍ୟାର ଅମାନିଆ ଲୁହରେ ବିପର୍ଯ୍ୟସ୍ତ ହୋଇଯାଉଥିଲା ରକ୍ତଗୋଲାପର କଅଁଳ ପାଖୁଡ଼ା ସବୁ ।

ସଜଳ ଆଖିରେ ବିଶ୍ୱଭୂଷଣ ଚାହିଁ ରହିଲେ ଜହ୍ନ ଆଲୁଅ ଆଉ ବର୍ଷାଜଳରେ ଆକୁଳିତ ରକ୍ତଗୋଲାପଗୁଡ଼ିକୁ ।

ଅକସ୍ମାତ ଦଳେ ସ୍କୁଲ ପିଲାଙ୍କ କୋଳାହଳ ଶୁଣି ଚମକି ଉଠିଲେ ବିଶ୍ୱଭୂଷଣ । କେତେବେଳେ ଯେ ରାତି ପାହିଗଲାଣି ତାଙ୍କ ଖିଆଲ ନାହିଁ । ପିଲାମାନେ ସ୍କୁଲକୁ ବାହାରିଲେଣି । ହଠାତ୍ ବିଶ୍ୱଭୂଷଣ ଗୋଲାପ ଫୁଲଗୁଡ଼ିକ ତୋଳି ସ୍କୁଲକୁ ଯାଉଥିବା ପିଲାଙ୍କୁ ଡାକି କହିଲେ, ଆସ ପିଲେ, ନିଅ ଏ ଗୋଲାପ ଫୁଲଗୁଡ଼ିକ ନିଅ । ସ୍କୁଲ ପିଲାମାନେ ହଠାତ୍ ବିଶ୍ୱଭୂଷଣଙ୍କ କଥାକୁ ବିଶ୍ୱାସ କରିପାରିଲେନି । କାରଣ ପ୍ରତିଦିନ ସେମାନେ ଏଇ ବାଟଦେଇ ସ୍କୁଲକୁ ଯାଆନ୍ତି । ବିଶ୍ୱଭୂଷଣ କେବେ ଗୋଟିଏ ଗୋଲାପ ଫୁଲ ତୋଳି ପିଲାଙ୍କୁ ଦେବାତ ଦୂରର କଥା, କେହି ପିଲା ଫୁଲଟିଏ ଚୋରେଇଥିଲେ ସେ ରାଗରେ ନିଆଁ ହୋଇଯାଆନ୍ତି । ଅଥଚ ଆଜି ଦିହାତରେ ଲାଲ ଗୋଲାପ ଫୁଲକୁ ତୋଳି ସେ ଯାଚୁଛନ୍ତି ! ପିଲାମାନେ ଭାବିବାକୁ ଲାଗିଲେ, ଲୋକଟି କ'ଣ ପାଗଳ ହୋଇଯାଇଛନ୍ତି ?

ବିଶ୍ୱଭୂଷଣ ବାରମ୍ବାର ଅନୁରୋଧ କଲେ, ପିଲାମାନେ ବିଶ୍ୱଭୂଷଣଙ୍କ ନିକଟକୁ ଆଗେଇ ଆସିବା ପରିବର୍ତ୍ତେ ସେମାନେ ସ୍କୁଲ ଆଡ଼କୁ ଧାଇଁଚାଲିଗଲେ । ସେମାନଙ୍କ ଆଖିରେ ବିଶ୍ୱଭୂଷଣ ପାଇଁ ଭରି ରହିଥିଲା ଅଜଣା ଭୟ ଆଉ ଦାରୁଣ ସନ୍ଦେହ ।

ଦୁଇହାତରେ ରକ୍ତଗୋଲାପଗୁଡ଼ିକ ଧରି ବିଶ୍ୱଭୂଷଣ ବଗିଚାରେ ଠିଆହୋଇ ବର୍ଷାରେ ଭିଜୁଥିଲେ । ତାଙ୍କର ଦି'ଆଖିରୁ ମଧ୍ୟ ଝରିପଡୁଥିଲା ଧାର ଧାର ଲୁହ ।



# ସେ ନଈର ନାଁ ଫଲ୍‌ଗୁ

ବସ୍‌ରୁ ଓହ୍ଲେଇ ନନ୍ଦିତା ସିଧାସଳଖ ଯାଇ ପହଞ୍ଚିଲା ସୂଚନାଭବନର ପୁସ୍ତକ ମେଳାରେ । ସଦ୍ୟପ୍ରକାଶିତ କିଛି ଓଡ଼ିଆ ବହି ସଂଗ୍ରହ କରିବ, ଏଇଆ ତା'ର ମୁଖ୍ୟ ଉଦ୍ଦେଶ୍ୟ । କେଉଁ ଝିଅର ସିନେମା ଟି.ଭି. ଦେଖିବାର ନିଶା, କାହାର ପୁଣି ନିଶା ହେଲା ନୂଆ ନୂଆ ଶାଢ଼ି କିଣିବା । କିନ୍ତୁ ନନ୍ଦିତାର ନିଶା ହେଲା ବହିପଢ଼ିବା ।

ମେଳାର ବିଭିନ୍ନ ପୁସ୍ତକ ଷ୍ଟଲରେ ଥରେ ବୁଲି ଆସିଲା ନନ୍ଦିତା । ସେ ଅନୁଭବ କଲା ଏକ ସାରସ୍ୱତ ଅନୁଭୂତି । ସତେ ଯେମିତି ଏ ପୁସ୍ତକମେଳା ଏକ ପବିତ୍ର ମିଳନପୀଠ । ଦୂରଦୂରାନ୍ତରରୁ ନଈମାନେ ଯେମିତି ସମୁଦ୍ରରେ ଅଜାଡ଼ି ଦିଅନ୍ତି ଯେ ଯାହାର ମଧୁର ନୀର ସମ୍ପଦ । ସେ ଦେଖିଲା, ପୁସ୍ତକମେଳାର ଏକ କମନୀୟ ଆୟୋଜନ । ସେ ଉପଲବ୍‌ଧି କଲା, କେବଳ ପାଠକ ନୁହନ୍ତି କିମ୍ବା ଛାତ୍ର ନୁହନ୍ତି, ବିଭିନ୍ନ ଲେଖକ ଆଉ ବିଭିନ୍ନ ପ୍ରକାଶକମାନଙ୍କର ମଧ ଏହା ଏକ ଅପୂର୍ବ ସମାବେଶ । ପୁସ୍ତକମେଳାର ଉଦ୍ୟୋକ୍ତାମାନଙ୍କର ଏପରି ଅଭିନବ ପ୍ରଚେଷ୍ଟା ଦେଖି କୃତଜ୍ଞତାରେ ଉଦ୍‌ବେଳିତ ହେଲା ନନ୍ଦିତାର ହୃଦୟ ।

ଅଧିକ ସମୟ ନଷ୍ଟ ନ କରି ନିର୍ବାଚନ କରି ସେ ବହି କିଣିବାକୁ ଆରମ୍ଭ କରିଦେଲା । ମନମୁତାବକ ବହି ନିର୍ବାଚନ କରିବାରେ ବେଶ୍ ସମୟ ଲାଗିଲା । ଯା' ହେଉ, ପୁସ୍ତକ ତାଲିକା କରି ଦୋକାନୀ ବିଲ୍‌ଟି ବଢ଼େଇ ଦେଲା ନନ୍ଦିତା ହାତକୁ । ସେ ଦେଖିଲା, ବିଲ୍‌ଟି ବେଶ୍ ମୋଟା ଟଙ୍କାର, ପ୍ରାୟ ଏକହଜାର ଟଙ୍କାର ହେବ । ସେଇ ପରିମାଣର ଟଙ୍କା ଦେବା ଉଦ୍ଦେଶ୍ୟରେ ନନ୍ଦିତା ଖୋଲିଲା ତା' ହାତରେ ଥିବା ଭ୍ୟାନିଟୀ ବ୍ୟାଗଟିକୁ । କିନ୍ତୁ ଚମକି ଉଠିଲା ନନ୍ଦିତା । .. ଏ କ'ଣ ? ବ୍ୟାଗର ସବୁ କାଗଜପତ୍ର ବାହାର କରି ଟେବୁଲରେ ଜମାକଲା । କିନ୍ତୁ ଟଙ୍କା କାହିଁ ? ବହିତକ ଧରି ଆଜି ସନ୍ଧ୍ୟାବସରେ ବାରିପଦାକୁ ଫେରିଯିବାର କଥା । ମାତ୍ର ନିର୍ବାଚିତ ବହିର ମୂଲ୍ୟ ତ ଦୂରର କଥା, ଫେରିଯିବା ନିମନ୍ତେ ବସ୍‌ଭଡ଼ା ମଧ ନିଅଣ୍ଟ !

ବିଚଳିତ ହେଲା ନନ୍ଦିତାର ମନ । ଅପମାନବୋଧରେ ଝାଳ ବହିଗଲା । ସେ ଭାବିବାକୁ ଲାଗିଲା, ସ୍ମରଣ କରିବାକୁ ଚେଷ୍ଟାକଲା । ହଁ, ନନ୍ଦିତାର ବେଶ୍ ମନେପଡୁଛି, ଗତକାଲି ପାଶ୍‌ବୁକ୍‌ରୁ ସେ ଡ୍ର କରିଥିଲା ଦୁଇହଜାର ଟଙ୍କା; ଅଥଚ ବ୍ୟାଗରେ ଟଙ୍କା ନାହିଁ । କ'ଣ କରିବ ସେ କିଛି ବୁଝିପାରିଲା ନାହିଁ । ଯେଉଁ ପ୍ରବଳ ଆଗ୍ରହ ନେଇ ଅଧ୍ୟାପିକା ନନ୍ଦିତା ସୁଦୂର ବାରିପଦାରୁ ଧାଇଁ ଆସିଥିଲା ରାଜଧାନୀର ଏଇ ପଞ୍ଚମ ପୁସ୍ତକମେଳାକୁ,

ମୁହୂର୍ତ୍ତକ ମଧରେ ସେ ଆଗ୍ରହ ଉଭେଇଗଲା । ତା' ଚାରିପଟେ ଘେରିଆସିଲା ଅପରିଚିତ ଅନ୍ଧକାରର କୁଟିଳ ତରଙ୍ଗ ।

ମନତଳେ ଆଶାର ଆଲୋକରେଖାଟିଏ ଦେଖାଦେଲା; ଅବଶ୍ୟ ଚିନ୍ମୟ ଭୁବନେଶ୍ୱରରେ ଅଛି । କିନ୍ତୁ ନନ୍ଦିତା ତ ଆଜି ଆଉ ହାତ ପତେଇବ ନାହିଁ ଚିନ୍ମୟ ଆଗରେ ! ହେଲେ ଅବା ସେ ତା'ର ସ୍ୱାମୀ, ଅଗ୍ନି ଓ ସୂର୍ଯ୍ୟଙ୍କୁ ସାକ୍ଷୀରଖି ସେ ଧରିଥିଲେ ନନ୍ଦିତାର କୁମାରୀ ହାତ । କିନ୍ତୁ ନିଜେ ଚିନ୍ମୟ ଯେତେବେଳେ ଫେରି ଚାହିଁଲେ ନାହିଁ ତାଙ୍କ ସ୍ତ୍ରୀଙ୍କୁ, ନନ୍ଦିତା କାହିଁକି ମୁଣ୍ଡ ନଇଁଦେବ ତାଙ୍କ ଆଗରେ ? ନନ୍ଦିତା ନିରକ୍ଷର ନୁହେଁ । ସେ ସମ୍ବଳହୀନା ନିଃସହାୟା ନୁହେଁ ଯେ, ସ୍ୱାମୀଙ୍କ ସମସ୍ତ ଅନ୍ୟାୟ ଅତ୍ୟାଚାରକୁ, ନିର୍ଯାତନାକୁ ମୁଣ୍ଡପାତି ସହିଯିବ । ନନ୍ଦିତା ନିଜର ଉପାର୍ଜ୍ଜନରେ ଝିଅ ମାମିନାକୁ ନେଇ ବେଶ୍ ଚଳିଯିବ ।

ତା' ମନ ବିଷାକ୍ତ ହୋଇ ଉଠିଲା ଚିନ୍ମୟ ବିରୁଦ୍ଧରେ । ଚିନ୍ମୟ ନିତାନ୍ତ ସ୍ୱାର୍ଥପର, ନିର୍ଦ୍ଦୟ, ଅମଣିଷ; ଅଥଚ ବାହାଘର ଆଗରୁ ? ବାହାହେବା ପୂର୍ବରୁ ନନ୍ଦିତାର ମନେ ହେଉଥିଲା, ଚିନ୍ମୟର ମନଥିଲା ଆକାଶ ଭଳି ଉଦାର, ମାଟିଭଳି ମହତ । ଯାହାକୁ ସେ ଭଲପାଏ, ତା'ପାଇଁ ସେ ଜୀବନର ସବୁକିଛି ଅଜାଡ଼ି ଦେଇପାରେ । ସେଦିନ ନନ୍ଦିତା କୁମାରୀ ମନକୁ ଯେ ଜୟ କରିଥିଲା ସେ ତ ସେଇ ଚିନ୍ମୟ । ଜୀବନରେ ଚିନ୍ମୟ କେବେ ଦ୍ୱିତୀୟ ହେଇ ନଥିଲା । ସେ ଯେ ଜଣେ ବଡ଼ ସ୍କଲାର ଥିଲା ତାହା ନୁହେଁ । ସବୁଠାରୁ ଆକର୍ଷଣୀୟ ଥିଲା ଚିନ୍ମୟର ଅନନ୍ୟ ବ୍ୟକ୍ତିତ୍ୱ । ନିଜର ଉଦ୍‌ବେଳିତ ମନ ସମୁଦ୍ରକୁ ଅନୁସନ୍ଧାନ କରି ନନ୍ଦିତା ଦେଖିଲା, ଆଜି ବହିପଢ଼ିବା ନିମନ୍ତେ ତା' ମନରେ ଯେଉଁ ଅପରିସୀମ ଆଗ୍ରହ ଜନ୍ମିଚି ତାହା ତ ସେଇ ଚିନ୍ମୟ ପାଇଁ । ଚିନ୍ମୟ ହିଁ ନନ୍ଦିତାର ଜୀବନର ସାରସ୍ୱତ ପ୍ରେରଣାର ନିର୍ମଳ ଉତ୍ସ । କଲେଜ ଜୀବନରେ ସେ ମୁଗ୍ଧ ହୋଇଥିଲା ଚିନ୍ମୟର ଓଜସ୍ୱିନୀ ବକ୍ତୃତା ଶୁଣି । ଚିନ୍ମୟର କବିତା ଆବୃତ୍ତିର ଚମତ୍କାର ଢଙ୍ଗରେ ସେ ମୁଗ୍ଧ ହୋଇ ଯାଇଥିଲା । କବି ମାନସିଂହଙ୍କର ସେଇ ଅନନ୍ୟ କବିତା 'ଧରାବତରଣ' କବିତାର ମଧୁର ଆବୃତ୍ତି ଚିନ୍ମୟ ମୁଖରୁ ଶୁଣି ନିଜକୁ ଅଜାଡ଼ିଦେବାକୁ କୁଣ୍ଠା କରି ନଥିଲା ନନ୍ଦିତା । ସେଇ କବିତାର କେତୋଟି ପଦ୍‌କ୍ତିର ଗୁଞ୍ଜରଣ ନନ୍ଦିତାର ମନରେ ଏବେ ବି ଅଭିଭୂତ କରେ-

''ନିଷ୍ପାପ ସେ, ସ୍ୱପ୍ନମୟ, ରସମୟ, ବିମଳ
ଦି'ଆଖି ପ୍ରାଣର ଦି'ବାତାୟନ,
ଅନ୍ତରର ସତ୍ୟବାହୀ ସାକ୍ଷୀ ପାଇବାକୁ
ସେ ଦୁଇର ପରିପୂର୍ଣ୍ଣ ଆତ୍ମସମର୍ପଣ ହେ ସଖୀ,
କରୁଛି ମୁଁ କି ଜନ୍ମେ ଜନ୍ମେ ଧରାବତରଣ !''

ନନ୍ଦିତାକୁ ପ୍ରେରଣା ଦେଇଥିଲେ ସେଇ ତରୁଣ ଚିନ୍ମୟ । ତା' ହେଇ ନଥିଲେ ସେ

ମ୍ୟାକ୍‌ସାମ ଗୋର୍କୀଙ୍କର ମା' କିମ୍ବା ଟଲଷ୍ଟୟଙ୍କ ଓ୍ୱାର ଏଣ୍ଡ ପୀଶ୍‌ର ରସ ଆସ୍ୱାଦନରୁ ଜୀବନରେ ବଞ୍ଚିତ ହୋଇଥାନ୍ତା । ଆଜି ସେ ଚାର୍ଲସ ଡ଼ିକେନ୍‌ସ, ଟମାସ ହାଡ଼ି କିମ୍ବା ଡ଼ି.ଏଚ୍.ଲରେନ୍‌ସଙ୍କ ଠାରୁ କେତେ ଦୂରରେ ଥାନ୍ତା କିଏ ଜାଣେ ?

ଅଥଚ ବାହାଘର ପରେ, ଏଇ ବର୍ଷ କେତୋଟି ମଧ୍ୟରେ କ'ଣ ହେଇଗଲା ? ସେ କେମିତି ବଦଳିଗଲେ ପୂରାପୂରି । କୁଆଡ଼େ ଗଲା ଚିନ୍ମୟଙ୍କ ଜିନିୟସର ଜ୍ୟୋତି ? କୁଆଡ଼େ ଉଭେଇଗଲା ସେ ମେରିଟ୍ ? ଅଫିସରୁ ଫେରି ସଞ୍ଜକୁ ଚିନ୍ମୟ ଧୀରେ ଧୀରେ ବୁଡ଼ିଯିବାକୁ ଲାଗିଲେ ଫାଇଲଗଦା ଭିତରେ । ନିହାତି ଜରୁରୀ ଫାଇଲ ଧରି ଅଧରାତି ବିତେଇଦେଇ ପାରିଲେ କଲେକ୍ଟରଙ୍କ ଅଫିସ ଚେମ୍ବରରେ ! ପୁଣି ଅଧିକ ବିସ୍ମୟର ବିଷୟ, ନନ୍ଦିତା ଯେତେବେଳେ ତା'ର ପ୍ରିୟ ଲେଖକ କାହ୍ନୁବାବୁଙ୍କର 'ଅଦେଖା ହାତ', 'ଶାସ୍ତି' କିମ୍ବା ସୁରେନ୍ଦ୍ର ମହାନ୍ତିଙ୍କ 'ଅନ୍ଧଦିଗନ୍ତ' ଉପନ୍ୟାସ ଭିତରେ ନିଜକୁ ହଜାଇ ଦେଉଥିଲେ ସେତେବେଳେ ଚିନ୍ମୟ ଅତି ଅସହିଷ୍ଣୁଭାବେ ଚିତ୍କାର କରି ବିରକ୍ତ କରିବାକୁ କୁଣ୍ଠାବୋଧ କରୁ ନଥିଲେ । ସବୁଠୁ ବିସ୍ମୟର କଥା ନନ୍ଦିତା ଏ କଥା ଆବିଷ୍କାର କରି ହତାଶ ହେଲା ଯେ, 'ପରଜା', 'ଇତିହ', 'ନୀଳଶୈଳ' କିମ୍ବା 'ହିଡ଼ମାଟି' ଉପନ୍ୟାସ ବିଷୟରେ ସଠିକ ଧାରଣା ଥିବା ତ ଦୂରର କଥା; ସେ ରଚନାର ମହାନ ସ୍ରଷ୍ଟାମାନଙ୍କ ସମ୍ପର୍କରେ କିଛି ଜାଣିବାର ଆଗ୍ରହ ମଧ୍ୟ ଚିନ୍ମୟର ରହିଲା ନାହିଁ । 'ମାନସିଂହ', 'ସଚ୍ଚିରାଉତରା','ଟେଗୋର' କିମ୍ବା 'ଇଲିୟଟ' ପ୍ରଭୃତି କବିମାନଙ୍କୁ ସେ କେବେଠୁଁ ବିସର୍ଜନ ଦେଇଥିଲେ; ବରଂ ଅଫିସର ଫାଇଲର ବୁଢ଼ୀଆଣି ଜାଲରେ ଛନ୍ଦିହୋଇ ସେ ନିଜର ସତ୍ତାକୁ ହଜେଇ ଦେବାକୁ ବସିଲେଣି କି କ'ଣ ! ସ୍ନେହ, ପ୍ରେମ, ଦୟା, କ୍ଷମା ଭଳି ମାନବିକ ସୂକ୍ଷ୍ମ ଅନୁଭୂତି ସବୁକୁ ମଧ୍ୟ ସେ ନିଜର ମନଠୁ ଦୂରେଇ ଦେଲେଣି । ଜୀବନର ମୂଲ୍ୟବୋଧର ଏମିତି ନିଷ୍ଠୁର ପରିବର୍ତ୍ତନ ହେବ, ଏକଥା ତ ନନ୍ଦିତାର କଳ୍ପନା ବାହାରେ । ନନ୍ଦିତା ତା'ର ସ୍ତ୍ରୀ, ତେଣୁ ସ୍ୱାମୀଙ୍କ ସବୁ ଅବହେଳାକୁ ହୁଏତ ସହିପାରେ; ହେଲେ ଝିଅ ମାମିନା । ସେ କ'ଣ ଦୋଷ କରିଛି ? ତା'ର ଭଲ-ମନ୍ଦ ଦେଖିବା ପ୍ରତି ଯାହାର ଟିକିଏ ଭ୍ରୂକ୍ଷେପ ନାହିଁ, ସେ ପିତୃତ୍ୱର ଅଧିକାରୀ କିପରି ସାବ୍ୟସ୍ତ କରିପାରେ ? ତାଙ୍କର କେବଳ ଗୋଟିଏ ନିଷ୍ଠୁର ଅଭିଯୋଗ — ତାଙ୍କ ଅଫିସ୍ କାମରେ ଘରେ ସମସ୍ତେ ବାଧା ସୃଷ୍ଟି କରୁଛନ୍ତି । ସେଥିପାଇଁ କୁଆଡ଼େ ତାଙ୍କର ଭବିଷ୍ୟତ ଅନ୍ଧକାର ହେଇଯାଉଛି । ତେଣୁ ଚେଷ୍ଟା କରି ଭୁବନେଶ୍ୱରକୁ ଟ୍ରାନ୍‌ସଫର କରେଇ ସେ ଏକୁଟିଆ ଚାଲିଆସିଲେ ଏଇ ରାଜଧାନୀକୁ । ନନ୍ଦିତା ଅବା କେତେ ସହିଥା'ନ୍ତା ? ଶେଷକୁ କ'ଣ ନା ଝିଅ ମାମିନାକୁ ତା'ଠୁ ଛଡ଼େଇ ଆଣିବା ପାଇଁ ଗଭୀର ଷଡ଼ଯନ୍ତ୍ର । ସେଥିପାଇଁ ପୁଣି କୋର୍ଟକଚେରୀ, ଆଇନ ଅଦାଲତ କେତେ କ'ଣ ! ଚିନ୍ମୟ କ'ଣ ଆଜି ପାଶୋରିଗଲେ, ଜାତି କୁଳର ଆଭିଜାତ୍ୟକୁ ଭ୍ରୂକ୍ଷେପ ନକରି ନନ୍ଦିତା ଚାଲିଆସିଥିଲା ଚିନ୍ମୟଙ୍କ ପାଖକୁ । ନନାବୋଉଙ୍କ ମାନମହତକୁ ଚାହିଁ

ମଧ୍ୟ ଚାହିଁ ନଥିଲା । ଆଜି କିଏ ବିଶ୍ୱାସ କରିବ ଯେ, ଦୁହେଁ ପ୍ରେମ କରି ଘର ବାନ୍ଧିବାର ଦିନେ ସ୍ୱପ୍ନ ରଚନା କରିଥିଲେ ସେମାନେ ?

ଦୀର୍ଘଶ୍ୱାସଟିଏ ବାହାରିଆସିଲା ନନ୍ଦିତାର ହୃଦୟତନ୍ତ୍ରୀରୁ ।

ସେ ଦେଖିଲା, ବହିଦୋକାନର ପିଲାମାନେ ବହିଗୁଡ଼ିକୁ ପ୍ୟାକ୍ କରିବାରେ ବ୍ୟସ୍ତ । ଦୋକାନୀ ଭଦ୍ରଲୋକ ଚାହିଁଥିଲେ ନନ୍ଦିତାଦେବୀଙ୍କର ଉଦ୍‌ଭ୍ରାନ୍ତ ଆଚରଣକୁ । ଏଣେ ନନ୍ଦିତାର ମନଆକାଶରେ ଘେରିଆସୁଥିଲା ହତାଶାର କଳାକଳା ମେଘ ସବୁ । ରାଜଧାନୀଭଳି ଆତ୍ମୀୟସ୍ୱଜନବିହୀନ ସ୍ଥାନ । ଏଠି ଏପରି ଦୂରବସ୍ଥା ଉପୁଜିବ ଏକଥା କ'ଣ ସ୍ୱପ୍ନରେ ଭାବିଥିଲା ନନ୍ଦିତା ? ନୀରତରୁହୀନ ରକ୍ଷ ମରୁଭୂମିରେ ସେ ଯେମିତି ଏକ ସମ୍ବଳହୀନ ଯାତ୍ରୀ ।

ଦୋକାନୀଙ୍କ ଉଦ୍ଦେଶ୍ୟରେ ନନ୍ଦିତା କହିଲା, ଠିକ୍ ଅଛି । ଆପଣ ଦୟାକରି ବହିସବୁ ପ୍ୟାକ୍‌କରି ରଖନ୍ତୁ, ମୁଁ ଆସୁଛି । ଏତକ କହି ବହିମେଳାରୁ ବାହାରିଆସିଲା ନନ୍ଦିତା । ମେଳାର ଜନଗହଳି ଭିତରେ ସେ ଅନୁଭବ କଲା — ସେ ଏକାନ୍ତ ନିଃସଙ୍ଗ । ଲକ୍ଷ୍ୟହୀନ ଦୃଷ୍ଟିରେ ସେ ଚାହିଁଲା ଜନଗହଳିକୁ । ମେଳା ପରିସରରେ ତା'ର ହଠାତ୍ ଦୃଷ୍ଟିପଡ଼ିଗଲା ସେଇ ପ୍ରାଚୀରପତ୍ରଟି ଉପରେ — 'ଓଡ଼ିଆ ବହି କିଣନ୍ତୁ, ପ୍ରିୟଜନଙ୍କୁ ଉପହାର ଦିଅନ୍ତୁ ।' ପ୍ରାଚୀରପତ୍ରଟି ଦେଖି ସେ ଅଧିକ ହତାଶ ଅନୁଭବ କଲା । ସେ ବୁଝିପାରିଲା ନାହିଁ, କ'ଣ କରିବ ?

ନନ୍ଦିତାର ସାମନାଦେଇ ଜଣେ ଭଦ୍ରବ୍ୟକ୍ତି ବ୍ୟସ୍ତରେ ଚାଲିଯାଉଥିଲେ । ନନ୍ଦିତାର ମନେହେଲା, ଜାକେଟ୍ ପିନ୍ଧିଥିବା ସେଇ ଭଦ୍ର ମହୋଦୟଙ୍କୁ ସେ ଚିହ୍ନିଥିଲେ । ହଁ, ସେ ଗାଳ୍ପିକ, ସାମ୍ବାଦିକ ଏହି ପୁସ୍ତକମେଳାର ସଂପାଦକ ସ୍ୱୟଂ ବରେନ୍ଦ୍ରବାବୁ । ଗତ ଡିସେମ୍ବର ମାସରେ 'ଲେଖକ ସାମ୍ମୁଖ୍ୟ' ଅନୁଷ୍ଠାନର ବାର୍ଷିକ ଉତ୍ସବରେ ସାକ୍ଷାତ ପରିଚୟ ହେଇଥିଲା ବାରିପଦାଠାରେ । ବରେନ୍ଦ୍ରବାବୁଙ୍କୁ ଦେଖି ଏକ କ୍ଷୀଣ ଆଶାର ଦୀପଶିଖା ଜଳିଉଠିଲା ନନ୍ଦିତାର ମନକୋଣରେ । ପୁଣି ବିଚାରିଲା, ଛି ଛି, ଟଙ୍କା ବିଷୟରେ କ'ଣ ତାଙ୍କୁ ଏବେ କିଛି କହିବା ଉଚିତ ହେବ ? ମନରେ ଦ୍ୱନ୍ଦ୍ୱର ଆଲୋଡ଼ନ ନେଇ ସେ ଆଗେଇଯାଇ କହିଲା, ନମସ୍କାର, ମୁଁ ବାରିପଦାରୁ ଆସିଛି ।

ନମସ୍କାର, ନମସ୍କାର ! ଆସନ୍ତୁ । ଖବର କ'ଣ ? ପଚାରିଲେ ବରେନ୍ଦ୍ରବାବୁ ।

ଆପଣଙ୍କ ଏଇ ପୁସ୍ତକମେଳାରୁ କିଛି ବହି ସଂଗ୍ରହ କରିବାକୁ ଆସିଥିଲି ।

ଭଲକଥା । ସେଥିପାଇଁ ତ ଆମର ଏ ପୁସ୍ତକମେଳାର ଆୟୋଜନ । କହିଲେ ବରେନ୍ଦ୍ରବାବୁ ।

ସତରେ ଆପଣମାନଙ୍କର ଏଭଳି ସାଧୁ ଉଦ୍ୟମ ଅଭିନନ୍ଦନୀୟ । ଏତକ କହି ସେ ନିରବ ହେଲା । କିପରି ଟଙ୍କା କଥା ଉଠେଇବ ସେ ବୁଝିପାରିଲା ନାହିଁ । ସଂକୁଚିତ ଭାବେ ସେ କହିଲା, ବରେନ୍ଦ୍ରବାବୁ, ଆପଣ ମୋତେ ଚିହ୍ନି ପାରୁଛନ୍ତି ?

ବରେନ୍ଦ୍ରବାବୁ ହସିଲେ ତାଙ୍କର ସ୍ୱଭାବସୁଲଭ ଢଙ୍ଗରେ । କହିଲେ, ଆପଣ ଭଲକଥା କହିଲେ । ଆମର ବାର୍ଷିକ ଉତ୍ସବରେ ବାରିପଦାରେ ଆପଣ ଆଲୋଚନାଚକ୍ରରେ ଅଂଶଗ୍ରହଣ କରି ନଥିଲେ ? ଅଧ୍ୟାପିକା ନନ୍ଦିତାଦେବୀଙ୍କୁ ଭୁଲିଯିବି କେମିତି ?

ଲାଜରେ ସଢ଼ିଯିବାକୁ ମନେହେଲା ନନ୍ଦିତାର । ସେ କୁଣ୍ଠିତ ମନରେ ପୁଣି ଆରମ୍ଭ କଲା, ଆପଣଙ୍କ ପାଖରେ ମୋର ଗୋଟିଏ ଅନୁରୋଧ ଥିଲା ।

ଅନୁରୋଧ ? ହସିଲେ ବରେନ୍ଦ୍ରବାବୁ । କ'ଣ କହୁନାହାନ୍ତି ।

ସୌଜନ୍ୟମୁଗ୍ଧା ନନ୍ଦିତାର ତୁଣ୍ଡ ଆଉ ଫିଟିଲା ନାହିଁ ଟଙ୍କା କଥା କହିବାକୁ; ବରଂ ସେ କହିବାକୁ ଲାଗିଲେ, ବାସ୍ତବିକ ଆପଣମାନଙ୍କର ସୁନ୍ଦର ଏ ଆୟୋଜନ । ଆମର ପ୍ରିୟ କବି, ଗାଳ୍ପିକ କିମ୍ବା ଔପନ୍ୟାସିକମାନଙ୍କ ରଚନା ଏବଂ ସେମାନଙ୍କର ନାଁ ଛପା ଅକ୍ଷରରେ ଦେଖିଥାଉ; ହେଲେ ସେମାନଙ୍କ ସାଙ୍ଗରେ ଜୀବନରେ ସାକ୍ଷାତ ପରିଚୟ ହେବାର ସୌଭାଗ୍ୟ ଆମର କ୍ୱଚିତ ହେଇଥାଏ ।

ନନ୍ଦିତାର କଥା ଶୁଣି ନିଜସ୍ୱ ଅମାୟିକ ହସରୁ ମୁଠାଏ ପୁଣି ଅଜାଡ଼ି ଦେଲେ ବରେନ୍ଦ୍ରବାବୁ । କହିଲେ, ସେଥିପାଇଁ ତ ଦଶଦିନବ୍ୟାପୀ ଏ ପୁସ୍ତକ ମେଳାର ଆୟୋଜନ । କବିତା ପାଠୋତ୍ସବ, ଗଳ୍ପ ପାଠୋତ୍ସବ, ଉପନ୍ୟାସର ଆଲୋଚନାଚକ୍ରର ମଧ୍ୟ ଆୟୋଜନ କରାଯାଇଛି । ଏହି ସ୍ଥାନରେ ହିଁ ଆପଣଙ୍କ ସଙ୍ଗେ ପରିଚୟ ହେଇପାରିବ ଓଡ଼ିଶାର ପ୍ରତିଷ୍ଠିତ କଥାଶିଳ୍ପୀମାନଙ୍କ ସହିତ । ଏଇ ଦେଖନ୍ତୁ ନା ଆସୁଛନ୍ତି, ଆମ ପୁସ୍ତକ ମେଳାର ସଭାପତି । ତାଙ୍କୁ ନିଶ୍ଚୟ ଚିହ୍ନିଛନ୍ତି ।

ହଁ, ମୁଁ ହୋତା ମହାଶୟଙ୍କୁ ଜାଣିଛି । ରେଳ ବିଭାଗରୁ ଅବସର ଗ୍ରହଣ କରି ସେ ଭୁବନେଶ୍ୱରରେ ହିଁ ରହୁଚନ୍ତି ।

ହଁ, ତାଙ୍କର ସଦ୍ୟପ୍ରକାଶିତ ଉପନ୍ୟାସ 'କ୍ରୁଶବିଦ୍ଧ' ଏହି ମେଳାମଣ୍ଡପରେ ଉନ୍ମୋଚିତ ହୋଇଛି ।

ବିନମ୍ରଭାବରେ ନନ୍ଦିତା ନମସ୍କାର ଜଣାଇଲା । ସାତକଡ଼ି ବାବୁ ପଚାରିଲେ, ଆରେ ନନ୍ଦିତା ଯେ, ତୁମେ କେବେଠୁ ଆସି ପହଞ୍ଚିଲ ?

ମୁଁ ଆଜି ଆସିଛି । ଉତ୍ତର ଦେଲା ନନ୍ଦିତା । ସେ ପଚାରିଲା- କାହିଁ ସାର୍‌, ଏଠି ନାନୀଙ୍କୁ ଦେଖୁନାହିଁ ଯେ । ଆମେ ଆଶାକରିଥିଲୁ, ଏ ବହିମେଳାରେ ନାନୀଙ୍କ 'ଅମୃତାୟନ'

ପତ୍ରିକାର ଏକ ବିଶେଷ ସଂଖ୍ୟା ପ୍ରକାଶିତ ହେବ ।

ହଁ; ବାହାରିଥିଲେ ନିଶ୍ଚୟ ଭଲ ହୋଇଥାନ୍ତା । ନାନୀ ଆସିବେ ତାଙ୍କୁ ପଚାରିବା ସେ ଠିକ୍ କହିବେ ।

ସେତିକିବେଳେ ଆସି ପହଞ୍ଚିଗଲେ କୃଷ୍ଣବାବୁ । ହୋତା ମହାଶୟ ପରିଚୟ କରାଇଦେଲେ, ସେ ହେଲେ କୃଷ୍ଣବାବୁ । ଲେଖକ ସାମ୍ମୁଖ୍ୟର ସଭାପତି ।

ନନ୍ଦିତା ନମସ୍କାର ଜଣାଇ କହିଲା, ହଁ ମୁଁ ଚିହ୍ନିଛି । ବାରିପଦାରେ ଦେଖାହୋଇଥିଲା ।

ସେଇଠି ଆସି ପହଞ୍ଚିଗଲେ କବି ଫନୀ ମହାନ୍ତି । ନନ୍ଦିତା ନମସ୍କାର କରିବାର ଦେଖି ତାଙ୍କର ସ୍ୱଭାବସୁଲଭ ସ୍ମିତହାସ୍ୟ ଉପହାର ଦେଇ ପଚାରିଲେ, ଆରେ ନନ୍ଦିତାଦେବୀ ଯେ, କେତେବେଳୁ ଆସିଲେଣି ?

ନନ୍ଦିତା କହିଲା, ମୁଁ ଆସି ଶୁଣିଲି, ଲେଖକ ସାମ୍ମୁଖ୍ୟର ସମ୍ପାଦକ ଫନୀବାବୁଙ୍କର କବିତା ସଂକଳନ ପୁସ୍ତକମେଳାରେ ଉନ୍ମୋଚିତ ହେଲା । ସେଥିପାଇଁ ଅଭିନନ୍ଦନ ଜଣାଉଛି । କେବଳ ଆପଣଙ୍କ ମୁଖରୁ ଆବୃତ୍ତି ମୁଁ ଶୁଣିପାରିଲି ନାହିଁ ।

ଧନ୍ୟବାଦ ଜଣେଇ ହସିଲେ ଫନୀବାବୁ । ସେ କହିଲେ  ଦେଖନ୍ତୁ ନନ୍ଦିତା ଦେବୀ, ତୋରଣ ଆଗରେ ଆସି ପହଞ୍ଚିଲେଣି ବର୍ଷିୟାନ ସାହିତ୍ୟିକ ରାଜକିଶୋର ରାୟ । ନନ୍ଦିତା ଆଗେଇଗଲା । ବିନମ୍ର ନମସ୍କାର ଜଣାଇବାରୁ ଅଧାପକ ରାୟ ଉତ୍‌ଫୁଲ୍ଲ ହୋଇ ତାଙ୍କର ନିଜସ୍ୱ ଆଭିନୟିକ ଭଙ୍ଗୀରେ ପଚାରିଲେ, ତୁମେ କିଏ ମା' ? ତୁମେ କ'ଣ ମୋର ଛାତ୍ରୀ ଥିଲ ?

ଓଡ଼ିଆ ଗଳ୍ପଜଗତର ଦିଗ୍‌ଦ୍ରଷ୍ଟା, ପ୍ରବୀଣ ଅଭିନେତା ଓ ସୁବକ୍ତା ରାୟ ମହାଶୟଙ୍କର ସାକ୍ଷାତ ପାଇ ଖୁସିହେଲା ନନ୍ଦିତା । କହିଲା, ନା ସାର୍, ଆପଣଙ୍କର ଛାତ୍ରୀ ହେବାର ସୌଭାଗ୍ୟ ମୋର ହୋଇନି । ଆପଣଙ୍କର ସମ୍ବର୍ଦ୍ଧନା ଉତ୍ସବରେ ବାରିପଦାରେ ଦେଖାହୋଇଥିଲା । ମୁଁ ଏବେ ବାରିପଦାରେ ଜଣେ ଅଧାପିକା । ମୁଁ ଜଣେ ଆପଣଙ୍କର ମୁଗ୍ଧା ପାଠିକା । ରବିବାରୀୟ 'ସମାଜ'ରେ ଆପଣଙ୍କର ଧାରାବାହିକ ନିବନ୍ଧ 'ଆଜି ମଣିଷର ସ୍ୱରୂପ' ପଢୁଛି ଏବଂ ଆପଣଙ୍କର ଜୀବନଦର୍ଶନର ଆଲୋକରୁ କିଛିତ ଉପଲବ୍ଧି କରୁଛି ।

ମନଖୋଲା ହସଟିଏ ହସିଲେ  ରାୟମହାଶୟ । କହିଲେ, ଶୁଣି ଭାରି ଖୁସିହେଲି, ତୁମେ 'ଆଜି ମଣିଷର ସ୍ୱରୂପ' ପଢୁଛ । କିନ୍ତୁ, ଆଜିକାଲି ସେକଥା କିଏ ଚିନ୍ତା କରୁଛି ?

ବରେନ୍ଦ୍ରବାବୁ ଡାକିଲେ, କହିଲେ, ଚିହ୍ନିଥିବେ ନିଶ୍ଚୟ । ଏଥର କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ କବି ସୌରୀନ୍ଦ୍ର ବାରିକଙ୍କୁ ।

ନମସ୍କାର ବିନିମୟ ପରେ ନନ୍ଦିତା କହିଲା, 'ଅନ୍ତରଙ୍ଗ ଆକାଶ' କାବ୍ୟର କବିଙ୍କୁ ମୁଁ ନନ୍ଦିତାଦେବୀ ଆନ୍ତରିକ ଅଭିନନ୍ଦନ ଜଣାଉଛି ।

ବିନୟର ହସଟିକୁ ଉପହାର ଦେଇ କହିଲେ ସୌରୀନ୍ଦ୍ରବାବୁ, ଆପଣଙ୍କୁ ଧନ୍ୟବାଦ ।

ଏତିକିବେଳେ ଶାନ୍ତିନିକେତନ ଝୁଲାଟିଏ କାନ୍ଧରେ ପକେଇ ପହଞ୍ଚିଲେ ଲେଖକ ସାମ୍ମୁଖ୍ୟର ଯୁଗ୍ମ ସମ୍ପାଦକ ଯୁଗଳବାବୁ । ବ୍ୟସ୍ତସାବ୍ୟସ୍ତ ବରେନ୍ଦ୍ରବାବୁ କହିଲେ, ଯୁଗଳବାବୁ, ଆପଣ ଟିକିଏ ଯାଆନ୍ତୁ ନନ୍ଦିତାଦେବୀଙ୍କ ସଙ୍ଗେ । ସେ କିଛି ଭଲ ବହି କିଣିବାକୁ ଚାହାନ୍ତି । ଆପଣ ଟିକିଏ ସାହାଯ୍ୟ କରିବେ । ନନ୍ଦିତାଦେବୀ, ମୁଁ ଟିକିଏ ବ୍ୟସ୍ତରେ ଅଛି । ବରେନ୍ଦ୍ରବାବୁ ଜରୁରୀ କାମରେ ଯିବା ପୂର୍ବରୁ ନନ୍ଦିତାଙ୍କୁ କହିଲେ, ହଁ ଆପଣ ବହି କିଣିସାରିଲା ପରେ ଆସି ଆମର ଏଇ ଅଫିସରେ ଅପେକ୍ଷା କରିବେ । କଥା ଅଛି । ଏତକ କହି, ବ୍ୟସ୍ତରେ ବରେନ୍ଦ୍ରବାବୁ ପୁସ୍ତକମେଳାର ଜନସମୁଦ୍ରରେ ହଜିଗଲେ ।

ନନ୍ଦିତା ମନେ ମନେ ବିଚାରିଲା, ନା, ଟଙ୍କାକଥା ବରେନ୍ଦ୍ରବାବୁଙ୍କୁ କହିବା ସମ୍ଭବ ନୁହେଁ । ଏଣେ ସେ ଦେଖିଲା, ବରେନ୍ଦ୍ରବାବୁଙ୍କ ନିର୍ଦ୍ଦେଶରେ ଯୁଗଳବାବୁ ଅପେକ୍ଷାରତ । ତାଙ୍କୁ ନମସ୍କାର ଜଣାଇ ନନ୍ଦିତା କହିଲା, ତା'ହେଲେ ଆପଣ ସେଇ ଅନୁବାଦକ ଯୁଗଳବାବୁ ? ବିନୟୀ ହସରେ ଉଦ୍‌ଭାସିତ ହୋଇ ସମ୍ମତି ଜଣାଇଲେ ଯୁଗଳବାବୁ । ନନ୍ଦିତା କହିଲା, ଯୁଗଳବାବୁ, ସୁଖର କଥା ଯେ ଏଇ 'ପୁସ୍ତକମେଳା' ଆଉ 'ଲେଖକ ସାମ୍ମୁଖ୍ୟ'ର କର୍ମକର୍ତ୍ତାମାନେ ଓଡ଼ିଶା ବାହାରର ଖ୍ୟାତିସମ୍ପନ୍ନ ସାହିତ୍ୟିକମାନଙ୍କୁ ନିମନ୍ତ୍ରଣ କରି ଓଡ଼ିଶାର ସାହିତ୍ୟାନୁରାଗୀମାନଙ୍କୁ ସେମାନଙ୍କ ସଙ୍ଗେ ପରିଚୟ କରିବାର ସୁଯୋଗ ଦେଉଛନ୍ତି । ଆଉ ଆପଣଙ୍କ ଭଳି କଥାଶିଳ୍ପୀ ସେମାନଙ୍କର ଶ୍ରେଷ୍ଠ ରଚନାକୁ ଅନୁବାଦ ମାଧ୍ୟମରେ ଏକ ମହତ୍ କାର୍ଯ୍ୟ ସାଧନ କରୁଛନ୍ତି ।

ହସିଲେ ଯୁଗଳବାବୁ । କହିଲେ, ସେଇଟା ମୋର ନିଶା । ମହତ୍ କାର୍ଯ୍ୟ କ'ଣ ? ଦେଖନ୍ତୁ ସେଥର ଲେଖକ ସାମ୍ମୁଖ୍ୟ ଯୋଗୁଁ ବାଲେଶ୍ୱରକୁ ଆସିଥିଲେ, ପ୍ରଖ୍ୟାତ କଥା ସାହିତ୍ୟିକ ବିମଲ ମିତ୍ର, ଶଙ୍କର ଆଉ ସୁନୀଲ ଗାଙ୍ଗୁଲୀ । ବଙ୍ଗଳାର କ୍ଲାସିକ ଔପନ୍ୟାସିକ ହେଲେ ବିମଲ ମିତ୍ର । ତାଙ୍କର 'କଡ଼ିଦିଏ କିନ୍‌ଲାମ୍' 'ସାହେବ ବିବି ଗୋଲାମ୍' 'ଏବାର କାର ପାଲା' 'ଆସାମୀ ହାଜିର' 'ଏଇ ନରଦେହ' ପ୍ରଭୃତି ବିରାଟ ଉପନ୍ୟାସମାନ କାଳଜୟୀ ରଚନା । ତାଙ୍କର ଅଭିନବ ଉପନ୍ୟାସ 'ରାତେର କଲକାତା' ଆପଣ ଅନୁବାଦ କରିଛନ୍ତି ।

ହଁ ଦୁଃଖର କଥା 'ଆସାମୀ ହାଜିର' ଅନୁବାଦ ଏ ବହି ମେଳାରେ ପ୍ରକାଶିତ ହୋଇପାରିଲା ନାହିଁ ।

ଆଉ ଶଙ୍କର ମହାଶୟ ତ ବଙ୍ଗଳାର ଅନ୍ୟତମ ଜନପ୍ରିୟ ଲେଖକ । ତାଙ୍କର ଯେଉଁ ଉପନ୍ୟାସଟି ଦଶବର୍ଷ ମଧ୍ୟରେ ବାଇଶଟି ସଂସ୍କରଣ ହେବାର ସୌଭାଗ୍ୟ ଲାଭ କରିଛି ସେଇ ଉପନ୍ୟାସ 'ଚୌରଙ୍ଗୀ'ର ଅନୁବାଦ ଆପଣ କରିଛନ୍ତି । ତା'ଛଡ଼ା ଆପଣ ଅନୁବାଦ କରିଛନ୍ତି 'କତ ଅଜାନାରେ' ଆଉ ସୁନୀଲ ଗାଙ୍ଗୁଲୀ ଏକାଧାରରେ ଜଣେ ଶ୍ରେଷ୍ଠ କବି, ଶ୍ରେଷ୍ଠ ଔପନ୍ୟାସିକ । ତାଙ୍କର ଉପନ୍ୟାସ 'ସେଇ ସମୟ' 'ପୂର୍ବ-ପଶ୍ଚିମ' ଚହଳ ପକେଇ ଦେଇଛି ।

ଆଲୋଚନା କରୁ କରୁ ସେମାନେ ଆଗେଇ ଯାଉଥିଲେ ବହିମେଳା ଭିତରେ । ମାଇକ୍‌ରେ ପ୍ରଚାରିତ ହେଲା, ଜ୍ଞାନପୀଠ ପୁରସ୍କାର ଦ୍ୱାରା ସମ୍ମାନିତ ଯଶସ୍ୱୀ ଔପନ୍ୟାସିକ ଗୋପୀନାଥ ବାବୁ ପୁସ୍ତକମେଳାରେ ଉପସ୍ଥିତ ଅଛନ୍ତି । ବଣପାହାଡ଼ ଘେରା ଓଡ଼ିଶାର ପ୍ରକୃତିର ସନ୍ତାନ ଆଦିବାସୀମାନଙ୍କ ଜୀବନ ଅବଲମ୍ବନରେ ସଫଳ ଉପନ୍ୟାସ ରଚନା କରିବାରେ ଯେ ଦିଗ୍‌ଦ୍ରଷ୍ଟା ତାଙ୍କର ସାକ୍ଷାତ ପରିଚୟ ପାଇ ନିଜକୁ ଧନ୍ୟ ମନେକଲା ନନ୍ଦିତା ।

ମନର କ୍ଷୋଭ ଜନ୍ମିଲା ଚିନ୍ମୟଙ୍କ କଥା ଚିନ୍ତା କରି । ତାଙ୍କର ସମସ୍ତ ଟ୍ୟାଲେଣ୍ଟ ସମସ୍ତ ଜିନିୟସ କେବଳ ଅଫିସର ଫାଇଲ ଗଦା ଭିତରେ ଉଇ ପୋକ ହେବା ସାରହେଲା । କୁଆଡ଼େ ହଜିଗଲା ତାଙ୍କର ସେ ମାନବିକ ସୂକ୍ଷ୍ମ ଅନୁଭୂତି ସବୁ ? କାହ୍ନୁବାବୁ, ଗୋପୀବାବୁ ହୋଇପାରିଲେ ଅନନ୍ୟ ସାଧାରଣ ଔପନ୍ୟାସିକ । ସୀତାକାନ୍ତବାବୁ; ରମାକାନ୍ତବାବୁ ହେଇପାରିଲେ ବିଶିଷ୍ଟ କବି, ଅଥଚ ଚିନ୍ମୟ ? ଏକ ଦୀର୍ଘଶ୍ୱାସ ବାହାରିଲା ନନ୍ଦିତାର ବୁକୁତଳୁ ।

ବିସ୍ମୟରେ ଯୁଗଳବାବୁ ପଚାରିଥିଲେ, ଆପଣ କ'ଣ ଭାବୁଛନ୍ତି ? ଏଇ ଦେଖନ୍ତୁ, ସେଠାରେ ଠିଆହୋଇଛନ୍ତି ବିଶିଷ୍ଟ କଥା ସାହିତ୍ୟିକ ଶାନ୍ତନୁବାବୁ । ନନ୍ଦିତା ଚାହିଁ ଦେଖିଲା, ଅଳ୍ପ ଦୂରରେ ଠିଆ ହୋଇଥିଲେ, 'ଶତାବ୍ଦୀର ନଚିକେତା' 'ନର କିନ୍ନର' ପ୍ରଭୃତିର ସ୍ରଷ୍ଟା । ସଶ୍ରଦ୍ଧ ନମସ୍କାର ଜଣାଇ ନନ୍ଦିତା କହିଥିଲା, ମୁଁ ଆପଣଙ୍କର ଜଣେ ମୁଗ୍ଧ ପାଠିକା । ମୋତେ ଭାରି ଭଲ ଲାଗିଲା, ଆପଣଙ୍କର 'କରଞ୍ଜିଆ ଡାଇରୀ' ।

ସ୍ନିଗ୍ଧ ହସର ପ୍ରତିଦାନ ଦେଇ ସାନ୍ତନୁବାବୁ କହିଲେ, ମୁଗ୍ଧ ପାଠକର ସ୍ୱୀକାରୋକ୍ତିଠାରୁ ଜଣେ ଲେଖକ ପାଇଁ ମହତ୍ ପୁରସ୍କାର ଆଉ କ'ଣ ହୋଇପାରେ ?

ଶ୍ରଦ୍ଧାରେ ନତ କରିଥିଲା ନନ୍ଦିତା ନିଜର ମଥାକୁ ।

ସେଇ ଯେ ଷ୍ଟଲରେ କିଛି ବହିଧରି ସେଠି ବସିଛନ୍ତି, ତାଙ୍କୁ ଚିହ୍ନିଛନ୍ତି ? ସେ ହେଲେ ମୋର ଜଣେ ଘନିଷ୍ଠ ବନ୍ଧୁ ଆଉ ସୁପରିଚିତ ଗାଳ୍ପିକ ବିଜୟକୃଷ୍ଣ ମହାନ୍ତି ।

ଓଃ, କବି ବ୍ରହ୍ମୋତ୍ରୀଦେବୀ ଆପଣଙ୍କର ସ୍ତ୍ରୀ ? କାହିଁ, ତାଙ୍କୁ ଏଠାରେ ଦେଖୁନାହିଁ ? ପଚାରିଥିଲା ନନ୍ଦିତା ।

ନା, ଆମେ ପୁରୀରେ ରହୁଛୁ । ସେ ଆସିପାରି ନାହାନ୍ତି ।

ଯୁଗଳବାବୁ ତା'ପରେ ପରିଚୟ କରେଇଦେଲେ । ଗାଳ୍ପିକ ରବି ପଟ୍ଟନାୟକଙ୍କ ସହିତ । ନମସ୍କାର ଜଣାଇ ନନ୍ଦିତା କହିଥିଲା, ଆପଣଙ୍କ ଦେଖାପାଇ ଖୁସିହେଲି । ଅଳ୍ପଦିନ ତଳେ 'ବିଧବା ବିବାହ' ଉପରେ ଆପଣଙ୍କର ଚମତ୍କାର ଗପଟିଏ ପଢ଼ିଲି । ହସିଲେ ରବିବାବୁ । କହିଲେ, 'ନାବିନି ଅପା, ଇନ୍ଦୁରେଖା ଓ ଗୁରୁବାରୀ' ଗପଟି ଆପଣଙ୍କୁ ଭଲ ଲାଗିଛି, ଯାହାହେଉ ।

ହଁ, ବାରିପଦା ପଟ୍ଟଭୂମିରେ ରଚିତ ସେଇ ଗପଟି ଏକ ମାନବିକ ଆବେଦନର ଦଲିଲ କହିଲେ ଭୁଲ ହେବନି । କହିଲେ ନନ୍ଦିତା ଦେବୀ ।

ସ୍ନେହ ଶ୍ରଦ୍ଧାରେ କେବଳ ହସିଲେ ରବିବାବୁ ।

ସେଇ ମେଳାରେ ମହିଳାଙ୍କ ପତ୍ରିକା 'ସୁରଚିତା'ର ସମ୍ପାଦିକା ଶକୁନ୍ତଳା ପଣ୍ଡାଙ୍କ ସଙ୍ଗେ ପରିଚୟ ହେଲା । ଆଳାପ କରି ନନ୍ଦିତା କହିଥିଲା, ମହିଳାମାନଙ୍କୁ ନେଇ ଆପଣଙ୍କର 'ସୁଚରିତା'ର ଉଦ୍ୟମ ଓଡ଼ିଶା ଭଳି ରାଜ୍ୟରେ ପ୍ରଶଂସନୀୟ ନିଶ୍ଚୟ । ନିୟମିତ ପ୍ରକାଶ ପାଉଛି । ସମ୍ପାଦିକା ଭାବରେ ଆପଣଙ୍କର ସାଫଲ୍ୟ ଅଭିନନ୍ଦନୀୟ ।

ନନ୍ଦିତା ମୁଖରୁ ପ୍ରଶଂସା ପୁଣି ଅମ୍ଳାନ ହସ ଉପହାର ଦେଇଥିଲେ ଶକୁନ୍ତଳାଦେବୀ । କହିଥିଲେ, ଆପଣ ତ ଜଣେ ଅଧ୍ୟାପିକା । ଲେଖା ପଠାନ୍ତୁ । ତା'ପରେ ସେ ହସି ହସି କହିଲେ, କବିତା ନୁହେଁ ଗପଟିଏ ପଠାନ୍ତୁ ।

ବିନିମୟସ୍ୱରୂପ ହସର ଫୁଲ ଫୁଟେଇ ନିରବ ରହିଥିଲେ ନନ୍ଦିତା । ବଙ୍ଗଦେଶରେ ସୁପରିଚିତ କବି ସୁକାନ୍ତ ଭଟ୍ଟାଚାର୍ଯ୍ୟଙ୍କ ଭାଷାରେ ନନ୍ଦିତାର କହିବାକୁ ମନହେଇଥିଲା, 'ଏବାରେ କବିତା, ତୋମାୟ ଦିଲାମ୍ ଛୁଟୀ/ପୂର୍ଣ୍ଣିମାର ଚାନ୍ଦ ମନେହଲ ଯେନ ଝଲସାନ ରୁଟି ।'

କାରଣ ସେତେବେଳେ ନନ୍ଦିତାର ମନଅରଣ୍ୟରେ ବସନ୍ତର ପଲାଶ ନୁହେଁ ଜଳୁଥିଲା ଲାଲ ବହ୍ନିଶିଖା । ମନରେ ଗଭୀର ଦ୍ୱନ୍ଦ । ସେ ଭାବିଲା, ତା' ଜୀବନରୁ ବୋଧହୁଏ ଛୁଟି ନେଲେଣି ଯେତେକ କାବ୍ୟକବିତା କବି ଓ୍ୱର୍ଡ଼ସୱର୍ଥଙ୍କ ଭାଷାରେ କବିତା'ର ସଂଜ୍ଞା ଯଦି Recollections in tranquility ହୁଏ, ଏବେ ତା' ମନ ତ କକ୍ଷଚ୍ୟୁତ ଏକ ଅଶାନ୍ତ ଗ୍ରହ ଭଳି । ସମ୍ପାଦିକାଙ୍କ ଅନୁରୋଧରେ ତା'ର କହିବାକୁ ଇଚ୍ଛାହେଲା, ସେ ଲେଖିକା ନହୋଇ ପାଠିକାର ଭୂମିକାରେ ହିଁ ସନ୍ତୁଷ୍ଟ । ପାଠିକାର

ସ୍ୱାଧୀନତାକୁ ଲେଖକ ହୋଇ ନଷ୍ଟ କରିଦେବାକୁ ମନ ଚାହୁଁ ନଥିଲା । ଜଣେ ପ୍ରତିଷ୍ଠିତ ଲେଖକ ଭୟ କରେ ଅନ୍ୟ ରଚନା ପାଠ କରିବାକୁ । କାରଣ ସେ ଆଶଙ୍କା କରେ, ତଦ୍ୱାରା ତାଙ୍କ ନିଜସ୍ୱ ମୌଳିକତାରେ ଆଞ୍ଚ ଆସିପାରେ; ଅଥଚ ଗଭୀର ଓ ବିସ୍ତୃତ ଭାବେ ଅଧ୍ୟୟନ ନକଲେ ଲେଖକ ହେବା ସମ୍ଭବ ନୁହେଁ ।

ଯୁଗଳବାବୁ ପଚାରିଲେ, ଆପଣ କ'ଣ ଭାବୁଛନ୍ତି ? ଏଇ ଦେଖନ୍ତୁ, ଓଡ଼ିଶା ସାହିତ୍ୟ ଏକାଡ଼େମୀର ବର୍ତ୍ତମାନ ସଭାପତି ମହାପାତ୍ର ନୀଳମଣି ସାହୁ । ତାଙ୍କ ସଙ୍ଗେ ରହିଛନ୍ତି, ଏକାଡ଼େମୀର ସମ୍ପାଦକ ସୁରେନ୍ଦ୍ର ଶତପଥୀ । ଉଭୟଙ୍କୁ ଶ୍ରଦ୍ଧା ନିବେଦନ କଲା ନନ୍ଦିତା । ସେମାନଙ୍କ ସଙ୍ଗେ ପରିଚିତ ହେବାର ଇଚ୍ଛା ଥିଲା । ଯାହାହେଉ, ବହିମେଳାରେ ସେ ସୁଯୋଗ ମିଳିବାରୁ ନନ୍ଦିତା ଖୁସି ହେଲା ମନେ ମନେ ।

ସେଠାରୁ ବିଦାୟ ନେଇ, ଗୋଟିଏ ବହିଷ୍ଟଲ ପାଖରେ ଅଟକିଲା ନନ୍ଦିତା । ପଚାରିଲା, ଆଚ୍ଛା ଯୁଗଳବାବୁ, ସେହି ସୌମ୍ୟଦର୍ଶନ ଭଦ୍ରବ୍ୟକ୍ତି ନିଶ୍ଚୟ 'ବଧୂ ନିରୁପମା' 'ହାକିମବାବୁ' ପ୍ରଭୃତିର ସ୍ରଷ୍ଟା ବିଭୂତିବାବୁ ।

ଆପଣଙ୍କ ଅନୁମାନ ଭୁଲ୍ ନୁହେଁ । କହିଲେ ଯୁଗଳବାବୁ । ସେ ପରିଚୟ କରେଇଦେଇ ବିଭୂତିବାବୁଙ୍କୁ କହିଲେ, ଏ ହେଲେ ଅଧ୍ୟାପିକା ନନ୍ଦିତାଦେବୀ । ଆପଣଙ୍କ ଗଳ୍ପ ଉପନ୍ୟାସର ଜଣେ ମୁଗ୍ଧ ପାଠିକା ।

ନମସ୍କାର ବିନିମୟ ପରେ ନନ୍ଦିତା କହିଲା, ହଁ ଆପଣଙ୍କ ସଙ୍ଗେ ପରିଚିତ ହେବାର ସୌଭାଗ୍ୟ ପାଇ ଖୁସିହେଲି । ନିର୍ମଳ ହସର ଶୁଭ୍ର ପୁଷ୍ପ ପ୍ରସ୍ଫୁଟିତ କରି ବିଭୂତିବାବୁ କହିଲେ, ମୁଁ ମଧ୍ୟ ଭାରି ଖୁସି ହେଲି ।

ଫେରିଲାବେଳେ ଦେଖାହେଲା, କବି ସୁଧାଂଶୁମୋହନ ରାଉତରାୟଙ୍କ ସଙ୍ଗେ । ନନ୍ଦିତା କହିଥିଲା, 'ଶେଷ ବସନ୍ତର କବି'ଙ୍କୁ ମୁଁ ଅଭିନନ୍ଦନ ଜଣାଉଛି । ସୁଧାଂଶୁବାବୁ କହିଲେ, ଯୁଗଳବାବୁଙ୍କ ଠାରୁ ଜାଣି ମୁଁ ଖୁସିହେଲି ଯେ ଆପଣ ଚିନ୍ମୟବାବୁଙ୍କର ସ୍ତ୍ରୀ । ଚିନ୍ମୟଙ୍କ କଥା ନନ୍ଦିତାର ସ୍ମୃତିକୁ ପୁଣି ଆଲୋଡ଼ିତ କଲା । ବିଷର୍ଣ୍ଣ ହୋଇ ସେ ଭାବିଲା କୌଣସି କବି କୌଣସି ସାହିତ୍ୟିକ ଓଡ଼ିଶାରେ କେବଳ ସାହିତ୍ୟସମ୍ଭାର ନିର୍ଭର କରି ଚଳୁନାହାନ୍ତି । ସେମାନେ ମଧ୍ୟ ଶାସନକ୍ଷେତ୍ରରେ ନିଜର ଦାୟିତ୍ୱକୁ ସୂଚାରୁଭାବେ ତୁଲାଇ ପାରୁଛନ୍ତି । ବାଣୀ ଆରାଧନା ସେମାନଙ୍କର ସାଧନା; ଅଥଚ ଚିନ୍ମୟ, ଏ ଦିଗରେ ସେ ଏକ ବ୍ୟତିକ୍ରମ । ଗଭୀର ଦୁଃଖରେ ଦୀର୍ଘଶ୍ୱାସ ତ୍ୟାଗ କଲେ ନନ୍ଦିତା ।

ଯୁଗଳବାବୁ ଡାକିଲେ । ସେ ଡାକରେ ନନ୍ଦିତା ଫେରିପାଇଲା ତା'ର ସ୍ଥିତି । ମାନସିକ ଭାରସାମ୍ୟ ରଖିବାକୁ ସେ ଚେଷ୍ଟାକଲା ।

ଆପଣ କ'ଣ ବହି କିଣିବେ ପରା ? ଚାଲନ୍ତୁ, ଆପଣ କେଉଁ ପ୍ରତିଷ୍ଠାନକୁ ଯିବେ ? ପଚାରିଲେ ଯୁଗଳବାବୁ ।

ଯୁଗଳବାବୁଙ୍କର ପ୍ରଶ୍ନ ଶୁଣି ଅଟକିଗଲା ନନ୍ଦିତା, ସେ ଚାହିଁଲା ଯୁଗଳବାବୁଙ୍କୁ । ସେ ଦୃଷ୍ଟି ଯେପରି କରୁଣ ସେହିପରି ଅସହାୟ । ଯୁଗଳବାବୁ ଦେଖିଲେ, ପଶ୍ଚିମ ଦିଗନ୍ତରୁ ଢଳିଲା ସୂର୍ଯ୍ୟର ମଳିନ ଆଭା ଝରିପଡୁଥିଲା ନନ୍ଦିତାଦେବୀଙ୍କ ମୁଖରେ ଏବଂ ସେ ମୁଖ ଦିଶୁଥିଲା ଅତ୍ୟନ୍ତ ବିଷଣ୍ଣ ।

ଯୁଗଳବାବୁ, ବହି କିଣିବି କ'ଣ ? ମୁଁ କିଣି ସାରିଲିଣି । କିନ୍ତୁ ମୁଁ ଭାରି ବିପଦରେ ପଡ଼ିଯାଇଛି । କହିଲା ନନ୍ଦିତା ।

ବିପଦ ? କାହିଁକି, କ'ଣ ହେଲା ନନ୍ଦିତାଦେବୀ ? ଯୁଗଳବାବୁଙ୍କ କଣ୍ଠରେ ବ୍ୟଗ୍ରତା ଫୁଟିଉଠିଲା ।

ମୁଁ ଭାବିଥିଲି, ମୋ ବ୍ୟାଗ୍‌ରେ ଟଙ୍କା ଅଛି । କିନ୍ତୁ ବିଲ୍ ପାଇ ଦେଖିଲି, ମୋ ବ୍ୟାଗ୍‌ରେ ଟଙ୍କା ନାହିଁ । ଲାଜରେ ମୁଁ ଦୋକାନୀକୁ ମୁହଁ ଦେଖାଇପାରୁନାହିଁ ।

ନନ୍ଦିତାଦେବୀଙ୍କ କଥା ଶୁଣି ହସିଲେ ଯୁଗଳବାବୁ । କହିଲେ, ଏଥିରେ ଲାଜ କରିବାର କିଛି ନାହିଁ । ଆପଣ ଟିକିଏ ଅପେକ୍ଷା କରନ୍ତୁ । ମୁଁ ବୁଝିଆସୁଛି ।

ମେଳାର ସେଇ ଜଳଖିଆ କ୍ୟାଣ୍ଟିନ୍‌ରେ ଚା' କପେ ଦେଇ ନନ୍ଦିତାକୁ ବସେଇଦେଇ ଯୁଗଳବାବୁ ଚାଲିଗଲେ । କିଛି ସମୟ ପରେ ସେ ଫେରି ଆସିଲେ । ତାଙ୍କର ହସ ହସ ମୁହଁ ଦେଖି ନନ୍ଦିତା ଆଶ୍ୱସ୍ତ ହେଲେ । ଯୁଗଳବାବୁ କହିଲେ ଆପଣ ମୋ' ସଙ୍ଗରେ ଆମ ଅଫିସକୁ ଚାଲନ୍ତୁ । ବରେନ୍ଦ୍ରବାବୁ ଆପଣଙ୍କର ଅପେକ୍ଷାରେ ଅଛନ୍ତି । ଆଉ ଗୀତା ଅପା ମଧ କେତେବେଳୁ ଆସି ଆପଣଙ୍କୁ ଖୋଜୁଛନ୍ତି ।

ଯୁଗଳବାବୁଙ୍କୁ ଅନୁସରଣ କଲା ନନ୍ଦିତା । ଦେଖିଲା, ପୁସ୍ତକ ମେଳାର ଅଫିସ ପାଖରେ ସମସ୍ତେ ଠୁଳ ହୋଇଛନ୍ତି; କିନ୍ତୁ ସେଠାରେ ସେ ସ୍ୱପ୍ନରେ ବି ଆଶା କରି ନଥିଲା ଯେ ଖୋଦ୍ ଚିନ୍ମୟଙ୍କୁ ଭେଟିବ ବୋଲି । ଧାନରତା ପାର୍ବତୀଙ୍କ ସମ୍ମୁଖରେ ସ୍ୱୟଂ ସଦାଶିବଙ୍କ ଆବିଷ୍କାର କରି ନନ୍ଦିତାର ଅଭିମାନୀ ମନର ଅବସ୍ଥା ହୋଇ ବସିଲା; ନ ଯଯୌ, ନ ତସ୍ଥୌ ।

ବରେନ୍ଦ୍ରବାବୁ କହୁଥିବାର ନନ୍ଦିତା ଶୁଣିଲା, ବୁଝିଲେ ଚିନ୍ମୟବାବୁ, ସନ୍ଧ୍ୟାବାସରେ ନନ୍ଦିତାଦେବୀ ବାରିପଦାକୁ ଫେରିଯିବା ପାଇଁ ବ୍ୟସ୍ତ । ଆପଣଙ୍କର ଫୋନ୍ ପାଇ ଆମେ ତାଙ୍କୁ ଅଟକାଇ ଦେଇଛୁ । ତା'ଛଡ଼ା, ମୁଁ ଶୁଣିଲି, ସେ ବଡ଼ ଅସୁବିଧାରେ ପଡ଼ିଯାଇଛନ୍ତି । ଏହା କହୁ କହୁ ବରେନ୍ଦ୍ରବାବୁଙ୍କର ନଜର ପଡ଼ିଗଲା ନନ୍ଦିତାଦେବୀଙ୍କ ଉପରେ । ସେ କହିଲେ, ଏଇ ଯେ ଚିନ୍ମୟବାବୁ, ନନ୍ଦିତାଦେବୀ ପହଞ୍ଚିଗଲେଣି ।

ନନ୍ଦିତାଦେବୀ ଚିନ୍ମୟଙ୍କୁ ଦେଖି ଇତସ୍ତତଃ ହେଲେ । ଦାରୁଣ ଅଭିମାନରେ ମନ ଗୁମରି ଉଠିଲା । ବିଚାରିଲେ, ନା, ସେ ହାତ ପତେଇବେ ନାହିଁ, କି ତୁଣ୍ଡ ଖୋଲିବେ ନାହିଁ ।

କିନ୍ତୁ ଚିନ୍ମୟବାବୁ ଆଗେଇ ଆସୁଥିଲେ । ଆଶ୍ଚର୍ଯ୍ୟ, ତାଙ୍କ ମୁହଁରେ କ୍ରୋଧ କିମ୍ବା ଅଭିମାନର ଚିହ୍ନ ନଥିଲା । ସେ ସରଳ କଣ୍ଠରେ କହିଲେ, କିଛି ଚିନ୍ତାକର ନାହିଁ ନନ୍ଦିତା ।ମୁଁ ବିଲ୍ ପେମେଣ୍ଟ କରିଦେବି । ତୁମେ ବସାକୁ ଚାଲ ।

ଅଭିମାନରେ ନିରବ ରହିଲା ନନ୍ଦିତା ।

ଚିନ୍ମୟ କହିବାକୁ ଲାଗିଲେ, ବୁଝିଲ ନନ୍ଦିତା, ରାଜଧାନୀଭଳି ଜାଗାରେ ମୋର ଏକୁଟିଆ ଆସିବା ଭୁଲ୍ ହୋଇଛି । ଏଠି ଏକୁଟିଆ ଚଳିବା ସହଜ ନୁହେଁ । ତା’ଛଡ଼ା ମାମିନା ପାଇଁ ମନ କଷ୍ଟ ହେଉଛି । ସେ କିପରି ଅଛି ?

ମାମିନାର ନାଁ ଶୁଣି ଚଞ୍ଚଳହେଲା ନନ୍ଦିତାର ମନ । ମାମିନାକୁ କହିଆସିଥିଲା, ତା’ ନନାକୁ ଖୋଜିଆଣିବା ପାଇଁ ସେ ଯାଉଛି ଭୁବନେଶ୍ୱର । ଏବେ ସେ ବାରିପଦାକୁ ଫେରି ମାମିନାକୁ କ’ଣ ଉତ୍ତରଦେବ, ବୁଝିପାରିଲା ନାହିଁ ।

ଚିନ୍ମୟ ତଥାପି କହୁଥିଲେ, ଚାଲ, ଗାଡ଼ିରେ ବସ । ବସାକୁ ଯିବା ।

ନନ୍ଦିତା ପରିବେଶକୁ ଚାହିଁ ଦେଖିଲା, ସମସ୍ତେ ଚାହିଁ ବସିଛନ୍ତି । ଭାରି ଅଡୁଆ ଲାଗିଲା ।

ଗୀତାଅପା ପାଖେଇଆସି ନନ୍ଦିତାର ହାତ ଧରି କହିଲେ, ଏତେ ଭାବୁଛୁ କ’ଣ ଲୋ ନନ୍ଦିତା । ତୋ’ ଖବର ପାଇ ମୁଁ ଚିନ୍ମୟକୁ ଫୋନ୍‌ରେ ଡାକିଆଣିଛି । ତୁ ଚିନ୍ମୟ ବିରୁଦ୍ଧରେ ଯାହାସବୁ ଶୁଣୁଛୁ, ସେସବୁ ସତ ନୁହେଁ । ବସାକୁ ଚାଲ । ଗଲେ, ବସାରେ ଚିନ୍ମୟକୁ ଦେଖିଲେ ସବୁ କଥା ତୁ ବୁଝିପାରିବୁ । ମାମିନାପାଇଁ କେଶ୍, କୋଟ-କଚେରୀ କଥା ଯାହା ଶୁଣିଛୁ ସେସବୁ ମିଛ କଥା ।

ମିଛକଥା ? ପଚାରିଲା ନନ୍ଦିତା ।

ଚିନ୍ମୟ କହିଲା, ତୁମେ ବସାକୁ ଚାଲ । ସବୁ ବୁଝିପାରିବ ।

ଗୀତା ଅପା କହିଲେ, ଏଥିରେ ଭାବିବାର କିଛି ନାହିଁ । ଚିନ୍ମୟ ଚେଷ୍ଟା କରୁଛି । ତୋର ମଧ୍ୟ ରାଜଧାନୀକୁ ଖୁବ୍ ଶୀଘ୍ର ବଦଳି ହୋଇଯିବ ।

ସବୁ କଥା ଶୁଣି ଅଭିମାନର ବରଫ ନନ୍ଦିତା ମନରେ ଆଉ ଜମାଟ ବାନ୍ଧି ରହିପାରିଲା ନାହିଁ । ସେ ଯାଇ ଗାଡ଼ିରେ ବସିଲା । ଚିନ୍ମୟ ମଧ୍ୟ ଗାଡ଼ିରେ ବସିଲା । ଗାଡ଼ି ଚାଲିଲା ବସାକୁ ।

ବରେନ୍ଦ୍ରବାବୁ ଚାହିଁଲେ ଗୀତା ଅପାଙ୍କୁ । ଗୀତା ଅପା ବରେନ୍ଦ୍ରବାବୁ ଆଉ ସାତକଡ଼ିବାବୁଙ୍କୁ ଚାହିଁ ହସି ହସି କହିଲେ, ଦେଖିଲ ତ, ଅନ୍ତଃସଲିଳା ଫଲ୍‌ଗୁ ନଈର ସ୍ରୋତ କେଡ଼େ ମଧୁର । ବୁଝିଲେ ବରେନ୍ଦ୍ରବାବୁ, ଆପଣମାନଙ୍କ ପଞ୍ଚମ ପୁସ୍ତକ ମେଳାର ଏହା ଏକ ଅନବଦ୍ୟ ଅବଦାନ ।

ସମସ୍ତେ ହସିଲେ । ସେଠାରେ ଆନନ୍ଦର ଜୁଆର ଖେଳିଗଲା ।



# ଚକ୍ରବ୍ୟୂହ

ଶିଡ଼ିରେ ତରତର ହେଇ ଓହ୍ଲେଇ ଆସୁଥିଲେ ଦିବ୍ୟସିଂହ ସାମନ୍ତରାୟ । ଏତିକିବେଳେ ଓଳଗି ହେଲେ ମହାପାତ୍ରେ । ଶିଡ଼ିବାଙ୍କରେ ଅଟକିଗଲେ ଦିବ୍ୟସିଂହ । ପଚାରିଲେ, କ'ଣ ମହାପାତ୍ରେ, ସୁର ପଣ୍ଡିତେ ଅଇଲେ ?

ନାହିଁ ସାଆନ୍ତେ ।

କ'ଣ କହିଲ ମହାପାତ୍ରେ, ଦିନ ବୁଡ଼ିଲେ କାଳୀ ପୂଜା; ଏଯାଏ ପୁରୋହିତ ପହଞ୍ଚିଲେ ନାହିଁ ? କିନ୍ତୁ ପଲକରେ ତାଙ୍କ ଆଖି ଆଗରେ ବୋଧହୁଏ ଭାସି ଉଠିଲା ସିଦ୍ଧସାଧକ ସୁରପଣ୍ଡିତଙ୍କର ରୂପ — ମଥାରେ ଜଟ, ହାତରେ ବେକରେ ରୁଦ୍ରାକ୍ଷର ମାଳ । ଜଳି ଉଠିଲା ତାଙ୍କର ଆଖିଯୋଡ଼ିକ ଯେଉଁଥିରେ ଭରି ରହିଛି ସମ୍ମୋହନ ଶକ୍ତି । ଗୋଖର ସାପର ଉଦ୍ଧତ ଫଣା ନଇଁଲାଭଳି ତାଙ୍କ ରାଗ ମଧ ନଇଁପଡ଼ିଲା କ୍ଷଣିକରେ । ମନକୁ ମନ ସେ କହିବାକୁ ଲାଗିଲେ, କିନ୍ତୁ, ସୁର ପଣ୍ଡିତଙ୍କ ପକ୍ଷରେ ଏଭଳି ତ ହେବାକଥା ନୁହେଁ ।

ଯାହା କହିଲେ ସାଆନ୍ତେ ! ସୁର ପଣ୍ଡିତଙ୍କର କଥାର ଖିଲାପ ହେବା କଥା ନୁହେଁ । ହେଲେ, ଆପଣ ବ୍ୟସ୍ତ ହେବେନାହିଁ । ନୀଳମଣି ପଣ୍ଡିତେ ଆଉ ସୁଦର୍ଶନ ପଣ୍ଡିତେ ଦିହେଁ ଆସିଗଲେଣି । ସେମାନେ ପୂଜା, ନୈବେଦ୍ୟ, ହୋମ ଆଉ ଚଣ୍ଡୀପାଠର ଆୟୋଜନ କରୁଛନ୍ତି । ପୁରୋହିତେ ସଂଜକୁ ପହଞ୍ଚିଗଲେ ପୂଜା ଅନୁକୂଳ କରିବେନି ? ମହାପାତ୍ରେ ଶୁଣେଇଲେ ଆଶ୍ୱାସନାର ବାଣୀ ।

ସୁର ପଣ୍ଡିତଙ୍କ ପାଖକୁ ଗାଡ଼ି ପଠେଇଛ ? ଗାଡ଼ିରେ ପଠେଇଲ କାହାକୁ ? ସଂଦେହର ମେଘ ଭିତରେ ଅଣନିଃଶ୍ୱାସିଆ ହେଇ ଜେରା କରିବାକୁ ଆରମ୍ଭ କଲେ ଦିବ୍ୟସିଂହ । କାରଣ ସହରର ଗୁଜବ ତାଙ୍କ କାନରେ ବି ପଡ଼ିଛି । ସୁର ପଣ୍ଡିତଙ୍କ ଦେଖା ମିଳୁନାହିଁ ଏ ସହର ଯାକରେ ।

ସାଆନ୍ତେ ଘରକୁ ବଇଁଶୀ ପାଖକୁ ଫୋନ କରିଦେଇଛି ।

ବଇଁଶୀ ? ଅଟକିଗଲେ ଦିବ୍ୟସିଂହ, ଆଉ ମୋଟା କାଚର ଚଷମା ତଳୁ ସାଆନ୍ତଙ୍କ ମୁହଁକୁ ସରଜମିନ ତଦନ୍ତ କରି ନିଶ୍ଚିନ୍ତ ହେଲେ ମହାପାତ୍ରେ । ଏକଥା ମହାପାତ୍ରଙ୍କୁ ମାଲୁମ ଅଛି, ଏଭଳି ଜଟିଳ ପରିସ୍ଥିତିରେ ବଇଁଶୀର ନାଁଟି ହିଁ ସାଆନ୍ତଙ୍କ ପାଇଁ ଯଥେଷ୍ଟ ।

ମହାପାତ୍ରେ, ମାନେ ନିମେଇ ମହାପାତ୍ରେ ସାମନ୍ତରାୟଙ୍କ ଜମିଦାରୀର ଏ ତରଫର ପୁରୁଣା ଗୁମାସ୍ତା । ତାଙ୍କରି ବଡ଼ପୁଅ, ବଇଁଶୀ ଏବଂ ସେଇ ବଇଁଶୀ ପାଇଁ ଦିବ୍ୟସିଂହଙ୍କ ମନରେ ଯେ ଦୁର୍ବଳତା ରହିଯାଇଛି, ଏକଥା ନିମେଇ ମହାପାତ୍ରଙ୍କୁ ମାଲୁମ ଅଛି । ବଇଁଶୀ, ଏଇ ଉଆସରେ ହିଁ ମଣିଷ କହିଲେ ଚଳେ । ଜମିଦାରୀ ତରଫରୁ ପାଇଥିବା ନିମେଇ ମହାପାତ୍ରଙ୍କ ମାଟିକାନ୍ଥ ଚାଳଛପର ଘରେ ବଇଁଶୀର ପାଠପଢ଼ିବାର ସୁବିଧା ହୋଇନଥିଲା । ସେକଥା ଜାଣି ତା' ପାଇଁ ଉଆସରେ ବଖରାଏ ଘର ଖଞ୍ଜି ଦେଇଥିଲେ ଖୋଦ୍ ଦିବ୍ୟସିଂହ । ସେଇ ବଇଁଶୀର ଆଗ୍ରହ ହେଇଥିଲା କଲିକତାରେ ଚାର୍ଟେଡ ଏକାଉଣ୍ଟେନ୍‌ସି ପଢ଼ିବାକୁ । ଦିବ୍ୟସିଂହ ନିଜ ଖର୍ଚ୍ଚରେ ପଠେଇଥିଲେ କଲିକତାକୁ । ସେ ଏବେ ପାଶ କରି ଫେରିଛି । ଚାକିରି ପାଇଁ ଦରଖାସ୍ତ ଦେଇଛି । ପାଇଲେ ଯୋଗଦେବ । ଏଇ ସେଦିନ ଦୁର୍ଗାପୂଜା ଗଲା । ସେତିକିବେଳେ ବଇଁଶୀର କାର୍ଯ୍ୟଦକ୍ଷତା ଦେଖି ସେ ଖୁସି ହୋଇଥିଲେ । ସୁର ପଣ୍ଡିତଙ୍କ ପାଖକୁ ବଇଁଶୀ ଯାଇଛି, ଏକଥା ଶୁଣି ସେ ଆଶ୍ୱସ୍ତ ହେଲେ । ସେ ତାଙ୍କୁ ଠାବ କରି ଘେନିଆସିବ, ଏ ବିଶ୍ୱାସ ତାଙ୍କର ଅଛି । ପୁଣି ଦୀର୍ଘଶ୍ୱାସଟାଏ ବାହାରି ଆସିଲା ଦିବ୍ୟସିଂହଙ୍କର ଛାତି ଭିତରୁ । ସେ ଥରେ ଚାହିଁବାକୁ ଚେଷ୍ଟାକଲେ ଭାଗ୍ୟବାନ ନିମେଇ ମହାପାତ୍ରଙ୍କ ମୁହଁକୁ । ନିମେଇ ମହାପାତ୍ରଙ୍କର ତିନିପୁଅରେ ବଡ଼ ଏଇ ବଇଁଶୀ । ଏ ଯୁଗରେ ଝିଅ ଜନ୍ମଦେବାର କଷଣ ତାଙ୍କୁ ଭୋଗିବାକୁ ପଡ଼ିନାହିଁ । ଅଥଚ ଦିବ୍ୟସିଂହଙ୍କର ଛାତିର କଣ୍ଢାଭଳି ପାଞ୍ଚ, ପାଞ୍ଚଟି ଝିଅ । ପୁଅର ମୁଖ ଦର୍ଶନର ସୌଭାଗ୍ୟ ତାଙ୍କର ହେଲାନାହିଁ । ଜମିଦାର ସୂର୍ଯ୍ୟନାରାୟଣ ସାମନ୍ତରାୟଙ୍କର ବଂଶର ରକ୍ତସ୍ରୋତ ଅକସ୍ମାତ୍ ଅଟକିଯିବ ଅଭିଶପ୍ତ ଦିବ୍ୟସିଂହଙ୍କ ନିକଟରେ । ମରୁ ବାଲିରେ ହଜିଯିବ ସାମନ୍ତରାୟ ବଂଶର ନଈଟିକକ । ବୋଧହୁଏ ସେଥିପାଇଁ ତାଙ୍କ ହୃଦୟର ଦୁର୍ବଳତମ କେନ୍ଦ୍ରବିନ୍ଦୁ ଏଇ ବଂଶୀଧର ମହାପାତ୍ର । ପିଲାଟି ସ୍ୱଜାତୀୟ ନୁହେଁ । ତାହା ଏକ ଅକୁହା ବେଦନା, ଅପ୍ରକାଶ୍ୟ ଅନ୍ତର୍ଦାହ । ବଂଶ ମର୍ଯ୍ୟଦାର ସଂସ୍କାରର ପରିଧି ବାହାରେ ସେ ବିଚରଣ କରିବାକୁ ଅକ୍ଷମ ।

ଆଖିରୁ ଚଷମା ଫିଟେଇ ଶିଢ଼ିର ଝରକାବାଟେ ଚାହିଁ ଦେଖିଲେ ସାମନ୍ତରାୟ । ଉଆସ କାନ୍ଥରୁ ଚୂନ କ୍ଷୟ ହୋଇ ବୁଢ଼ୀ ଅସୁରୁଣୀର ବେହେଡ଼ା ଦାନ୍ତଭଳି ଇଟାଗୁଡ଼ାକ ବାହାରିପଡ଼ିଛି । ଚେର ମେଲେଇ ଦେଲେଣି ଯୋଡ଼ିଏ ବର-ଓସ୍ତ ଗଛ । ଶାଗୁଆ ପତ୍ରସବୁ ପତ୍‌ପତ୍ ଉଡୁଥିଲା ଦକ୍ଷିଣା ପବନରେ । ଉଆସର ଦଦରା କାନ୍ଥରେ ସେଇ ଗଛଯୋଡ଼ିକୁ ଅନେକ ଦିନରୁ ଦିବ୍ୟସିଂହଙ୍କ ନଜରରେ ନପଡ଼ିଛି ସେକଥା ନୁହେଁ । ପହିଲେ ଯଉଦିନ ନଜର ପଡ଼ିଯାଇଥିଲା ସେଦିନ ସେ ରାଗି ନିଆଁ ହୋଇଯାଇଥିଲେ ଏବଂ ଆଗରେ ପାଇ ମହାପାତ୍ରଙ୍କୁ ମନଇଚ୍ଛା ଶୋଧି ଦେଇଥିଲେ ।

ମହାପାତ୍ରେ କିନ୍ତୁ ନୀରବ ରହିଥିଲେ । ସାଆନ୍ତଙ୍କ ଗାଳି ଫଜିତ୍‌କୁ ହଜମ କରି

ପକେଇଥିଲେ । ସେ ଜାଣିଥିଲେ, ଗୋଟିଏ ଜାଗାରେ ନୁହେଁ, ବେଢ଼ା ଚାରିପଟେ ଘେରାଏ ବୁଲିଆସିଲେ ସହଜରେ ନଜରରେ ପଡ଼ିବ କାନ୍ଥରେ ଅନେକ ଜାଗାରୁ ଇଟା ଖସିଗଲାଣି । ବର ଗଛର ଚେର ଓହଳି ମାଟିକି ଛୁଇଁଲାଣି ।

ପଚାଶ ମସିହାରୁ ଜମିଦାରୀ ଗଲାଣି । ସମ୍ପତ୍ତି ଭାଗ ବଣ୍ଟରା ହେଲାଣି । ଚାରିଅଣା ଅଂଶର ମାଲିକ ସେ । ହେଲେ ଏବେ ଚୂନ ଧଉଳା କରିବାକୁ ସମ୍ବଳ ନିଅଣ୍ଟ । ପାଞ୍ଚପାଞ୍ଚଜଣ ଝିଅଙ୍କୁ ମଣିଷ କରିବା ସହଜ ପାଠ ନୁହେଁ । ଆଜି ତାଙ୍କର ମନେହେଲା, ଏଇ ବର-ଓସ୍ତ ଗଛ ସବୁ ଚେର ମେଲେଇ ଦେବେ, ଡାଳ ମେଲେଇ ଦେବେ, ଓହଳ ଲମ୍ବେଇ ଦେବେ । ଧୀରେ ଧୀରେ ସେଇ ଗଛତଳେ ହୁଏତ ଦିନେ ହଜିଯିବ ଏଇ ବୁନିଆଦି ଉଆସର ଅସ୍ତିତ୍ୱ ।

ହେଲେ ଦିବ୍ୟସିଂହ ନାଚାର । ଜଳ ବିହୁନେ ଝସ ଭଳି ସେ ଅଚଳ । ମହାପାତ୍ର ନଥିଲେ ଯେ ଅଚଳ ସାମନ୍ତରାୟ ପରିବାରର ରଥଚକ ଅଟକି ପଡ଼ିବ ସଂସାରର ବଡ଼ଦାଣ୍ଡରେ ।

ନିମେଇଁ ମହାପାତ୍ରେ କହିଲେ, ତାଙ୍କ ଘରେ ଫୋନ ଲାଗିଲାଣି । ଅଥଚ ଉଆସର ଫୋନ୍ ବିଲ ବାବଦକୁ ବାକି ପଡ଼ିଛି କେଇ ହଜାର ଟଙ୍କା । ଠିକ୍ ସେମିତି ବାକି ପଡ଼ିଯାଇଛି କେଇ ହଜାର ଟଙ୍କାର ଇଲେକ୍‌ଟ୍ରିକ୍ ବିଲ୍ । ଲାଇନ କାଟିବାକୁ ଲୋକେ ଆସନ୍ତି । ହାତଗୁଞ୍ଜା ଦେଇ ମହାପାତ୍ରେ ମ୍ୟାନେଜ କରନ୍ତି । ଦିବ୍ୟସିଂହେ ଆଖିରେ ଦେଖିନାହାନ୍ତି, ହେଲେ ଶୁଣିଛନ୍ତି, ମହାପାତ୍ରଙ୍କ ଘରେ ଆଉ ମାଟିକାନ୍ଥ ନାହିଁ କି ଚାଳଛପର ନାହିଁ । ସେ ପରା ବିରାଟ ପକା କୋଠା ତୋଳେଇଲେଣି ।

ହଁ, ବଇଁଶୀର ନାଁ ଧରୁ ଧରୁ ସେ ଆସି ହାଜର ହେଲେ ଉଆସରେ । ଦିବ୍ୟସିଂହ ବ୍ୟସ୍ତ ହେଇ ପଚାରିଲେ, 'ସୁର ପଣ୍ଡିତଙ୍କ ଖବର ପାଇଲ ବଂଶୀ ?' ସୁର ପଣ୍ଡିତଙ୍କୁ କେଉଁଠି ପାଇବି, ସେହିକଥା ଜାଣିବାକୁ ମୁଁ ଆପଣଙ୍କ ପାଖକୁ ଆସିଲି ମଉସା, କହିଲା ବଇଁଶୀ ।

'ମଣିମା' କିମ୍ବା 'ସାଆନ୍ତେ' ଭଳି ମରହଟ୍ଟୀ ସମ୍ବୋଧନ କରିବାରେ ବଇଁଶୀର ରୁଚି ନାହିଁ । ଏଇ ଉଆସରେ ହିଁ ସେ ମଣିଷ କହିଲେ ଚଳେ । ମଉସା ମାଉସୀ ସମ୍ବୋଧନ କରିବାରେ ପିଲାଟିଦିନରୁ ସେ ଅଭ୍ୟସ୍ତ । ସେଥିରେ ସାଆନ୍ତାଣୀ ରତ୍ନାଦେବୀ ଖୁସୀ । କିନ୍ତୁ ଦିବ୍ୟସିଂହ ସାମନ୍ତରାୟ ନିଜର ଆଭିଜାତ୍ୟ ପାଇଁ ସଚେତନ । ହେଲେ ବଇଁଶୀକୁ ସେ କିଛି କହି ପାରନ୍ତିନାହିଁ । ସ୍ନେହ ମମତାର ଅଦୃଶ୍ୟ ଆକର୍ଷଣରେ ସେ ଦୁର୍ବଳ ।

ହେଲେ ବଇଁଶୀର ବାପ ନିମେଇଁ ମହାପାତ୍ରେ ଏସବୁ ସହିପାରନ୍ତି ନାହିଁ । ତେଣୁ ବଇଁଶୀ ନଥିଲାବେଳେ ସାଆନ୍ତଙ୍କୁ ମହାପାତ୍ରେ ନେହୁରା ହୋଇ କହି ଦିଅନ୍ତି, 'ବଇଁଶୀ,

ପିଲାଲୋକ ଆଜ୍ଞା । କିଛି ମନେକରିବେ ନାହିଁ ସାଆନ୍ତେ । ସେ କ'ଣ ଜାଣିଛି, ସାଆନ୍ତେ କାହାର ପୁଅ, ପୁଣି କାହାର ନାତି ! ଜମିଦାର ସୂର୍ଯ୍ୟନାରାୟଣଙ୍କୁ ତ ସିଏ ଆଖିରେ ଦେଖିନାହିଁ ।' ମହାପାତ୍ରେ ଜାଣିଛନ୍ତି, ପୁଅ କିଛି ଶୁଣିବ ନାହିଁ । ଓଲଟି କ'ଣ ନାହିଁ କ'ଣ ପ୍ରଶ୍ନ କରିବ । ଏଣୁ ସାଆନ୍ତଙ୍କ ଆଗକୁ ବଇଁଶୀ ଆସି ପହଞ୍ଚିଲେ ସେ କାମ ବାହାନାରେ ସେଇଠୁ ଓହରି ଯାଆନ୍ତି ।

ବଇଁଶୀର ପ୍ରଶ୍ନ ଶୁଣି ଦିବ୍ୟସିଂହ ଚାହିଁଲେ, ତା' ମୁହଁକୁ । କହିଲେ, ଏ ସହରରେ ସୁର ପଣ୍ଡିତଙ୍କୁ ନ ଜାଣିଛି କିଏ ? ଖାସ୍ ମନ୍ତ୍ରୀ ଏମ୍.ପିଙ୍କଠୁ ଆରମ୍ଭ କରି ସହରର ବଡ଼ ବଡ଼ ହାକିମ ହୁକୁମା ତାଙ୍କରି ଭକ୍ତ । ସେଇ ନଈକୂଳର କାଳୀମନ୍ଦିର ପାଖରେ କେତେ କାର ଦିନରାତି ଠିଆହୋଇଥାଏ । ସେଇ ମନ୍ଦିରରେ ହିଁ ତାଙ୍କ ଭେଟପାଇଯିବୁ । ବେଗେ ବେଗେ ଯା । ହଁ, ଗ୍ୟାରେଜରୁ ମୋ' ଗାଡ଼ିଟାକୁ ନେଇଯାଉନୁ ? ମାଉସୀଙ୍କଠୁଁ ଗାଡ଼ିର ଚାବି ମାଗିନେବୁ ।

ବଇଁଶୀ କହିଲା, ନାହିଁ ମଉସା, ସେ ଗାଡ଼ିରେ ପେଟ୍ରୋଲ ଥିବ କି ନଥିବ । ପୁଣି ଠେଲିବାକୁ ପଡ଼ିପାରେ । ଆପଣ ଚିନ୍ତା କରନ୍ତୁ ନାହିଁ ମଉସା, ମୁଁ ମୋ ମାରୁତି ଧରିଆସିଛି । କିଛି ଅସୁବିଧା ହେବନାହିଁ ।

ବଣୁଆ ବାଘ ଦେହରେ ଚାବୁକ୍ ବାଜିଗଲା ପରି ବିଜୁଳିର ଚମକ ଖେଳିଗଲା ଦିବ୍ୟସିଂହଙ୍କ ସାରା ଦେହରେ । ତାଙ୍କ ମୁହଁରୁ ବାହାରି ପଡ଼ିଲା, ମାରୁତି ଗାଡ଼ି ?

ହଁ ମଉସା । କଲିକତାରେ ବୁକ୍ କରିଦେଇଥିଲି । ଏବେ ଗାଡ଼ିଟା ପହଞ୍ଚିଯାଇଛି ।

ଜମିଦାର ସୂର୍ଯ୍ୟନାରାୟଣଙ୍କ ନାତି ଚନ୍ଦ୍ରକାନ୍ତଙ୍କ ପୁଅ ଦିବ୍ୟସିଂହଙ୍କ ମନ ଆକାଶରୁ ବିସ୍ମୟର ମେଘ କଟିବା ପୂର୍ବରୁ ବଇଁଶୀ ଚାଲିଯାଇଥିଲା ।

ଏଣେ ଘୋର ଦୁଶ୍ଚିନ୍ତାର ବୁଢ଼ିଆଣୀ ଜାଲରେ ଛନ୍ଦିହୋଇ ପଡ଼ିଲେ ଦିବ୍ୟସିଂହ । ସହରର ଗଣ୍ୟମାନ୍ୟ ଓକିଲ, ବାରିଷ୍ଟର, ଡାକ୍ତରମାନଙ୍କ ମୁହଁରୁ ସେ ଶୁଣିଥିଲେ ସୁର ପଣ୍ଡିତଙ୍କ ବିଷୟରେ । ସୁର ପଣ୍ଡିତେ ଅଲୌକିକ ଶକ୍ତିର ଅଧିକାରୀ । ନଈକୂଳରେ ଗୋଟିଏ ପୁରୁଣା ଭଙ୍ଗା ଦେଉଳ ଥିଲା, ଏକଥା ସତ । କିନ୍ତୁ କିଏ ଜାଣିଥିଲା ଯେ ସେହି ଦେଉଳରେ ଯେଉଁ କାଳୀମୂର୍ତ୍ତିଟିଏ ଅଛନ୍ତି ସେ ଏଭଳି ପ୍ରତ୍ୟକ୍ଷ ଦେବୀ ? ବିଲାତଫେରନ୍ତା ଡାକ୍ତର ଆଶିଷ ଦିବ୍ୟସିଂହଙ୍କର ପୁରୁଣା ବନ୍ଧୁ । ସେ କହୁଥିଲେ, ପଥରର ପ୍ରତିମାରେ ଦେବୀଙ୍କ ଚେତନା ଶକ୍ତି ଜାଗ୍ରତ କରିବାର ଶକ୍ତି ଯେ ଜଣେ ତନ୍ତ୍ରସାଧକ ଅର୍ଜନ କରିପାରେ ସୁରପଣ୍ଡିତଙ୍କ ଭଳି ସିଦ୍ଧ ସାଧକଙ୍କ ସଂସ୍ପର୍ଶରେ ନ ଆସିଲେ ସେ କଥା ବିଶ୍ୱାସ କରିବା ସଂଭବ ନୁହେଁ । ସେଦିନ ଦେବୀଭକ୍ତ ଦିବ୍ୟସିଂହଙ୍କ ମନ ମଧ୍ୟରେ ତୀବ୍ର କୌତୁହଳର ପ୍ରଦୀପଟିଏ ଜାଳିଦେଇଥିଲେ ବଂଧୁ ଆଶିଷ ।

ଦଶବର୍ଷ ତଳର କଥା ବୋଧହୁଏ । ଦିବ୍ୟସିଂହ ଯାଇଥିଲେ ସେହି ମନ୍ଦିରକୁ । ମୁଖ ମଣ୍ଡଳରେ କଳାଦାଢ଼ି, ମୁଣ୍ଡରେ ଜଟ, ଗଳାରେ ରୁଦ୍ରାକ୍ଷର ମାଳ । ପରିଧାନରେ କେବଳ କୌପୀନଟିଏ । କପାଳରେ ରକ୍ତ ଚନ୍ଦନର ପ୍ରଲେପ । ଦିବ୍ୟସିଂହ ପ୍ରଣାମ ଜଣାଇ ଉଠି ବସିଲେ ସୁରପଣ୍ଡିତଙ୍କ ଆଗରେ । ଦିବ୍ୟସିଂହଙ୍କ ମୁହଁକୁ ଚାହିଁଲେ ତନ୍ତ୍ରସାଧକ ସୁର ପଣ୍ଡିତେ । ଦୃଷ୍ଟି ନୁହେଁ, ସତେ ଯେମିତି ବିଦ୍ୟୁତ୍‌ର ଚମକ । ଅର୍ଦ୍ଧ ନିମିଳିତ ଆଖିରେ ଥରେ ଚାହିଁ ପଣ୍ଡିତେ ଯାହା କହିଲେ ତାହା ଅଲିଭା ଦାଗ ଟାଣିଦେଇଥିଲା ତାଙ୍କ ମନ ଭିତରେ । ବଜ୍ର ଗମ୍ଭୀର ସ୍ୱରରେ ଶୁଭିଲା, ସବୁକିଛି ଥାଇ କିଛି ନ ଥିବାର ଘୋର ଦୁଃଖରେ ତୁମର ହୃଦୟ ଜଳିପୋଡ଼ି ପାଉଁଶ ହୋଇଯାଉଛି ।

ଦିବ୍ୟସିଂହଙ୍କର ବିଶ୍ୱାସ ହୋଇଥିଲା, ସୁର ପଣ୍ଡିତେ ସର୍ବଜ୍ଞ । ହେଲେ ସେଦିନ ଦିବ୍ୟସିଂହ ସାଧକଙ୍କ ପାଦଧୂଳି ନେଇ ନୀରବରେ ଲେଉଟି ଆସିଥିଲେ । କିନ୍ତୁ ରାତିରେ ଆଖି ବୁଜି ଶୋଇପାରିଲେ ନାହିଁ । ତାଙ୍କ ଆଖି ଆଗରେ ଭାସି ଉଠିଲା ସେହି ଦେବୀ ସାଧକର ରୂପ । ସେହି ଉଲଗ୍ନ ଦେହ, ସେଇ ଜଟା-ଜଟ, ସେଇ ରୁଦ୍ରାକ୍ଷମାଳ ସେଇ ରକ୍ତଚନ୍ଦନର ପ୍ରଲେପ । କାନରେ ଭାସି ଆସିଲା ସେହି ସିଦ୍ଧ ସାଧକଙ୍କର ଚୁମ୍ବକୀୟ କଣ୍ଠସ୍ୱର ।

ସୁତରାଂ ଦିବ୍ୟସିଂହଙ୍କ ଅନୁରୋଧରେ ସୁର ପଣ୍ଡିତେ କୃପା କରି ବିଜେ କରିଥିଲେ ଦିବ୍ୟସିଂହଙ୍କ ଉଆସକୁ । ପ୍ରଣାମ କଲେ ସ୍ତ୍ରୀ ରତ୍ନାଦେବୀ । ସେ ପାଦ ସ୍ପର୍ଶ କରି ଓଢ଼ଣାଟି ଟାଣିଦେଇ ବସିଲା ମାତ୍ରେ ସୁର ପଣ୍ଡିତେ କହିଥିଲେ, ଦେବୀଙ୍କର କୃପାହେଲେ ସବୁ ଦୁଃଖ ଦୂରହେଇଯିବ ମା । ଚାରିଗୋଟି ଝିଅ ବୋଲି ଦୁଃଖ କରନାହିଁ । ପୁତ୍ର ସନ୍ତାନର ମୁଖ ତୁମେ ଅବଶ୍ୟ ଦେଖିବ । ତା'ପରେ ସେ ଚାହିଁଥିଲେ ଦିବ୍ୟସିଂହଙ୍କ ମୁହଁକୁ ଏବଂ କହିଲେ, ଉଆସରେ ଦେବୀ ପ୍ରତିମା ପ୍ରତିଷ୍ଠା କରନ୍ତୁ । ଜମିଦାର ସୂର୍ଯ୍ୟନାରାୟଣଙ୍କର ନାତି ଆପଣ । ମା' ଆପଣଙ୍କୁ କ'ଣ ଦେଇ ନାହାନ୍ତି ? ସେ ନିଶ୍ଚୟ ମନସ୍କାମନା ପୂର୍ଣ୍ଣ କରିବେ । ତା'ପରେ ସେ ଶ୍ରୀ ଶ୍ରୀ ଚଣ୍ଡୀରୁ ଶ୍ଳୋକ ଉଚ୍ଚାରଣ କଲେ:

"ଶରଣାଗତ ଦୀନାର୍ତ୍ତ ପରିତ୍ରାଣ ପରାୟଣେ
ସର୍ବସ୍ୟାର୍ତ୍ତି ହରେ ଦେବୀ, ନାରାୟଣୀ ନମସ୍ତୁତେ ।
ସର୍ବମଙ୍ଗଳ ମଙ୍ଗଲ୍ୟେ ଶିବେ ସର୍ବାର୍ଥ ସାଧିକେ
ଶରଣ୍ୟେତ୍ର୍ୟମ୍ବକେ ଗୌରୀ ନାରାୟଣୀ ନମସ୍ତୁତେ ।"

ଦିବ୍ୟସିଂହ ନିଜେ ଶ୍ରୀ ଶ୍ରୀ ଚଣ୍ଡୀ ନିୟମିତ ପାଠ କରନ୍ତି । କିନ୍ତୁ ସୁର ପଣ୍ଡିତଙ୍କ ଆବୃତ୍ତିର ମାଧୁର୍ଯ୍ୟରେ ସେ ବିମୋହିତ ହୋଇଗଲେ । ଉଆସରେ କାଳୀଙ୍କ ମୂର୍ତ୍ତି ପ୍ରତିଷ୍ଠା କଲେ । ସୁରେନ୍ଦ୍ର ପଣ୍ଡିତେ ନିଜେ ଯାଇ କାଶୀଧାମରୁ ଘେନି ଆସିଥିଲେ କଳା ମୁଗୁନି ପଥରର ସୁନ୍ଦର ଶ୍ୟାମା ମୂର୍ତ୍ତି ଏବଂ ପ୍ରତିଦିନ ସେ ନିଜେ ଆସି ଦି' ଓଳି ପୂଜା କରୁଥିଲେ ।

ଅଥଚ ସେଦିନ ରତ୍ନାଦେବୀଙ୍କର ପଞ୍ଚମ ସନ୍ତାନ ଜାତହେଲା । ପୁଅ ନ ହୋଇ ପୁଣି ଝିଅଟିଏ ହେଲା । ଦିବ୍ୟସିଂହଙ୍କର ଦୀର୍ଘ ଦିନର ଆଶା ଚୁରମାର ହୋଇଗଲା । ମନରେ ଜଳି ଉଠିଥିଲା ଦାରୁଣ କ୍ରୋଧର ନିଆଁ । ମନଟା ବିଦ୍ରୋହୀ ହୋଇ ଉଠିଥିଲା ସେଇ ତନ୍ତ୍ରସାଧକ ସୁରେନ୍ଦ୍ର ପଣ୍ଡିତଙ୍କ ବିରୁଦ୍ଧରେ । ସେ ଭାବିଥିଲେ, ଏତେ ପରିମାଣରେ ବ୍ୟୟକରି ଉଆସରେ କାଳୀ ମୂର୍ତ୍ତି ପ୍ରତିଷ୍ଠା କରିବା, ବୃଥା । ନିଷ୍ଫଳ ତାଙ୍କର ସକଳ ପ୍ରଚେଷ୍ଟା । ନିଜକୁ ସେ ଅଭିଶପ୍ତ ମନେକଲେ । ମନେ କଲେ ସବୁ ଅନିଷ୍ଟର ମୂଳ କାରଣ ରତ୍ନାଦେବୀ । ଦେବୀଶକ୍ତି ବିରୁଦ୍ଧରେ ଜମି ଉଠିଥିବା ସବୁ କ୍ରୋଧ ସେ ଅଜାଡ଼ିଦେଲେ ରତ୍ନାଦେବୀଙ୍କ ଉପରେ । ଦିବ୍ୟସିଂହଙ୍କ ଜୀବନରେ ମନେ ହେଲା ସେ ଏକ ଅଶୁଭ ଗ୍ରହ । ଗୋଟିକ ପରେ ଗୋଟିଏ ଝିଅ ଜନ୍ମ କରିଚାଲିଛି । ଇଚ୍ଛା ହୋଇଥିଲା ନିଜ ହାତରେ ରତ୍ନାଦେବୀର ବେକ ଚିପିଦେଇ ସବୁଦିନ ପାଇଁ ତାଙ୍କୁ ନିଃଶେଷ କରିଦେବେ । କିନ୍ତୁ ଏକ ଅଜଣା ଆତଙ୍କରେ ସେ ପଛେଇ ଆସିଥିଲେ । ସେ ଧାଇଁ ଯାଇଥିଲେ ତାଙ୍କର ଜେଜେ ସୂର୍ଯ୍ୟନାରାୟଣଙ୍କ ବିରାଟ ତୈଳଚିତ୍ର ନିକଟକୁ । ତାଙ୍କରି ଉଦ୍ଦେଶ୍ୟରେ ସେ ବିକଳ ସ୍ୱରରେ କହିଥିଲେ, 'ଦେଖ ଜେଜେ ଦେଖ, ତୁମମାନଙ୍କର ମହାପାପର ଫଳ କିପରି ଭୋଗୁଛି ତୁମର ଅଭିଶପ୍ତ ନାତି । ସେ ପୁତ୍ରହୀନ । କେତେ ଜାକଜମକରେ ରତ୍ନାକୁ ତୁମେ ବୋହୂକରି ଆଣିଥିଲ । ସେ ତୁମକୁ ପୁଅଟିଏ ଉପହାର ଦେଇପାରିଲା ନାହିଁ ସାମନ୍ତରାୟ ବଂଶରେ ଜଳ ଦେବାକୁ । ମୋର ଇଚ୍ଛା ହେଉଛି, ରତ୍ନାର ବେକ ଚିପି ତାର ଅସ୍ତିତ୍ୱ ଶେଷ କରି ଦେବାକୁ । କେତେ କେତେ ଝିଅ ବୋହୂଙ୍କ ଅଶରୀରି ଆତ୍ମାର ଦୀର୍ଘ ଶ୍ୱାସରେ ଉଆସର କାନ୍ଥ ଭୁଷୁଡ଼ି ପଡୁଛି । ସେମାନଙ୍କର ଅଭିଶାପର ନିଆଁରେ ଆମେ ସବୁ ଜଳି ପୋଡ଼ି ପାଉଁଶ ହେବା ଆଗରୁ ନିଜ ହାତରେ ମୁଁ ପୂର୍ଣ୍ଣଚ୍ଛେଦ ଟାଣିଦେଲେ କ୍ଷତି କ'ଣ ହେବ ?' ଜେଜେଙ୍କ ତୈଳ ଚିତ୍ର ନିକଟରୁ ହିଂସ୍ର ବାଘ ଭଳି ସେ ନିଃଶବ୍ଦରେ ଯାଇଥିଲେ ସୁପ୍ତ ରତ୍ନା ନିକଟକୁ । ନାରୀହତ୍ୟା କିମ୍ବା ସ୍ତ୍ରୀ ହତ୍ୟାର ମହାପାପର ଆଶଙ୍କାରେ ନୁହେଁ, ସେ ପାଞ୍ଚଟି ଝିଅ ଆଉ ବିଧବା ଭଉଣୀର ଏଡ଼େ ବଡ଼ ସଂସାରର ବୋଝକୁ ଏକୁଟିଆ ମୁଣ୍ଡେଇବାର ଭୟରେ ଫେରି ଆସିଥିଲେ ।

ସାଧକ ସୁରେନ୍ଦ୍ର ପଣ୍ଡିତଙ୍କ ବିରୁଦ୍ଧରେ ଯେ ନିଦାରୁଣ କ୍ରୋଧ, ନିଦାରୁଣ କ୍ଷୋଭର ମେଘ ଜମି ଉଠିଥିଲା ସେକଥା ବୁଝିବାର ଅଲୌକିକ କ୍ଷମତା ଥିଲା ତାଙ୍କର । ଦିବ୍ୟସିଂହଙ୍କ କ୍ରୋଧ ପାଇଁ ତିଳେ ମାତ୍ର ବିଚଳିତ ନ ହୋଇ ସେ ସ୍ୱତନ୍ତ୍ରଭାବେ ଆୟୋଜନ କଲେ ଶ୍ରୀ ଶ୍ରୀ ଚଣ୍ଡୀପୂଜାର । ସେଦିନର ଅର୍ଦ୍ଧରାତ୍ର ସମୟ । ହୋମକୁଣ୍ଡରେ ସେ ନିଜେ ଆଉ ରତ୍ନାଦେବୀ ଉଦ୍‌ଯାପନର ଅର୍ଘ୍ୟ ଅର୍ପଣ କଲେ ଏବଂ ଦେବୀଙ୍କ କଣ୍ଠରୁ ଶୁଭବାଣୀ ଉଚ୍ଚାରିତ ହେବାର ଶୁଣି, ରୋମାଞ୍ଚ ପୁଲକରେ ଆତ୍ମହରା ହେଲେ ଉଭୟେ । 'ତୁମର ମନୋବାଞ୍ଛା ପୂର୍ଣ୍ଣହେବ ।'

ମନରେ ପୁଣି ବିଶ୍ୱାସର ସଞ୍ଚାର ହେଲା, ଏଣୁ ଉଆସରେ ବିଧିଅନୁସାରେ ଶ୍ୟାମା ପୂଜା ଅନୁଷ୍ଠାନ କରିବାରେ କେବେ ତ୍ରୁଟି କରିନାହାନ୍ତି ଦିବ୍ୟସିଂହ । ବାହାରକୁ ଚାହିଁ ଦେଖିଲେ ଦିବ୍ୟସିଂହ । କୃଷ୍ଣଚତୁର୍ଦ୍ଦଶୀର ସନ୍ଧ୍ୟା ଅବତରଣ କରିଛି ସମସ୍ତ ସହରରେ । ଦୀପମାଳା ଆଉ ବିଜୁଳି ଆଲୁଅରେ ଝଲସି ଉଠିଲାଣି ପ୍ରତ୍ୟେକ ଘର । ବାଣ ଫୁଟୁଛି । ଆତସବାଜିରେ ଆକାଶ ଉଜ୍ଜ୍ୱଳ ଦିଶୁଛି । ଅଥଚ ଏଯାଏ ପୁରୋହିତଙ୍କର ଦେଖାନାହିଁ । ଅଳ୍ପ ଦୂରରେ ସାର୍ବଜନୀନ କାଳୀପୂଜାର ମଣ୍ଡପରୁ ଭାସି ଆସିଲାଣି ଅର୍ଗଳା ସ୍ତୁତିଃ

''ଓଁ ଜୟ ତ୍ୱଂ ଦେବି ଚାମୁଣ୍ଡେ ଜୟ ଭୂତାପହାରିଣି ।
ଜୟ ସର୍ବଗତେ ଦେବୀ କାଳରାତ୍ରି ନମୋହସ୍ତୁତେ ।

ଦେହି ସୌଭାଗ୍ୟମାରୋଗ୍ୟଂ ଦେହି ଦେବି ପରଂ ସୁଖମ୍
ରୂପଂ ଦେହି ଜୟଂ ଦେହି ଯଶୋଦେହି ଦ୍ୱିଷୋ ଜହି ।
ବିଦେହି ଦେବି କଲ୍ୟାଣଂ ବିଦେହି ବିପୁଳାଂ ଶ୍ରିୟମ୍
ରୂପଂ ଦେହି ଜୟଂଦେହି ଯଷୋ ଦେହି ଦ୍ୱିଷୋଜହି ।।'

ଦିବ୍ୟସିଂହ ଆଉ ସ୍ଥିରହୋଇ ରହିପାରିଲେ ନାହିଁ । ଶୁଭଲଗ୍ନ ପାରେଇଯିବା ଆଗରୁ ପୂଜାକାର୍ଯ୍ୟ ଆରମ୍ଭ କରିବାକୁ ନୀଳମଣି ପଣ୍ଡିତଙ୍କୁ କହିଲେ । ସଂକଳ୍ପରେ ବସିବା ପାଇଁ ପାଟଲୁଗା ପିନ୍ଧି ଦିବ୍ୟସିଂହ ଚାଲିଲେ ଚଣ୍ଡୀମଣ୍ଡପ ଆଡ଼କୁ । ବାଟରେ ପୁଣି ଅଟକିଗଲେ । ଶିବାନୀ କାନ୍ଦୁଛି । ବଡ଼ଝିଅ ଶିବାନୀ । ଦିବ୍ୟସିଂହ ନିଜ ଆଖିକି ବିଶ୍ୱାସ କରିପାରିଲେ ନାହିଁ । ସାମନ୍ତରାୟ ବଂଶର ଝିଅ, ଶାଶୁଘରୁ ଏଭଳି ଦୀନହୀନ ବେଶରେ ଆସି ତା'ବାପ ଆଗରେ ଠିଆ ହୋଇଛି । ଚାରି ଭଉଣୀଯାକ ତାକୁ ଘେରିଯାଇଛନ୍ତି ।

ଦିବ୍ୟସିଂହ ପଚାରିଲେ, କ'ଣ ହୋଇଛି ମା ? କାନ୍ଦୁଛୁ କାହିଁକି ? ଶାଶୁଘରୁ ଆସିଲୁ କେତେବେଳେ ? ଜୋଇଁ କାହାନ୍ତି ?

ଏକସଂଗରେ ବାଣ ଫୁଟିଲା ଭଳି ଦିବ୍ୟସିଂହ ଗୁଡ଼ାଏ ପ୍ରଶ୍ନ ପଚାରିଗଲେ । ପଥରର ମୂର୍ତ୍ତିଭଳି ଠିଆ ହୋଇଥିଲା ଶିବାନୀ । ତାର ଦୁଇଆଖିରୁ କେବଳ ବହିଯାଉଥିଲା ଧାର ଧାର ଲୁହ ।

ଦିବ୍ୟସିଂହ ପୁଣି ପଚାରିଲେ, ତୋର ଏମିତି ବେଶ କାହିଁକି ? ଦେହର ଅଳଙ୍କାର ସବୁ କାହିଁ ? ଏଥର ରତ୍ନାଦେବୀ ଉତ୍ତର ଦେଲେ, ତୁମେ ଆଉ ବୁଝିଲ କ'ଣ ? ଦେହରୁ ସବୁ ଅଳଙ୍କାର ବାହାର କରିନେଇ ଶାଶୁ ବିଦାକରି ଦେଇଛି ଏକ ବସ୍ତ୍ରରେ ତୁମର ଝିଅକୁ ।

ଏକଥା ଶୁଣି ଭୟଙ୍କର ରାଗରେ ଜଳିଉଠିଲା ଦିବ୍ୟସିଂହଙ୍କର ଦେହ । ଅନୁଶୋଚନାରେ ମର୍ମାହତ ହେଲେ । ସେ ଭୁଲ କରିଛନ୍ତି । ଏଭଳି ଅକର୍ମା ଲୋକ ହାତରେ

ସୁନାପ୍ରତିମାକୁ ଟେକିଦେଇ ସେ ଭୁଲ କରିଛନ୍ତି । ଝିଅ ଆସି କେତେଥର କହିଛି ଜ୍ୱୋଇଁ ବିଜିନେସ୍ କରିବାକୁ ଚାହାନ୍ତି । ଜମିଦାର ସୂର୍ଯ୍ୟନାରାୟଣଙ୍କର ନାତିଙ୍କର ଅଭାବ କ'ଣ । ସେ କ'ଣ ଜ୍ୱୋଇଁଙ୍କୁ ସାମାନ୍ୟ ଲକ୍ଷେ ଟଙ୍କା ଦେଇ ପାରିବେନି ? ଜ୍ୱୋଇଁ କୁଆଡ଼ୁ ବୁଝିବେ ଶ୍ୱଶୁରଙ୍କ ଦୁଃଖ । ନିରାଭରଣା ଝିଅର ମୁହଁକୁ ଚାହିଁବା କଷ୍ଟକର !

ତେଣେ ପୂଜା ବେଳ ଗଡ଼ିଯାଉଛି । ସଂକଳ୍ପରେ ବସିବାକୁ ହେବ । ଦିବ୍ୟସିଂହ ଚାଲିଗଲେ ଚଣ୍ଡୀମଣ୍ଡପକୁ । ସଂକଳ୍ପ ପାଇଁ ସେ ପୂଜାରେ ବସିଲେ । ମାତ୍ର ପୂଜାରେ ସେ ମନଲଗାଇ ପାରିଲେ ନାହିଁ ।

ଶତପ୍ରଦୀପରେ ନୀଳମଣି ପଣ୍ଡିତେ ଆରତି କରୁଥିଲେ । ପ୍ରଦୀପ ଶିଖାର ଆଲୁଅରେ ସେ ଦେଖିଲେ, ଦେବୀଙ୍କର ମଥାର ମୁକୁଟ, ଅଙ୍ଗର ସ୍ୱର୍ଣ୍ଣାଳଙ୍କାର ଯାହାସବୁ ସେ ପିନ୍ଧାଇଥିଲେ, ଏଗୁଡ଼ିକ କ'ଣ ସେହି ସୁନାର ଅଳଙ୍କାର ? ସେଗୁଡ଼ିକ ସୁନାର ମନେ ହେଉନାହିଁ । ସୁନା ଅଳଙ୍କାର ସବୁ ଗଲା କୁଆଡ଼େ ?

କିନ୍ତୁ ନୀଳମଣି ପଣ୍ଡିତେ ଭାବିଲେ ସୁଦର୍ଶନ ପଣ୍ଡିତେ ନ ଗଲାଯାଏ ତାଙ୍କୁ ନୀରବ ରହିବାକୁ ପଡ଼ିବ ।

ମନ୍ତ୍ରହୀନଂ କ୍ରିୟାହୀନଂ ଭକ୍ତିହୀନଂ ସୁରେଶ୍ୱରୀ
ଯଦ୍‌ପୂଜିତଂ ମୟାଦେବିଂ ପରିପୂର୍ଣ୍ଣଂ ତଦସ୍ତୁମେ ।

ପ୍ରାର୍ଥନା ମନ୍ତ୍ର ଉଚ୍ଚାରଣ କରି ପୂଜାକାର୍ଯ୍ୟ ଉଦ୍‌ଯାପନ କଲେ ନୀଳମଣି ପଣ୍ଡିତେ । ସେ ସୁଦର୍ଶନ ପଣ୍ଡିତଙ୍କ ସହିତ ବିଦାୟ ନେବା ପରେ ଦିବ୍ୟସିଂହ ଫେରି ଆସିଲେ ମୂର୍ତ୍ତିନିକଟକୁ । ମାଙ୍କ ଦେହର ଅଳଙ୍କାର ସବୁ ନିରୀକ୍ଷଣ କଲେ । ତାଙ୍କର ମନେହେଲା, ତାଙ୍କର ହୃଦ୍‌ଯନ୍ତ୍ରର କ୍ରିୟା ଯେକୌଣସି ମୁହୂର୍ତ୍ତରେ ବନ୍ଦହୋଇଯିବ ।

ବାହାରେ ଗୋଳମାଳ ଶୁଣି ଚମକି ଉଠିଲେ ଦିବ୍ୟସିଂହ । ଝିଅମାନେ ଧାଇଁ ଆସୁଥିଲେ । 'ଡାଡ଼ି' 'ଡାଡ଼ି' କହି ମନ୍ଦିର ଭିତରକୁ ପଶି ଆସିବାର ଦେଖି ଲଜ୍ଜାରେ ମୁଣ୍ଡ ନଇଁ ପଡ଼ିଲା । ନିଜକୁ ଅପରାଧୀ ମନେକଲେ । ସେ ଧରା ପଡ଼ିଯାଇଛନ୍ତି ଝିଅମାନଙ୍କ ଆଗରେ ।

ଜଣେ କିଏ କହିଲା, ଡାଡ଼ି ଡାଡି କଲିକତାରୁ ବଇଁଶୀ ଭାଇ ଫୋନ କରୁଛନ୍ତି । ଦିବ୍ୟସିଂହ କିଛି ବୁଝିପାରିଲେ ନାହିଁ । ସେ ଧାଇଁଲେ ଫୋନ ପାଖକୁ । ହେଲୋ, କିଏ ? ବଇଁଶୀ ? କ'ଣ କହିଲୁ: କାଳୀଘାଟ ଅଞ୍ଚଳରୁ ପୋଲିସ ସୁର ପଣ୍ଡିତଙ୍କୁ ଆରେଷ୍ଟ କରିଛନ୍ତି ? ଅନେକ ଲୋକଙ୍କ ଟଙ୍କା ଆଉ ଅଳଙ୍କାର ତାଙ୍କଠାରୁ ପୋଲିସ ଜବତ୍ କରିଛି ।

ପାଦତଳେ ଭୂମିକମ୍ପ ହେଉଥିବାର ଅନୁଭବ କଲେ ଦିବ୍ୟସିଂହ । ତାଙ୍କର

ମନେହେଲା ଭୟଙ୍କର ଚକ୍ରବ୍ୟୂହ ମଧ୍ୟରେ ସେ ଅଭିମନ୍ୟୁଙ୍କ ଭଳି ଅସହାୟ । ତାଙ୍କର ଚତୁର୍ଦ୍ଦିଗରେ ସପ୍ତରଥୀଙ୍କ ଭଳି ଘେରିରହିଛନ୍ତି ତାଙ୍କର ଝିଅ, ତାଙ୍କର ବୋଇଁ, ତାଙ୍କର ଗୁମାସ୍ତା ନିମେଇ ମହାପାତ୍ରେ, ବଇଁଶୀ । କିନ୍ତୁ ସେ ତ କଳ୍ପନା କରିନଥିଲେ ଯେ ସୁର ପଣ୍ଡିତ ତାଙ୍କର ଗୋପନତମ ଦୁର୍ବଳତାର ସୁଯୋଗ ନେବ ଏଭଳି ମାରାତ୍ମକ ଭାବରେ ?

ସେ ଚାହିଁଲେ ନିରାଭରଣା ଝିଅ ଶିବାନୀର କରୁଣ ମୁହଁକୁ । କଳ୍ପନାରେ ତାଙ୍କ ଆଖି ଆଗରେ ଭାସି ଉଠିଲା ନିରାଭରଣା କାଳୀପ୍ରତିମା ।

ବାଣ ଆଉ ଆତସବାଜିର ଭୟଙ୍କର ଶବ୍ଦରେ ଚୂର୍ଣ୍ଣ-ବିଚୂର୍ଣ୍ଣ ହେଉ ଯାଉଥିଲା କୃଷ୍ଣ ଚତୁର୍ଦ୍ଦଶୀର ମଧ୍ୟରାତ୍ରିର ଆକାଶ । ଦିବ୍ୟସିଂହଙ୍କର ମନେହେଲା, ଆକାଶରେ ନୁହେଁ, ଲକ୍ଷ ଲକ୍ଷ ବାଣ ଫୁଟୁଥିଲା ତାଙ୍କରି ଛାତିଭିତରେ ।

କୃଷ୍ଣ ଚତୁର୍ଦ୍ଦଶୀର ରାତି ଦ୍ରୁତଗତିରେ ଧାଇଁ ଯାଉଥିଲା ଘୋର ଅମାବାସ୍ୟାର ଅଂଧକାର ମଧ୍ୟକୁ ।



# ମୃଗତୃଷ୍ଣା

ଚାହିଁ ଦେଖିଲା ନିରୁପମା, ଘର ଶୂନ୍ୟକରି ଚାଲି ଗଲେଣି ଅଧ୍ୟାପକ ନରେନ୍ଦ୍ର । ଅଧ୍ୟାପକ ପ୍ରଶାନ୍ତ ଆଉ ମିନତି ଦେବୀ ମଧ ଗଲେଣି । ଘରର ଦୁଆର ମେଲା ପଡ଼ିଛି । ବାହାରେ ତୁମୁଳ ଝଡ଼ ବର୍ଷାର ସଞ୍ଚରଣ । କିନ୍ତୁ ନିରୁପମା ଅନୁଭବ କରିବାକୁ ଲାଗିଲା ପ୍ରବଳତର ଝଡ଼ର ସଞ୍ଚରଣ ତା' ମନ ଆକାଶରେ । ତା'ର ଭାରାକ୍ରାନ୍ତ ମୌନ ଦୃଷ୍ଟି ପ୍ରସାରିତ ହେଲା ରାତ୍ରିର ଗଭୀର ଅନ୍ଧକାର ମଧ୍ୟକୁ ।

ଆଜି ବର୍ଷାମୁଖର ସନ୍ଧ୍ୟାରେ ନରେନ୍ଦ୍ରଙ୍କୁ ଅପେକ୍ଷା କରି କରି ସୋଫା ଉପରେ ଶୋଇ ପଡ଼ିଥିଲା ନିରୁପମା । ତା'ର ନିଦ ଭାଙ୍ଗିଗଲା ଏକ ଭୟଙ୍କର ଦୁଃସ୍ୱପ୍ନରେ ଏବଂ ଠିକ୍ ସେତିକିବେଳେ ଦୁଆରେ ନକ୍ କଲେ ପ୍ରଫେସର ନରେନ୍ଦ୍ର । କବାଟ ଖୋଲି ବିସ୍ମୟାଭିଭୂତ ହୋଇ ଯାଇଥିଲା ନିରୂପମା ।

ଓଃ, ଆପଣ ! ପୁଲକ ଓ ବିସ୍ମୟର ସ୍ୱର ଝରିପଡ଼ିଥିଲା ତା' କଣ୍ଠରୁ ।

ତୁମେ ମୋତେ ଆଜି ଆଶା କରି ନଥିଲ ନା ନିରୁ ? ପ୍ରଶ୍ନ କରିଥିଲେ ନରେନ୍ଦ୍ର ।

ବାହାରେ ଯେମିତି ବର୍ଷା ! ସତକୁ ସତ ନିରୁ ବିଶ୍ୱାସ କରି ପାରୁନଥିଲା, ଏଇ ଝଡ଼-ବର୍ଷା ଭିତରେ ନରେନ୍ଦ୍ର ଆସିବେ ।

ହଠାତ୍ ସେତିକିବେଳେ ଚମକି ଉଠିଥିଲେ ନରେନ୍ଦ୍ର, ନିରୁପମାର ମୁହଁକୁ ଚାହିଁ ।

ଯେ କ'ଣ, ତମ କପାଳରେ ଝାଳ ? ଦେହ ଥରୁଚି ? ପ୍ରଶ୍ନ କରିଥିଲେ ସେ ।

ହଁ, ମୁଁ ଡରିଗଲି ।

ଡରିଗଲ ? କେମିତି ?

ଆପଣଙ୍କୁ ଅପେକ୍ଷା କରି କରି ଶୋଇ ଯାଇଥିଲି । ଗୋଟିଏ ଭୟଙ୍କର ସ୍ୱପ୍ନ ଦେଖିଲି ।

ଭାବାବେଗରେ ନିରୁପମା କହି ପକାଇଥିଲା ସତ, ହେଲେ ନରେନ୍ଦ୍ରଙ୍କ ଆଗରେ ପ୍ରକାଶ କରିବାକୁ ଚାହିଁ ନଥିଲା ସେଇ ଦୁଃସ୍ୱପ୍ନର କଥାବସ୍ତୁ । କିନ୍ତୁ ଜୋର କରିଥିଲେ ନରେନ୍ଦ୍ର । ସେ କଥା ଜାଣିବାକୁ ଚାହିଁଥିଲେ ।

ଭୟଙ୍କର ସ୍ୱପ୍ନ ? କ'ଣ ସେ ସ୍ୱପ୍ନ ? କ'ଣ ସେ ସ୍ୱପ୍ନ କଥା ମୋତେ କହିବାରେ ତମର ଆପତ୍ତି ଅଛି ?

ନା, ମୋର ଆପତ୍ତି ନାହିଁ । ହେଲେ ସେ କଥା ଶୁଣି ଆପଣଙ୍କର ଲାଭ ନାହିଁ ।

କିନ୍ତୁ ସେ ଜିଦ୍ ଧରିଥିଲେ । ଅଗତ୍ୟା ନିରୁପମାକୁ କହିବାକୁ ପଡ଼ିଥିଲା ସ୍ୱପ୍ନର କଥାବସ୍ତୁ ।

କଳା କିଚି କିଚି ରାତି । ମୁଁ ଠିଆ ହୋଇଚି ଗୋଟିଏ ନିର୍ଜନ ପଡ଼ିଆରେ । ..... ଆରମ୍ଭ କରିଥିଲା ନିରୁପମା ।

ନିର୍ଜନ ପଡ଼ିଆରେ ? ତୁମ ସାଙ୍ଗରେ ଆଉ କିଏ ଥିଲେ ? ହଠାତ୍ ଅଡୁଆ ପ୍ରଶ୍ନଟିଏ କରିଥିଲେ ନରେନ୍ଦ୍ର ।

ସାଙ୍ଗରେ ? ଜିଭ ଆଗକୁ ବାହାରି ଆସିଥିଲା । ମୃଗାଙ୍କଙ୍କର ନା । କିନ୍ତୁ ବହୁ କଷ୍ଟରେ ମୃଗାଙ୍କଙ୍କର ନାଁଟା ଗୋପନ କରିବାକୁ ପ୍ରୟାସ କରିଥିଲା ନିରୁପମା ।

ନା-ନା, ମୋ ସାଥିରେ କେହି ନଥିଲେ । ମୁଁ ଏକା ନିଃସଙ୍ଗ ଭାବେ ଠିଆ ହୋଇଥିଲି ସେଇ ଜନହୀନ ପ୍ରାନ୍ତର ମଧ୍ୟରେ । ଚାରିଆଡ଼େ ନିରନ୍ଧ୍ର ଅନ୍ଧକାର । ସେଇ ପଡ଼ିଆ ଭିତରେ ସର୍ପିଳ ଗତିରେ ଚାଲିଯାଇଥିଲା ରେଲଲାଇନ୍ । ଆଉ ସେଇ ରେଲଲାଇନ୍ ଉପରେ କିଏ ପକେଇ ଦେଇଥିଲା ଏକ ନବଜାତ ଶିଶୁ ।

ନବଜାତ ଶିଶୁ ? ପ୍ରଶ୍ନ କରିଥିଲେ ନରେନ୍ଦ୍ର ।

ହଁ ନବଜାତ ଶିଶୁ । ହଠାତ୍ ଦୈତ୍ୟ ଭଳି ମାଡ଼ିଆସିଲା ଗୋଟିଏ ଟ୍ରେନ । ଆଉ ଟ୍ରେନ୍‌ର ସୁତୀବ୍ର ଆଲୁଅରେ ଦିଶୁଥିଲା ଶିଶୁଟି । ତାର ଆର୍ତ୍ତ ଚିତ୍କାର ଶୁଣି ମୁଁ ଧାଇଁଗଲି ସେଇ ନିଃସହାୟ ଶିଶୁଟିକୁ ବଞ୍ଚାଇବା ପାଇଁ ।

ତା'ପରେ ? ଉତ୍‌କଣ୍ଠାରେ ପଚାରିଲେ ନରେନ୍ଦ୍ର ।

ତା'ପରେ ଆଉ କ'ଣ ? ମୁଁ ସେଠିକି ପହଞ୍ଚିବା ପୂର୍ବରୁ ଟ୍ରେନଟି ମାଡ଼ିଯାଇଥିଲା । ଓଃ ମୁଁ ରକ୍ଷା କରି ପାରିଲିନି । ଖୁବ୍ ଜୋର୍‌ରେ ଚିତ୍କାର କରି ଉଠିଲି । ମୋର ନିଦ ଭାଙ୍ଗିଗଲା... ।

ତୁମେ ଭାରି ଦୁର୍ବଳ ନିରୁ । ସାମାନ୍ୟ ଗୋଟିଏ ସ୍ୱପ୍ନରେ ତମେ ଏମିତି ବିଚଳିତ ହୋଇ ପଡୁଛ ? ସ୍ୱପ୍ନ ସଙ୍ଗେ ବାସ୍ତବ ଜୀବନର ସମ୍ବନ୍ଧ କିଛି ନାହିଁ ।

ନିରୁକୁ ଆଶ୍ୱାସନା ଦେଇଥିଲେ ନରେନ୍ଦ୍ର ଏବଂ ତା'ପରେ ସେଇ ଚିର ଅଭ୍ୟସ୍ତ ସ୍ୱରରେ ସେ କହିଥିଲେ, ଦେଖ ନିରୁ, ଏଇ ଝଡ଼, ବର୍ଷାଥଣ୍ଡାରେ ମୁଁ ବରଫ ପାଲଟି ଗଲିଣି । ତମେ ଟିକିଏ... ।

ତାଙ୍କର ଯାହା ଦରକାର ଠିକ୍ ବୁଝିଥିଲା ନିରୁ । ତାଡ଼ିକି ଆଲମାରୀ ଖୋଲି ସେଥିରୁ ହୁଇସ୍କିର ବୋତଲ ବାହାର କରି ଥୋଇ ଦେଇଥିଲା ଟେବୁଲ ଉପରେ ।

ନିରୁପମା ଲକ୍ଷ୍ୟ କରି ଦେଖିଥିଲା, ନରେନ୍ଦ୍ର କେଉଁ ଏକ ଉଲ୍ଲାସରେ ଆତ୍ମହରା । ହେଲେ ତାର ସ୍ୱପ୍ନ ଉପରେ ସେ ଆଦୌ ଗୁରୁତ୍ୱ ଦେଇ ନଥିଲେ । ସେଥିପାଇଁ ମନେ ମନେ ଆଶ୍ୱାସନା ପାଇଲା ନିରୁପମା । କିନ୍ତୁ ସେ ନିଜେ ଭୁଲି ପାରୁନଥିଲା ସେଇ ସ୍ୱପ୍ନଟିକୁ ।

ସ୍ୱପ୍ନର ନିଷ୍ଠୁର କଥାବସ୍ତୁକୁ ନରେନ୍ଦ୍ରଙ୍କ ଆଗରେ ଖୋଲି କହିବା ସମ୍ଭବ ନଥିଲା ନିରୁପମା ପକ୍ଷରେ । କାରଣ ସ୍ୱପ୍ନରେ ତା' ସାଙ୍ଗରେ ଯାହାକୁ ଦେଖିଥିଲା ସେ ହେଲେ ମୃଗାଙ୍କ । ସେଇ ନିର୍ଜନ ପ୍ରାନ୍ତରରେ ଏକାକୀ ନଥିଲା ନିରୁପମା । ଆଉ, ସେଇ ରେଲ ପଥ ଉପରେ ଅସହାୟ ଶିଶୁଟିକୁ ଦେଖି ତା' ମନ ଭିତରେ ସଂଚରିତ ହୋଇଥିଲା ମାତୃସ୍ନେହର ଝରଣା । ସୁତରାଂ ଅନୁନୟ ବିନୟ କରି ସେ ଅନୁରୋଧ କରିଥିଲା ମୃଗାଙ୍କୁ ଶିଶୁଟିର ଜୀବନ ରକ୍ଷା କରିବା ଉଦ୍ଦେଶ୍ୟରେ । ହେଲେ ମୃଗାଙ୍କ ବେପରୁଆ ଭାବେ ସିଗାରେଟରେ ଧୂଆଁ ଛାଡୁଥିଲେ, ଶୂନ୍ୟ ଭିତରକୁ, ତାର କରୁଣ ଅନୁରୋଧକୁ ଆଦୌ ଭ୍ରୂକ୍ଷେପ ନ କରି । ଆଉ ଠିକ୍ ତା'ପରେ ଟ୍ରେନ୍‌ଟି ଏକ ନିଷ୍ଠୁର ଦୈତ୍ୟ ଭଳି... ।

ସେଇ ଭୟାବହ ଘଟଣା ମନେପଡ଼ି ଯିବାରୁ ନିରୁପମାର କଣ୍ଠରୁ ବାହାରି ପଡ଼ିଥିଲା ଆର୍ତ୍ତ ସ୍ୱରଟିଏ ।

ଗ୍ଲାସର ହୁଇସ୍କି ନିଃଶେଷ କରି ନରେନ୍ଦ୍ର ଚାହିଁଲେ ନିରୁପମାର ମୁହଁକୁ । ବିନ୍ଦୁ ବିନ୍ଦୁ ସନ୍ଦେହ ଯେମିତି ଘନୀଭୂତ ହେବାକୁ ଲାଗିଲା ନରେନ୍ଦ୍ରର ଆଖିକୋଣରେ ।

ତମେ ଆଜି ଖୁବ୍ ଅନ୍ୟମନସ୍କ ! ମନ୍ତବ୍ୟ କରିଥିଲେ ନରେନ୍ଦ୍ର ।

ନା । ବାହାରେ କେମିତି ଝଡ଼-ବର୍ଷା ! ମୁଁ ଭାବିଥିଲି, ଆପଣ ହୁଏତ ଆଜି... ।

ନିରୁପମାର କଥାକୁ ସମ୍ପୂର୍ଣ୍ଣ କରିବାକୁ ନ ଦେଇ ପ୍ରବଳ ଉଲ୍ଲାସରେ ହୋ-ହୋ କରି ହସି ପକେଇଲେ ନରେନ୍ଦ୍ର ।

ଏମିତି ଝଡ଼ି-ବର୍ଷାରେ ଘରୁ କେହି ବାହାରିବାକୁ ଚାହିଁବେନି । ଏକଥା ସତ ହେଲେ ନିରୁ, ଆଜି ମୋ'ପାଇଁ ସବୁ କିଛି ସମ୍ଭବ ।

କାହିଁକି ? ବେଶ କୌତୂହଳୀ ହୋଇଥିଲା ନିରୁର ମନ ।

ଆଉ ସେତିକିବେଳେ ନରେନ୍ଦ୍ର ପକେଟରୁ କାଗଜଟି ବାହାର କରି ବଢ଼େଇ ଦେଇଥିଲେ ନିରୁପମାର ହାତକୁ ।

କ'ଣ, ମିନି ଅପାଙ୍କ ସ୍ୱୀକୃତି ପତ୍ର ? ବିସ୍ମୟାନନ୍ଦରେ ଅସ୍ଥିର ହୋଇ ଉଠିଥିଲା ନିରୁପମା । ତାର ସମସ୍ତ ଶରୀର ଶିହରିତ ହୋଇ ଉଠିଲା ଏକ ପ୍ରଚଣ୍ଡ ଆବେଗରେ ।

ଏକଥା କିପରି ସମ୍ଭବ ହେଲା ? ମିନି ଅପା ସ୍ୱେଚ୍ଛାରେ ଦସ୍ତଖତ କଲେ ଏଇ ସ୍ୱୀକୃତି ପତ୍ରରେ ?

ନିରୁପମାର ପ୍ରଶ୍ନର ଉତ୍ତର ନ ଦେଇ ନୀରବରେ ହସିବାକୁ ଲାଗିଲେ ନରେନ୍ଦ୍ର ।

ହଁ ତମର ଡାଡ଼ି ଫେରିବେ କେବେ ?

ଆଜି ରାତିରେ କିମ୍ବା କାଲି ।

ତା'ପରେ ନରେନ୍ଦ୍ର ଜଣେଇଥିଲେ, ଡାଡ଼ି ଆସିଲା ମାତ୍ରେ ସେମାନେ ରେଜିଷ୍ଟ୍ରେସନ ବିବାହ କରିବେ ଅଫିସରେ । ଏବଂ ତା'ପରେ କିଛିଦିନ ପାଇଁ ସେମାନେ ଚାଲିଯିବେ ସିମଲା କିମ୍ବା ସୁଇଜରଲାଣ୍ଡ ।

ନିରୁପମା ମନକୁ ମନ କହିଥିଲା, ସତରେ ମୋତେ ଭାରି ଆଶ୍ଚର୍ଯ୍ୟ ଲାଗୁଛି ।

କ'ଣ ତମକୁ ଆଶ୍ଚର୍ଯ୍ୟ ଲାଗୁଚି ?

ମିନି ଅପା କେମିତି ସ୍ୱେଚ୍ଛାରେ... ।

ନା, ଠିକ୍ ସ୍ୱେଚ୍ଛାରେ ନୁହେଁ ଜାଣିଚ ନିରୁ ସେ ମୋତେ ଧମକ ଦେଇଥିଲା ବିଷ ଖାଇ ଆତ୍ମହତ୍ୟା କରିବ ।

ଆତ୍ମହତ୍ୟା ?

ହଁ, ମୋତେ ଫାଶୀଖୁଣ୍ଟରେ ଝୁଲାଇବାର ସୁନ୍ଦର ପରିକଳ୍ପନା ।

ଫାସିଖୁଣ୍ଟ ?

ହଁ, କୋଟରେ ମୋତେ ପାଗଳ ବୋଲି ସାବ୍ୟସ୍ତ କରିଥାନ୍ତେ ।

ପାଗଳ ?

ହଁ ପାଗଳ ! ମୁଁ ମଦ ଖାଏ । ବିବାହିତା ସ୍ତ୍ରୀ, ଜନ୍ମ ଦେଇଥିବା ପୁଅ-ଝିଅଙ୍କୁ ଅବହେଳା କରେ । ମୁଁ ଗୋଟିଏ ସ୍ନାୟୁ ରୋଗୀ, ମୋର ବହୁ ସ୍ତ୍ରୀ ଲୋକ ଅଛି ଇତ୍ୟାଦି ।

କ'ଣ ଏସବୁ ସମ୍ଭବ ?

ଏ ଜଗତରେ ଅସମ୍ଭବ କିଛି ନୁହେଁ ନିରୁ ।

ନା, ଅସମ୍ଭବ କିଛି ନୁହେଁ । ଠିକ୍ କଥା ।

ଏସବୁ କଥା କହିଲାବେଳେ ତା' ମନ ଭିତରେ ମୁଣ୍ଡ ଟେକୁଥିଲା ନିଷ୍ଠୁର ହୃଦୟ ମୃଗାଙ୍କ କଥା । କିନ୍ତୁ ଠିକ୍ ସେତିକିବେଳେ ସେ ପଚାରିଥିଲେ, କ'ଣ ଠିକ୍ ନିରୁ ?

ହଁ ସାର୍, ଆପଣଙ୍କୁ ପାଇ ନ ଥିଲେ ହୁଏତ ମୁଁ ପାଗଳ ହୋଇଯାଆନ୍ତି ।

ସତରେ ବିସ୍ମୟ ପୁଲକର ଆବେଗରେ ନିଜ ବାହୁରେ ଆବଦ୍ଧ କଲେ ନିରୁର ତନୁଲତାକୁ ।

ମିନିଅପା ସ୍ୱୀକୃତି ପତ୍ରରେ ସ୍ୱାକ୍ଷର ଦେଇ ନଥିଲେ—ଓଃ, ମୁଁ କଳ୍ପନା କରିପାରୁନି, ମୋର ଅବସ୍ଥା କ'ଣ ହୋଇଥାନ୍ତା ! ମୋର ମନେ ହେଉଥିଲା... ।

ତମର କ'ଣ ମନେ ହେଉଥିଲା ?

ମୋର ମନେ ହେଉଥିଲା, ମୁଁ ଅବଲମ୍ବନହୀନ ନିଃସ୍ୱ ପାଲଟି ଯାଉଚି । ଚାରିଆଡ଼େ ଜମାଟ ଅନ୍ଧକାର ଆଉ ଏକ ଅଜଣା ଆଶଙ୍କାର ଭୟଙ୍କର ବିଭୀଷିକା ।

ଆଶଙ୍କା ? ଆଶଙ୍କା କାହିଁକି ?

ଆପଣଙ୍କୁ ହରେଇବାର ଆଶଙ୍କା । ଏମିତି ନିବିଡ଼ ଭାବେ ପାଇ ପୁଣି ଯଦି ହରେଇବାକୁ ପଡ଼ନ୍ତା ମୁଁ ନିଶ୍ଚୟ ପାଗଳ ହୋଇଯାଆନ୍ତି ।

ମିନତିକୁ ତୁମେ ଧନ୍ୟବାଦ ଦେଇପାର ନିରୁ ।

ନିଶ୍ଚୟ ତାଙ୍କର ଅସୀମ ତ୍ୟାଗ... ।

ତ୍ୟାଗ ? ତୁମେ ସେଣ୍ଟିମେଣ୍ଟାଲ ହୋଇଯାଉଚ ନିରୁ ।

ନା, ଆପଣଙ୍କ ମର୍ଯ୍ୟାଦା ରଖିବାକୁ ବୋଧହୁଏ ଏତେବଡ଼ ତ୍ୟାଗ କରି ପାରିଲେ ମିନିଅପା ।

ଠିକ୍ ମିନତି ନୁହେଁ । ମୋର ଜଣେ ବନ୍ଧୁ.... ।

ବନ୍ଧୁ ?

ହଁ ମୋର ଘନିଷ୍ଠ ବନ୍ଧୁ ପ୍ରଫେସର ପ୍ରଶାନ୍ତ ।

ଓଃ, ପ୍ରଶାନ୍ତ ବାବୁ ?

କିନ୍ତୁ ସେ ପ୍ରଥମେ ଅନେକ ଯୁକ୍ତି କରିଥିଲା ମିନତୀ ସପକ୍ଷରେ ।

ପ୍ରଶାନ୍ତ ବାବୁ କ'ଣ ଯୁକ୍ତି କରିଥିଲେ ଶୁଣିବାକୁ କୌତୂହଳୀ ହୋଇ ଉଠିଥିଲା ନିରୁପମା । ତା'ପରେ ହୁଇସ୍କି ପିଉ ପିଉ ସେ କହିଥିଲେ:

ବୁଝିଲ ନିରୁ, ପ୍ରଶାନ୍ତ କହିଥିଲା-କୁଆଡ଼େ ମୋର ଏକ ମାନସିକ ଦ୍ୱନ୍ଦ୍ୱକୁ ଅବଦମନ କରିବା ଉଦ୍ଦେଶ୍ୟରେ ମୁଁ ମଦ ପିଏ । ମୁଁ ଏମିତି କିଛି କରିବାକୁ ଚାହୁଁଛି, ଯାହାପାଇଁ ମୋ ଚେତନ ମନରେ ବିବେକର ସମର୍ଥନ ପାଇବାକୁ ଅକ୍ଷମ । ମୁଁ କହିଥିଲି, ପ୍ରଶାନ୍ତ, ସେମାନଙ୍କର ଏପରି ଧାରଣା ଏକ ସୂକ୍ଷ୍ମ କଳ୍ପନାପ୍ରସୂତ ।

ସେ କିନ୍ତୁ ମାନି ନଥିଲା । ବରଂ ମୋତେ ଆକ୍ରମଣ କରିଥିଲା ଖୋଲାଖୋଲି ଭାବେ । ମୋତେ ସେ ନିକ୍ଷେପ କରିଥିଲା ତୀବ୍ର ସମାଲୋଚନାର କେତୋଟି ବିଷାକ୍ତ ଶର । କହିଥିଲା, ମୁଁ ଜାଣେ ସମାଜର ପ୍ରତିଷ୍ଠିତ ବ୍ୟକ୍ତି; ଅଥଚ ମୁଁ ମଦ ପିଇ, ମାତାଲ ହେଇ ରାତିଯାକ.... ।

ଅସହ୍ୟ ହୋଇ ଉଠିଥିଲା ତା'ର ସମାଲୋଚନା । ମୁଁ ଉତ୍ତ୍ୟକ୍ତ ହୋଇ ଉଠିଥିଲି । ସ୍ପଷ୍ଟ ଭାବେ ମୁଁ ଜଣେଇ ଦେଇଥିଲି ମୋର ଇଚ୍ଛା । ମୁଁ କହିଥିଲି, ହଁ, ହଁ, ମୁ ମଦ ପିଏ । ମାତାଲ ହୁଏ । ଯାହାକୁ ମୁଁ ମୋର ଅନ୍ତର ଦେଇ ଭଲପାଏଁ, ଯାହାକୁ ମୁଁ ପ୍ରେମ କରେ ତା' ପାଖରେ ମୁଁ ରାତ୍ରିଯାପନ କରିବାକୁ କୁଣ୍ଠାବୋଧ କରେ ନାହିଁ ।

ଅର୍ଥଡକ୍ସ୍ ମନୋବୃତ୍ତି ନେଇ ପ୍ରତିବାଦ କରିଥିଲା ପ୍ରଶାନ୍ତ । କହିଥିଲା: ଦେବତା, ବ୍ରାହ୍ମଣ, ଅଗ୍ନି ସାକ୍ଷୀ କରି ମୁଁ ଯାହାକୁ ବିବାହ କରିଛି, ତା'ପ୍ରତି ମୁଁ କୁଆଡ଼େ Sadistic ଭାବେ ଅନ୍ୟାୟ ଅତ୍ୟାଚାର କରୁଛି । ବୁଝିଲ ନିରୁ, ପ୍ରଶାନ୍ତ ବୁଝିବାକୁ ଚାହେଁନି ଯେ ସେ ବିବାହ ଏକ ପ୍ରାଗଐତିହାସିକ ଯୁଗର ସାମାଜିକ କୁସଂସ୍କାର । ମୋ' ଉପରେ ମୋ ଇଚ୍ଛା ବିରୁଦ୍ଧରେ କେଉଁ ଏକ କୈଶୋର କାଳରେ ମୋ' ଉପରେ ଲଦି ଦିଆଯାଇଚି ଏକ ପ୍ରସ୍ତର ଯୁଗର ଦୁର୍ବହ ବୋଝ । ମୁଁ କିନ୍ତୁ ପ୍ରଶାନ୍ତକୁ ସ୍ପଷ୍ଟ ଭାବେ ଜଣେଇ ଦେଇଥିଲି ।

ଆପଣ କ'ଣ ଜଣେଇ ଦେଇଥିଲେ ? ନିରୁପମା ପ୍ରଶ୍ନ କରିଥିଲା ।

ମୁଁ ଜଣେଇ ଦେଇଥିଲି, ମୋତେ ନିରୁ ଭଲପାଏ ଏବଂ ମୁଁ ତାକୁ ବିବାହ କରିବାକୁ ଚାହେଁ ।

ମୋର ଚରମ ସିଦ୍ଧାନ୍ତ ଶୁଣି କ୍ଷଣକ ପାଇଁ ହତବାକ୍ ହୋଇଯାଇଥିଲା ପ୍ରଶାନ୍ତ । ତା'ପରେ ମନେ ମନେ ସାହସ ସଞ୍ଚୟ କରି ସେ ପ୍ରଶ୍ନ କରିଥିଲା —

ଆଉ ମିନତି ଦେବୀ ? ସେ କ'ଣ ତୋତେ ଭଲ ପାଆନ୍ତି ନି ?

ଦେଖ ନିରୁ, ପ୍ରଶାନ୍ତ ନିର୍ବୋଧ ଭଳି ମିନତିକୁ ତୁଳନା କରୁଥିଲା ତମ ସାଙ୍ଗରେ । ମୁଁ ପ୍ରତିବାଦ କରି କହିଥିଲି: ପ୍ରଶାନ୍ତ, ଡୋନ୍‌ଟ କମ୍ପେୟାର ।

ପ୍ରଶାନ୍ତ ଯୁକ୍ତି କରିଥିଲା: ମିନତି ମଧ୍ୟ ସୁନ୍ଦରୀ । ମୋର ଯୋଡ଼ିଏ ସନ୍ତାନର ଜନନୀ । ସେ ବୁଝିବାକୁ ଚାହୁଁ ନଥିଲା ଯେ ଏ ଯୁଗରେ କେବଳ ଦୈହିକ ସୌନ୍ଦର୍ଯ୍ୟ ଆଉ ସନ୍ତାନର

ଜନ୍ମଦାନ ଏକ ମଧ୍ୟଯୁଗୀୟ ବିଳାପ ବ୍ୟତୀତ ଆଉ କିଛି ନୁହେଁ । ମୁଁ କହିଥିଲି: ଜଣେ ଶିକ୍ଷା-ଦୀକ୍ଷା-ବିହୀନା ନାରୀ ମୋ ଜୀବନର ଉନ୍ନତି ପଥରେ ଏକ ବିରାଟ ପ୍ରତିବନ୍ଧକ । ସେ ମୋତେ କେବେହେଲେ ନିରୁ ଭଳି ସହଯୋଗ କରିପାରିବନି ମୋର ଇଣ୍ଟେଲେକ୍‌ଚୁୟେଲ୍ ଜଗତରେ । ତମେ ଶୁଣିଲେ ଆଶ୍ଚର୍ଯ୍ୟ ହେବ ନିରୁ, ପ୍ରଶାନ୍ତ ପ୍ରଭୃତି ମୋତେ ଈର୍ଷା କରନ୍ତି । ତମେ ଯେ ମୋ' କବିତାଗୁଡ଼ିକ ସୁନ୍ଦରଭାବେ ଇଂରାଜୀରେ ଅନୁବାଦ କରିଚ ଆଉ ମୋ' କବିତା ଯେ ସାହିତ୍ୟ ଏକାଡ଼େମୀ କିମ୍ବା ନୋବେଲ ପୁରସ୍କାର ପାଇପାରେ, ଏକଥା ଜାଣି ସେମାନେ ଜଳି ଯାଆନ୍ତି ନିଦାରୁଣ ଈର୍ଷାର ନିଆଁରେ ।

ତା'ପରେ ସେ ଅଗ୍ନି ସଂଯୋଗ କଲେ ଗୋଟିଏ ସିଗାରେଟ୍‌ରେ । ଘର ଭିତରେ ଧୂମକୁଣ୍ଡଳି ନିକ୍ଷେପ କରି ସେ ପୁଣି ଆରମ୍ଭ କଲେ:

ବୁଝିଲ ନିରୁ, ଏଇ ଇଣ୍ଟେଲେକଚୁୟେଲ ଜଗତରେ ଆମର ମିଳନକୁ ସେମାନେ କହୁଚନ୍ତି ଏଇଟା କୁଆଡ଼େ ମୋର Polygamus ମନୋବୃତ୍ତିର ଏକ ବିକୃତ ଆଉ ନଗ୍ନ ଅଭିବ୍ୟକ୍ତି । ଆଉ ସେଥିପାଇଁ ମୁଁ ତମର ଥିସିସ୍‌ରେ ସାହାଯ୍ୟ କରିଛି; ହେଲେ ମୁଁ ତାକୁ ବୁଝାଇ ଦେଇଚି, ମୁଁ ନିରୁକୁ ତା'ର ଥିସିସ୍ ପାଇଁ ସାହାଯ୍ୟ କରିଚି ତାର ନିଜସ୍ୱ ଟାଲେଣ୍ଟ ଯୋଗୁଁ, ତା'ର ଯୋଗ୍ୟତା ଯୋଗୁଁ । ତା'ଛଡ଼ା, ମୋ ଭବିଷ୍ୟତ ଜୀବନର ଉନ୍ନତି ପାଇଁ ନିରୁ ମୋର ଇଣ୍ଟେଲେକ୍‌ଚୁୟେଲ ପାର୍ଟନର । ଖାଲି ସେତିକି ନୁହେଁ, ମୋ' ପାଇଁ ସବୁ କିଛି କରିବାକୁ ନିରୁ ପ୍ରସ୍ତୁତ, ସେ ମିନତିକୁ ଏକ ମୋଡେଟ୍ କରିବ । ରୀନା ଆଉ ରତନର ଶିକ୍ଷାର ଦାୟିତ୍ୱ ନେବ । ତା'ପରେ ମିନତି ସ୍ୱାକ୍ଷର କରିଦେଇଥିଲା ଏଇ ସ୍ୱୀକୃତି ପତ୍ରରେ ।

ଦୀର୍ଘ ବକ୍ତୃତା ଦେଇ ଟିକିଏ ନୀରବ ହେଲେ ନରେନ୍ଦ୍ର । ନିରୁପମାର ବେଶ୍ ମନେପଡୁଛି: ଠିକ୍ ସେତିକିବେଳେ ସୂତ୍ରପାତ ହେଲା ସେଇ ନାଟକୀୟ ଘଟଣାଟିର ।

ପ୍ରଶାନ୍ତବାବୁ ଆଉ ମିନତି ଦେବୀ ଦୁହେଁ ଆସି ଉପସ୍ଥିତ ହେଲେ । ନରେନ୍ଦ୍ର କିମ୍ବା ନିରୁପମା କେହି ଆଶା କରିନଥିଲେ । ସେ ଦୁହିଁଙ୍କୁ ଆସିବାର ଦେଖି, ଭୂତ ଦେଖିଲା ଭଳି ଚମକି ପଡ଼ିଥିଲେ ସ୍ୱୟଂ ନରେନ୍ଦ୍ର, ପଚାରିଥିଲେ, ହଠାତ୍ ତମେ ଦୁହେଁ ?

ରହସ୍ୟମୟୀ ହସ ହସିଥିଲେ ମିନତିଦେବୀ, କହିଥିଲେ:

ତୁମର ଉପଯୁକ୍ତ ସ୍ତ୍ରୀ ହିସାବରେ ମୋତେ ଏଠାକୁ ଆସିବାକୁ ପଡ଼ିଲା ତୁମ ଦୁହିଁଙ୍କୁ ଅଭିନନ୍ଦନ ଜଣାଇବା ପାଇଁ ।

ବିସ୍ମୟାଭିଭୂତ ହୋଇ ପଡ଼ିଥିଲେ ନରେନ୍ଦ୍ର । କମ ଆଶ୍ଚର୍ଯ୍ୟ ହୋଇନଥିଲା ନିରୁ ।

ଏଇ ସେ ନାରୀ ଯେ ସ୍ୱେଚ୍ଛାରେ ନିଜର ସ୍ୱାକ୍ଷର ଦେଇଛନ୍ତି ସେଇ ସ୍ୱୀକୃତି ପତ୍ରରେ ସେ ପୁଣି ନିଜେ ଆସିଚନ୍ତି ଅଭିନନ୍ଦନ ଜଣାଇବାକୁ ?

ତାଡ଼ି ଫେରିବା ପରେ ଆଗାମୀ ସପ୍ତାହରେ ବିବାହର ରେଜିଷ୍ଟ୍ରେସନ ହେବା କଥା ଶୁଣି ଅନୁରୋଧ କରିଥିଲେ ଅଧ୍ୟାପକ ପ୍ରଶାନ୍ତ: କିଛିଦିନ ନିମନ୍ତେ ଏ ରେଜିଷ୍ଟ୍ରେସନ ସ୍ଥଗିତ ରଖାଯାଉ, ଅନ୍ତତଃ ଅଧ୍ୟାପକ ମୃଗାଙ୍କ ଜର୍ମାନୀରୁ ଫେରିବା ପର୍ଯ୍ୟନ୍ତ ।

ମୃଗାଙ୍କ ନାମ ଶୁଣି ଆତଙ୍କରେ ଚମକି ଉଠିଥିଲା ନିରୁପମା । ସେଇ ମୁହୂର୍ତ୍ତରେ ଥରି ଉଠିଥିଲା ତା' ପାଦତଳର ପୃଥିବୀ ।

ଅବଶ୍ୟ ମୃଗାଙ୍କର ନାଁ ଶୁଣି ବିରକ୍ତ ହୋଇ ଉଠିଥିଲେ ନରେନ୍ଦ୍ର । ସେ କହିଥିଲେ: ମୃଗାଙ୍କ ? କାହିଁକି ? ଆମେ ଅପେକ୍ଷା କରିବୁ ସେ ଜର୍ମାନୀରୁ ଫେରିବା ଯାଏ ?

ବେଶ୍ ଶାନ୍ତ କଣ୍ଠରେ ଉତ୍ତର ଦେଲେ ପ୍ରଫେସର ପ୍ରଶାନ୍ତ: ମୃଗାଙ୍କ ଚିଠିଟିଏ ଦେଇଚି ନିରୁପମାଦେବୀଙ୍କୁ ।

ଅଥଚ ସେ ଚିଠି ଆପଣଙ୍କ ପାଖରେ ? ହଠାତ୍ ବିରକ୍ତିରେ ପ୍ରଶ୍ନ କରିଥିଲା ନିରୁପମା ।

ତାଙ୍କ ପାଖରେ ନୁହେଁ । ଚିଠିଟି ମୋ' ପାଖରେ । ଚିଠି ଖଣ୍ଡିକ ଧରି ଆଗେଇ ଆସିଥିଲେ ମିନତି ଦେବୀ ।

ଆପଣଙ୍କ ପାଖରେ ? ପ୍ରଶ୍ନିଳ ହୋଇ ଉଠିଥିଲା ନିରୁପମାର ଆଖି ଯୋଡ଼ିକ ନିଦାରୁଣ ବିସ୍ମୟରେ ।

ମିନତି ଦେବୀ କହିଥିଲେ: N.Mishra, ଅର୍ଥାତ୍ ନିରୁପମା ମିଶ୍ରଙ୍କୁ ଚିଠିଟି ଦେଇଛନ୍ତି ମୃଗାଙ୍କବାବୁ । ମାତ୍ର ପୋଷ୍ଟପିଅନ ଭୁଲ କ୍ରମେ ଦେଇ ଯାଇଚି ଅଧ୍ୟାପକ N. Mishraଙ୍କ ଘରେ ।

କ'ଣ ଲେଖିଛି ମୃଗାଙ୍କ ? ପ୍ରଶ୍ନ କଲେ ନରେନ୍ଦ୍ର ।

ତମେ ପଢ଼ । ମିନତି ଦେବୀ ବଢ଼ାଇ ଦେଇଥିଲେ ଚିଠି ଖଣ୍ଡିକ । ନରେନ୍ଦ୍ର ପଢ଼ିବାକୁ ଲାଗିଲେ:

ନିରୁ,

ତୁମର ଶେଷ ଚିଠିଟି ବାସ୍ତବିକ ବିସ୍ମୟକର । ପୃଥିବୀରେ ତ ବିସ୍ମୟର ଅଭାବ ନାହିଁ; କିନ୍ତୁ ତୁମର ଚିଠି ଖଣ୍ଡିକ ହୁଏତ ଦୁନିଆର ସବୁ ବିସ୍ମୟକୁ ତୁଚ୍ଛ କରିଦେବ ।...

ଯେଉଁ ଅନାଗତର ପଦଧ୍ୱନି ତୁମରି ଭିତରେ ତୁମେ ଶୁଣି ପାରୁଛ ସେଥି ସକାଶେ ଶେଷରେ ତୁମେ ମୋତେ ଦାୟୀ କରୁଛ ? ଯା'ଠାରୁ ବିସ୍ମୟକର କଥା ଦୁନିଆରେ ଆଉ କ'ଣ ଅଛି ?..

ଆଉ ଅଧିକ ପଢ଼ି ପାରିନଥିଲେ ନରେନ୍ଦ୍ର । ତାଙ୍କ କଣ୍ଠରୁ ନିଃସୃତ ହେବାକୁ ଲାଗିଲା ସେଇ କେଇପଦ: ଶେଷରେ ତୁମେ ମୋତେ ଦାୟୀ କରୁଛ ?

.... ଅନାଗତର ପଦଧ୍ୱନି ..... ପଦଧ୍ୱନି ।

ହଠାତ୍ କଠୋର ହୋଇଗଲା ତାଙ୍କର କଣ୍ଠସ୍ୱର । ନିଷ୍ଠୁର ଆଖିରେ ଚାହିଁଲେ ନିରୁପମାକୁ ।

କାହିଁ ନିରୁ, ତମେ ମୋତେ ଏକଥା କହିନ ।

କହିବାର ଅବକାଶ ପାଇଲି କେଉଁଠି ? ଉତ୍ତର ଦେଇଥିଲା ନିରୁ ଶଂକିତ ହୃଦୟରେ ।

କିନ୍ତୁ ଉଦ୍ଧତର ହୋଇ ଉଠିଥିଲେ ନରେନ୍ଦ୍ର: କହିବାର ଅବକାଶ ପାଇନ ? ନା, ତୁମେ ମୋତେ ପ୍ରତାରଣା କରିଛ । ତୁମର ସ୍ୱପ୍ନ......

ତାଙ୍କ କଥାକୁ ସଂପୂର୍ଣ୍ଣ କରିବାକୁ ନ ଦେଇ ଅନୁନୟ କଣ୍ଠରେ ଆବେଦନ କରିଥିଲା ନିରୁ । ମୁଁ ଜାଣେ, ଆପଣ ମହତ୍, ଆପଣ ଉଦାର । ଏ ସମସ୍ତ କ୍ଷୁଦ୍ର ସଂସ୍କାରର ବହୁ ଉର୍ଦ୍ଧ୍ୱରେ ।

ନିରୁପମା ଅନୁଭବ କରିବାକୁ ଲାଗିଲା, ନାଟକୀୟଭାବେ ପରିସ୍ଫୁଟ ହେଉଚି ଏକ ସୁଗଭୀର ପରିବର୍ତ୍ତନ । ନରେନ୍ଦ୍ରଙ୍କ କଣ୍ଠରୁ ଶୁଭିଲା:

ତମ ଭିତରେ ଏକ ଅନାଗତ ଶିଶୁର ପଦଧ୍ୱନି ସୁସ୍ପଷ୍ଟ । ଅନ୍ୟର ଦାୟିତ୍ୱ ମୋ ମୁଣ୍ଡ ଉପରକୁ ନେବାକୁ ଅକ୍ଷମ । Execuse me !

ହଠାତ୍ ଉଠିପଡ଼ିଲେ ନରେନ୍ଦ୍ର । ତାଙ୍କ ଗତିପଥ ରୋଧ କରି ଠିଆ ହୋଇଥିଲା ନିରୁପମା ।

ଶୁଣନ୍ତୁ । ମୋର ଏତେ ଆଶାର ଘର ନିର୍ଦ୍ଦୟଭାବେ ଭାଙ୍ଗିଦିଅନ୍ତୁ ନାହିଁ ।

କିନ୍ତୁ ସବୁ କଥା ଶୁଣିବା ପାଇଁ ନରେନ୍ଦ୍ର ସେଠାରେ ନଥିଲେ । ଶୂନ୍ୟ ଗିଲାସ ଆଉ ହୁଇସ୍କିର ଶୂନ୍ୟ ବୋତଲ ପଡ଼ିରହିଥିଲା ଟେବୁଲ ଉପରେ । ନିରୁ କେବଳ ଶୁଣି ପାରିଲା ତାଙ୍କର ଶେଷ ମନ୍ତବ୍ୟ ।

No, No Niru, it is impossible ତୁମେ ହୁଏତ ବାନ୍ଧିଥିଲ ଏକ ବାଲିର ଘର ।

ବାହାରୁ ଶୁଣାଯାଇଥିଲା କାର ଚାଲିଯିବାର ଶବ୍ଦ । ନରେନ୍ଦ୍ର ଚାଲିଯାଇଥିଲେ । ଘର ଶୂନ୍ୟ କରି ଚାଲିଯାଇଥିଲେ ଅଧ୍ୟାପକ ପ୍ରଶାନ୍ତ ଆଉ ମିନତି ଦେବୀ ।

ନୀରବ ଘରର ଶୂନ୍ୟତା ଭିତରେ ଘୂରିବାକୁ ଲାଗିଲା ହତାଶ ନିରୁପମାର କରୁଣ ଭଗ୍ନ କଣ୍ଠସ୍ୱର ।

ମୁଁ ବାନ୍ଧିଥିଲି ବାଲିର ଘର ? ଆପଣ ମଧ୍ୟ ହୃଦୟହୀନ ହେଲେ ଅଧ୍ୟାପକ ମୃଗାଙ୍କ ଭଳି ?



# ବିବର୍ଣ୍ଣ ପୃଥିବୀ

ଶିଖାର ଅନୁରୋଧକୁ ବହୁଦିନ ଏଡ଼େଇ ଆସିଛନ୍ତି ବିଶ୍ୱମୋହନବାବୁ; ହେଲେ ଏଥର ଆଉ ପାରିଲେନି । ଶିଖାକୁ ସାଙ୍ଗରେ ନେଇ ଏଇ ଡାକବଙ୍ଗଳାକୁ ଆସିବାକୁ ପଡ଼ିଲା, ଶିଖାର କେବଳ ଇଚ୍ଛା ନୁହେଁ, ସେଇ ଗୋଟିଏ ଜିଦ୍ । ସେଇ ବଟେଶ୍ୱର ମହାଦେବ ଭାରି ପ୍ରତ୍ୟକ୍ଷ ଦେବତା ! ବୈଶାଖୀ ପୂର୍ଣ୍ଣମୀରେ ପୂଜା କଲେ ଅବଶ୍ୟ ଫଳ ମିଳିବ !

ଅବଶ୍ୟ ଏଇ ମନ୍ଦିର, ଡାକବଙ୍ଗଳାର ପ୍ରାକୃତିକ ପରିବେଶ ଅତ୍ୟନ୍ତ କମନୀୟ । ବିଶାଳ ପଥରରୁ ପଥରକୁ ଡେଇଁ ଡେଇଁ ଝରି ଯାଉଥିବା ପାହାଡୀ ନଈଟି ଆକର୍ଷଣୀୟ । ନଈ ସେପାରିରେ ଉଚ୍ଚ ଶାଳ-ମହୁଲର ଘନ-ସବୁଜ ଅରଣ୍ୟ । ଆଉ ତା ପଛକୁ ନୀଳ ପର୍ବତମାଳା । ଏମିତି ସୁନ୍ଦର ପରିବେଶ ଆଗନ୍ତୁକର ମନକୁ ସ୍ୱତଃ ଆକର୍ଷଣ କରେ । ହେଲେ ଦୀର୍ଘ ଉଣେଇଶ ବର୍ଷ ତଳର ସେଇ ବେଦନାଦାୟକ ଏକ ଭୟଙ୍କର ସ୍ମୃତି ଶିଖା ଆଉ ବିଶ୍ୱମୋହନବାବୁଙ୍କ ଜୀବନ ସହିତ ସାକ୍ଷୀ ଏଇ ଡାକବଙ୍ଗଳା ଆଉ ତାର ଚୌକିଦାର । ବିଶ୍ୱମୋହନଙ୍କ ଆଶଙ୍କା, ଏଠିକି ଆସିଲେ ଶିଖା ମନରେ ହୁଏତ ସେଇ ଭୟଙ୍କର ସ୍ମୃତି ପୁଣି ଜାଗି ଉଠି ତା'ର ମନର ଭାରସାମ୍ୟକୁ ବିପର୍ଯ୍ୟସ୍ତ କରିଦେବ ।

ବିଶ୍ୱମୋହନ ଜଣେ ଉଚ୍ଚପଦସ୍ଥ ଇଂଜିନିୟର । ପଦମର୍ଯ୍ୟାଦା, ଖ୍ୟାତିସମ୍ମାନ, ଧନ-ସମ୍ପଦରେ କିଛି ଊଣା ନାହିଁ । ଶିଖାର କୌଣସି ବାସନା ସେ ଅପୂରଣ ରଖି ନାହାନ୍ତି । ତାର ରୁଚି ଅନୁସାରେ ଅଳଙ୍କାର, ଟି.ଭି., ଫ୍ରିଜ୍ ଆଧୁନିକ ବିଳାସବ୍ୟସନର ଉପକରଣର ଅଭାବ ରଖି ନାହାନ୍ତି । ସେଇ ରାଜାଙ୍କ କାହାଣୀ ଭଳି: ଭଣ୍ଡାରରେ ଧନରତ୍ନ, ହାତୀଶାଳାରେ ହାତୀ, ଘୋଡ଼ାଶାଳାରେ ଘୋଡ଼ା, ବିଭବ ସମ୍ପଦର ଊଣା ନାହିଁ । ହେଲେ ଶିଖାର ମନରେ ସୁଖ ନାହିଁ । ବିବାହର ଅଠର ବର୍ଷ ପୂରି ଗଲେବି ତା'ର କୋଳ ପୂରି ଉଠିନାହିଁ । ଶିଶୁ କଣ୍ଠରୁ ଦରୋଟି ଭାଷାରେ ମା, ମା, ଡାକ ଶୁଣିବାକୁ ତାର ମନ ବ୍ୟାକୁଳ, ଦିଗହରା ବାଲୁକାରାଶି ଭଳି ଧୂ ଧୂ କରୁଛି ନିଷ୍ଫଳ ମାତୃତ୍ୱର ଜୀବନ । ସେଥିପାଇଁ ଆଗାମୀ ବୈଶାଖୀ ପୂର୍ଣ୍ଣମୀର ଶୁଭ ଲଗ୍ନରେ ବଟେଶ୍ୱର ମହାପ୍ରଭୁଙ୍କ ମନ୍ଦିରରେ ରୁଦ୍ରାଭିଷେକ କରିବାକୁ ହେବ ।

ଥର ଥର ଏଇ ପୃଥିବୀ ସୂର୍ଯ୍ୟକୁ ପରିକ୍ରମ କଲାଣି ଉଣେଇଶଥର । ଚାଲିଗଲାଣି ଅଠରଟି ବୈଶାଖ ପୂର୍ଣ୍ଣମୀ । ସେଇ ବେଦନାମୟ ସ୍ମୃତି ବିଶ୍ୱମୋହନବାବୁଙ୍କ ମନରେ ଅଦୃଶ୍ୟ କ୍ଷତ ଭଳି ଯନ୍ତ୍ରଣାଦାୟକ । ସେତେବେଳେ ସେ ଥିଲେ ଅବିବାହିତ ଯୁବକ ।

ପାହାଡୀ ଝରଣା ଭଳି ବେପରୁଆ ଜୀବନ । ସେଦିନ ସନ୍ଧ୍ୟାରେ ଅଫିସ କାମ ସାରି କ୍ୱାର୍ଟର୍ସକୁ ଫେରି ବିସ୍ମୟାଭିଭୂତ ହେଲେ । ଶିଖା ଏକୁଟିଆ ଉପସ୍ଥିତ । ତା'ର ବିଧବା ବୋଉ, ଭାଇ ଭଉଣୀ, ଘରଦ୍ୱାର ଛାଡ଼ି, ଦୀର୍ଘ ପଚାଶ କି.ମି. ବାଟ ଏକୁଟିଆ ଆସି ଶିଖା ଯେ, ତା'ର ସରକାରୀ ବାସଭବନରେ ହାଜର ହେବ, ଯା' ତାର କଳ୍ପନାର ବାହାରେ । ଶିଖାର କଥା ଶୁଣି, ତାର ଅବସ୍ଥା ଦେଖି ତାଙ୍କର ବୁଦ୍ଧି ବଣା ହୋଇଗଲା । ଶିଖା ଗର୍ଭ ବେଦନାରେ କାତର । ଗାଁରେ ସଭିଏଁ ଜାଣିବେ; ନିରୂପାୟ ହୋଇ ଶିଖା ଛୁଟି ଆସିଚି ବିଶ୍ୱମୋହନଙ୍କ ପାଖକୁ ।

ସମାଜର ରକ୍ତଚକ୍ଷୁ ଭୟଙ୍କର । ଅଫିସରସ୍ କଲୋନୀରେ ବେଚେଲର୍ସ କ୍ୱାର୍ଟର୍ସରେ ଭୟାବହ ଆତଙ୍କ ଘେରିଗଲା ବିଶ୍ୱମୋହନଙ୍କ ମନରେ ।

ନା, ନିଜର ପିତୃତ୍ୱକୁ ଅସ୍ୱୀକାର କରିନଥିଲେ ବିଶ୍ୱମୋହନ । ସନ୍ତାନ ହେଉ । ଘରେ ଯିଏ ଯାହା କହନ୍ତୁ ନା କାହିଁକି ସେ ଶିଖାକୁ ବିବାହ କରିବେ । ସେଇକଥା ପ୍ରତିଶ୍ରୁତି ଦେଇଥିଲେ ଶିଖାକୁ, ବୁଝେଇଥିଲେ ତା'ର ବୋଉକୁ । ହେଲେ ସମାଜର ଝଡ଼ ଆଗରେ ଠିଆ ହେବାକୁ ସାହସ କରିପାରିଲେନି ସେମାନେ, ସନ୍ତାନ ଜନ୍ମପରେ ବିଶ୍ୱମୋହନଙ୍କ ପରିବାର ଶିଖାକୁ ଗୃହବଧୂରୂପେ ଗ୍ରହଣ କରିବେ, ତା'ର ପ୍ରତିଶ୍ରୁତି କିଏ ଦେବ ?

ନିଦାରୁଣ ଗର୍ଭଯନ୍ତ୍ରଣାରେ ଛଟପଟ ହେଉଥିଲା ଶିଖା । ତେଣେ ଆକାଶରେ ଜମି ଉଠିଥିଲା ଭୟଙ୍କର ମେଘପୁଞ୍ଜ । ତା ସଙ୍ଗେ ପ୍ରବଳ ଝଡ଼ର ସଙ୍କେତ । ଭାବିବାକୁ ଅବକାଶ ନଥିଲା । ଆକାଶରେ ଘନେଇ ଆସୁଥିବା ବର୍ଷୋନ୍ମୁଖ ମେଘରାଶିକୁ ତୁଚ୍ଛ କରି, ସୁ ସୁ ଗର୍ଜନ କରୁଥିବା ଝଡ଼ ପବନକୁ ଭ୍ରୂକ୍ଷେପ ନକରି ଶିଖାକୁ ନେଇ ଜିପରେ ସେ ଛୁଟି ଆସିଥିଲେ ଏଇ ନିର୍ଜନ ଡାକବଙ୍ଗଳାକୁ । ଝଡ଼ବର୍ଷାରେ କଡ଼ମଡ଼ କରି ଭାଙ୍ଗି ପଡୁଥିଲା ବଡ଼ ବଡ଼ ଗଛର ଡାଳସବୁ । ଆକାଶରୁ ଝରିପଡୁଥିଲା ଅଫୁରନ୍ତ ବର୍ଷାଧାରା । ନିର୍ଜନ ଡାକବଙ୍ଗଳାରେ ଗୋଟିଏ ଅବାଞ୍ଛିତ ନବାଗତ ଶିଶୁର କ୍ରନ୍ଦନରେ ଚମକି ଉଠିଥିଲେ ନିଜେ ବିଶ୍ୱମୋହନ । କ'ଣ କରିବେ ସେ ସେଇ ଜୀଅନ୍ତା ମାଂସପିଣ୍ଡୁଳାକୁ ଦେଖି, ନିରୂପାୟ ହୋଇ ସେ ସାହାଯ୍ୟ ନେଇଥିଲେ ସେଦିନର ସେଇ ଟୋକା ଚୌକିଦାର ଘନଶ୍ୟାମର । ଅସ୍ଥିର ଜୀଅନ୍ତା ମାଂସପିଣ୍ଡୁଳାଟିକୁ ଶିଖାର ବ୍ଲାଉଜ୍ କନାରେ ଗୁଡ଼େଇ ନିର୍ଦ୍ଦୟ ଭାବେ ସେ ଟେକି ଦେଇଥିଲେ ତାରି ହାତକୁ । ବଙ୍ଗଳା ହତାର ଗୋଟିଏ ଛୋଟ ଆମ୍ବଚାରା ମୂଳକୁ ଲକ୍ଷ୍ୟ କରି ସେଇଠି ମାଟି ଖୋଳି ପୋତି ଦେବାକୁ ନିର୍ଦ୍ଦେଶ ଦେଇଥିଲେ । ବିଷୟଟିକୁ ଗୋପନ ରଖିବା ଉଦ୍ଦେଶ୍ୟରେ ଘନଶ୍ୟାମ ହାତରେ ଗୁଞ୍ଜି ଦେଇଥିଲେ ମୁଠାଏ ନୋଟ୍ ।

ନୂଆ ସୂର୍ଯ୍ୟର ଆଲୁଅ ମାଟି ଛୁଇଁବା ପୂର୍ବରୁ ଶିଖାକୁ ନେଇ ସେ ଚାଲିଯାଇଥିଲେ ନିରାପଦରେ, କେହି ଜାଣିଲେ ନାହିଁ । ହେଲେ, ଆଜି ବିଶ୍ୱମୋହନଙ୍କର ବିଶ୍ୱାସ ନ କରି

ଉପାୟ ନାହିଁ । ସେଇ ଭୟାବହ ଦୁର୍ଘଟଣାର ମାନସିକ ଆଘାତରେ ଶିଖାର ଜୀବନରେ ଘଟି ଯାଇଛି ଅପୂରଣୀୟ କ୍ଷତି । ସର୍ବାଧୁନିକ ଚିକିତ୍ସା ବିଜ୍ଞାନର ସବୁକିଛି ପରୀକ୍ଷା ନିରୀକ୍ଷାରେ ସେମାନେ ଉଭୟେ ନିର୍ଦ୍ଦୋଷ ଥାଇ ମଧ୍ୟ ବିବାହର ଦୀର୍ଘଦିନ ପରେ ବି ସନ୍ତାନଲାଭରୁ ସେମାନେ ବଞ୍ଚିତ । ଶିଖା କିନ୍ତୁ ଅନ୍ୟ କଥା କହେ । ଈଶ୍ୱରଙ୍କର ଦାନକୁ ଯିଏ ଥରେ ନିଷ୍ଠୁରଭାବେ ନିଜପାଦରେ ଦଳି ଦେଇଛି ନିର୍ମମ ଭାବେ, ତା' ପାଇଁ ଯେତ ଈଶ୍ୱରଙ୍କ ଅଭିଶାପ । ଆଉ ସେଥିରୁ ମୁକ୍ତ ହେବାର ଏକମାତ୍ର ଉପାୟ ମହେଶ୍ୱରଙ୍କ ଠାରେ ଶରଣ ଭିକ୍ଷା ।

ବିଶ୍ୱମୋହନ ଅବଜ୍ଞା କରିଦେଇ ପାରିନଥିଲେ ଶିଖାର କଥାକୁ । ସେଦିନର ସେଇ ଅସ୍ଥିର ମାଂସପିଣ୍ଡ ଆର୍ତ୍ତନାଦ କରି ହୁଏତ ତା'ର ଜୀବନଭିକ୍ଷା କରିଥିଲା କରୁଣ ଭାବେ । ଆଜି ନିଜର ଦି' ହାତକୁ ଚାହିଁ ଦେଖିଲେ ସେ ଅନୁଭବ କରନ୍ତି ଲହୁ-ଲାଲ ବୋଳା ଏକ ଶିଶୁର ଉତ୍ତାପ ।

ଆଜି ବୈଶାଖୀ ଶୁକ୍ଳ ଚତୁର୍ଦ୍ଦଶୀର ମନୋରମ ରାତି । ସେମାନେ କାରରେ ଆସି ପହଞ୍ଚିଲେ ଦୀର୍ଘ ଉଣେଇଶ ବର୍ଷ ପରେ ।

ଡାକବଙ୍ଗଳାରେ ପହଞ୍ଚିଲାବେଳକୁ ବେଶ୍ ରାତି ହୋଇଯାଇଥିଲା । ଘନଶ୍ୟାମ ସବୁ ସଜ କରି ରଖିଥିଲା । ସେମାନେ ପହଞ୍ଚିଲେ ରୋଷେଇ ହେବା କଥା । ଏତେ ରାତିରେ ରୋଷେଇ ଆରମ୍ଭ କଲେ ଖାଇବାକୁ ବିଳମ୍ବ ହେବ । ଘନଶ୍ୟାମ କହିଲା, ସେଥିକୁ ଆପଣ ଚିନ୍ତା କରନ୍ତୁ ନାହିଁ । ସେଇ ବାଟରେ ବଡ଼ ହୋଟେଲ ଅଛି । ପବନାକୁ ମୁଁ କହିଦେଇଚି । ଆପଣଙ୍କର ଯାହା ଦରକାର ସେ ଘେନି ଆସିବ ।

ବିଶ୍ୱମୋହନବାବୁ ଆଉ ତାଙ୍କର ସ୍ତ୍ରୀ ପହଞ୍ଚିଗଲେଣି । ଅଥଚ ପବନାର ଦେଖାନାହିଁ । ଚିଡ଼ି ଉଠିଲା ଘନଶ୍ୟାମ , ବାଳୁଙ୍ଗାର ଏଯାଏ ଦେଖାନାହିଁ । ଗଲା କୁଆଡ଼େ ? ପବନା, ଏ ପବନା । ଡାକ ପକେଇଲା ଘନଶ୍ୟାମ । ଡାକବଙ୍ଗଳା ହତାରେ ଚନ୍ଦ୍ରକିରଣରେ ଗାଧୋଉଥିବା ଫୁଲ-ଫଳ ଗଛର ପତ୍ର ଦେହକୁ ଛୁଇଁ ଛୁଇଁ ଘୂରିବୁଲିଲା ତା'ର ଡାକ ।

ନିଛକ କୌତୂହଳରେ ବିଶ୍ୱମୋହନ ପଚାରିଥିଲେ, ଆରେ ପବନା କିଏ କିରେ ?

ମୋ ପୁଅ ଆଜ୍ଞା ! ଏଡ଼ିକି ଦୁଷ୍ଟ, କ'ଣ କହିବି ? ଦଶବର୍ଷରୁ ମା ଛେଉଣ୍ଡ । ଆକଟ କରିବାକୁ କେହି ନାହିଁ ।

ବୟସ କେତେ ହେବ ? ପାଠଶାଠ ପଢ଼େଇଛୁ ?

ବଅସ ସତର ଅଠର ହବ । ଏଇ ଗାଁ ମାଇନର ସ୍କୁଲରୁ ମାଇନର ପାସ୍ କରିଚି । ସହର ହାଇସ୍କୁଲରେ ପଢ଼େଇବାର ମୋର ତାକତ କାହିଁ ? ତେଣିକି ତା'ର ମନ ବି ନାହିଁ ।

କେତେ କୁହାବୋଲା କରି ରଖେଇ ଦେଇଚି ସେଇ ହୋଟେଲରେ । ହେଲେ ତା'ର କ'ଣ ହୋଟେଲରେ ମନ ମାନୁଚି ?

ଆଉ ?

ଟିକିଏ ଫାଙ୍କ ପାଇଲା ତ, ଯାଇ ସେ ଆଖଡ଼ାରେ ରିହର୍ସାଲଠି ହାଜର ।

ରିହର୍ସାଲ ? ହସିଲେ ବିଶ୍ୱମୋହନବାବୁ ।

ଆଜିକାଲି ଆମ ଗାଁ ଆଉ ଆଖପାଖ ଗାଁକୁ ଅପେରା ଦଳ ଆସୁଚି । ଅପେରା ବାଜା ଶୁଭିଲେ ସେ କ'ଣ ଆଉ ଥୟ ଧରୁଚି !

ନାଟ୍ୟାଭିଳାଷୀ ବିଶ୍ୱମୋହନବାବୁଙ୍କର ମନେ ପଡ଼ିଗଲା, ଅଫିସରେ ଯେଉଁ ନାଟକ ହେବ, ତାଙ୍କର ଅନୁପସ୍ଥିତିରେ ଆଜି ଭଲଭାବେ ରିହାର୍ସାଲ୍ ହୋଇପାରି ନଥିବ । ଜୀବନରେ ସେ ବିଭିନ୍ନ ଭୂମିକାରେ ଅଭିନୟ କରିଛନ୍ତି । ଏବେ ସେ ନିର୍ଦ୍ଦେଶନା ଦେବାରେ ଆନନ୍ଦ ପାଇଥାନ୍ତି ।

ପୁଅ ପବନା ଉଦ୍ଦେଶ୍ୟରେ ପୁଣି ଡାକ ଛାଡ଼ିଲା ଘନଶ୍ୟାମ ।

କହୁ କହୁ ଟିଫିନ୍ କେରିୟର ଧରି ହାଜର ହେଲା ଗୋଟିଏ ପିଲା ।

କାହିଁକି ରଡ଼ି ଛାଡ଼ିଲୁ ବା ? କାର୍ ଆସିବାର ଦେଖି ମୁଁ ପରା ଧାଇଁଥିଲି ହୋଟେଲକୁ ।

ବିଶ୍ୱମୋହନବାବୁ ଆଉ ଶିଖା ଚାହିଁ ଦେଖିଲେ, ହାଫ୍‌ପ୍ୟାଣ୍ଟ ଆଉ ଗଞ୍ଜି ପିନ୍ଧି ସତର ଅଠର ବର୍ଷର ପିଲାଟିଏ । ଦେଖିଲେ ସୁଦର୍ଶନ ପରି ମନେହୁଏ । ଓଠରେ ହସ ଲାଗି ରହିଚି । ସନ୍ଦେହର ଅବକାଶ ନାହିଁ, ସେ ହିଁ ଘନଶ୍ୟାମର ନାଟ୍ୟରସିକ ବାଳୁଙ୍ଗା ପୁଅ, ପବନା ।

ଶିଖାର ରାତିରେ ଉପବାସ । ସୁତରାଂ ବିଶ୍ୱମୋହନବାବୁ ଏକାକୀ ସାରିଦେଲେ ଆହାର ପର୍ବ । ଆହାରାନ୍ତେ ସ୍ୱାମୀ-ସ୍ତ୍ରୀ ଦୁହେଁ ବସିଲେ ଆଗାମୀ ଦିନର ପୂଜା ସମ୍ବନ୍ଧରେ ଘନଶ୍ୟାମ ସଙ୍ଗେ ପରାମର୍ଶ କରିବା ଉଦ୍ଦେଶ୍ୟରେ ।

ଘନଶ୍ୟାମ କହିଥିଲା, କିଛି ଚିନ୍ତା କରନ୍ତୁ ନାହିଁ ମା, ସକାଳୁ ମୁଁ ଯାଇ ପୁରୋହିତକୁ ଖବର ଦେବି । ଆଉ ପବନା ପୂଜା ପାଇଁ ଫୁଲ, ବେଲପତ୍ର ଯୋଗାଡ଼ କରିଦେବ ।

ସେତିକିବେଳେ ନିର୍ଜନ ଗ୍ରାମ୍ୟ ରାତ୍ରିରେ ଶୁଭିଲା ଅପେରା ପାର୍ଟିର କ୍ଲାରିଓନେଟ୍ ଆଉ ଢୋଲକର ଐକ୍ୟତାନ ।

ଦେଖନ୍ତୁ ଆଜ୍ଞା, ଅପେରାର ବାଜା ବାଜିଲା କି ନାହିଁ ପବନା ଯିବାକୁ କେମିତି ଉଚ୍ଛନ୍ନ ହେଲାଣି, କହିଲା ଘନଶ୍ୟାମ ।

ତୁ ବା କାହିଁକି ଏମିତି ହେଉଚୁ ? ସକାଳୁ ଫୁଲ, ବେଲପତ୍ର ଆଣିଦେଲେ ହେଲା । କହୁ କହୁ ପବନା ଚାଲିଗଲା ପବନ ଗତିରେ ।

ପବନାର ଢଙ୍ଗ-ଢାଙ୍ଗକୁ ଲକ୍ଷ୍ୟକରି ଶିଖା ଆଉ ବିଶ୍ୱମୋହନ ଦିହେଁ ହସି ଉଠିଥିଲେ । ସେମାନେ ହସିବାର ଦେଖି ଘନଶ୍ୟାମ ସେମାନଙ୍କୁ ଦେଖିଥିଲା, ତାର ଆଖି ଯୋଡ଼ିକରେ ବିସ୍ମୟର ତରଙ୍ଗ ଖେଳାଇ । ବ୍ୟସ୍ତରେ କହିଥିଲା, ମୁଁ ଆଉ ପାରୁନି ଯେ ବାଲୁଙ୍ଗା ସାଥିରେ ।

ତମେ ସିନା ତମ ପୁଅକୁ ବାଲୁଙ୍ଗା କହୁଚ ? ତମ ବାବୁଙ୍କର କ'ଣ କମ ନାଟକ ନିଶା ? ଅଫିସରେ ପରା ଡ୍ରାମା ହେବ, ତାଙ୍କୁ ରାତିରେ ନିଦ ନାହିଁ ।

ଶିଖାର ମନ୍ତବ୍ୟରେ ବିଶ୍ୱମୋହନବାବୁ ହସିଥିଲେ । ଶୋଇବା ପୂର୍ବରୁ ସେ ଆଶ୍ୱସ୍ତ ହେଇଥିଲେ ଏଇଯା ଭାବି-ଯା'ହେଉ, ଘନଶ୍ୟାମ ଊଣେଇଶ ବର୍ଷ ତଳର ବେଦନାମୟ କଥା କିଛି ଉଲ୍ଲେଖ କରିନାହିଁ । ହୁଏତ ସେ ସେମାନଙ୍କୁ ଚିହ୍ନିପାରି ନାହିଁ ।

ପାର୍ବତ୍ୟ ନଈର ସ୍ୱଚ୍ଛଜଳରେ ମନପୂରେଇ ଗାଧୋଇ ବେଶ ଆନନ୍ଦ ପାଇଥିଲେ ବିଶ୍ୱମୋହନବାବୁ । କେଉଁ ପୁରୁଣା କାଳର ବିରାଟ ବରଗଛ ଓହଳ ସବୁ ହାତୀପାଦ ପରି ଓହଳିଛି ପ୍ରାୟ ମାଣେ ଜମି ଉପରେ । ପୁରୋହିତ ନିଷ୍ଠାର ସହିତ ପୂଜା କଲେ । ନିର୍ମଳ ଆନନ୍ଦରେ ଦିନଟା କେମିତି ବିତିଗଲା ଜାଣି ହେଲାନି । ଦିନଯାକ ପବନା ରହିଥିଲା ଶିଖାର ପାଖେ ପାଖେ । ରାତିସାରା ଅପେରା ଦେଖିଲେ ବି ସକାଳୁ ମହାଦେବଙ୍କ ପ୍ରିୟ ଫୁଲ ସବୁ ମନ୍ଦାର, ଚମ୍ପା, କନିୟର ଆଉ ଅକ୍ଷତ ବେଲପତ୍ର ସଂଗ୍ରହ କରିଥିଲା ଯତ୍ନର ସହିତ । ଶିଖାର ଅନୁରୋଧ ପୁଣି ନିର୍ଦ୍ଦେଶ ଅନୁସାରେ ସେ ଗାଁ ସାଇ, ବଣ-ଜଙ୍ଗଲକୁ ବାରମ୍ବାର ଧାଇଁଯାଇ ଅରୁଆଚାଉଳ, ଦୁଧ, ଦହି, ଘିଅ, ଧାନ, ଫଳ-ମୂଳ ସବୁ କିଛି ଯୋଗାଡ଼ କରି ଆଣିଲା । କ୍ଳାନ୍ତି ନାହିଁ କି ଅଭିଯୋଗ ନାହିଁ । ପବନାର ଆନୁଗତ୍ୟରେ ଭରି ଉଠିଥିଲା ଶିଖାର ମନ ।

ସମସ୍ତଙ୍କ ଖେଚଡ଼ି ଭୋଗ ଦେଉ ଦେଉ ବିଶ୍ୱମୋହନବାବୁଙ୍କୁ କହିଥିଲା ଶିଖା, ଦେଖୁଛ ପବନାକୁ ?

କାହିଁକି, କ'ଣ ହେଲା ?

ଭାରି କାମିକା ପିଲାଟି ।

ସେ କଥା ତ ମୁଁ ଦେଖୁଚି ।

ଟିକିଏ ବୋଲି ଲୋଭ ନାହିଁ, ଧୀରେ ଧୀରେ କହିଲେ ଶିଖା । ପିଲାଟିର ସ୍ୱଭାବ ବିଶ୍ୱମୋହନବାବୁଙ୍କୁ ଛୁଇଁଚି । ଶିଖା ମୁହଁରୁ ତା'ର ପ୍ରଶଂସା ଶୁଣି ସେ ହସିଲେ । ପ୍ରକୃତ

ମନ କଥା ଏଥର ଖୋଲି କହିଲେ ଶିଖା, ପବନାକୁ ସାଙ୍ଗରେ ନେଇଗଲେ କେମିତି ହୁଅନ୍ତା ? କାମଦାମ କରନ୍ତା, ଆମ ଘରେ ରହନ୍ତା । ଶିଖାର ପ୍ରସ୍ତାବ ଶୁଣି ବେଶ୍ ଲାଜେଇ ଯାଇଥିଲା ପବନା ।

ବିଶ୍ୱମୋହନବାବୁ ଜାଣିଛନ୍ତି, ମାତୃସ୍ନେହାଭିଳାଷୀ ପବନାର ଆନୁଗତ୍ୟ ଶିଖାକୁ ମୁଗ୍ଧ କରିଚି ।

କିରେ ପବନା, ଯିବୁ ? ମା'ଙ୍କ ପାଖରେ ରହିବୁ ? ହସି ହସି ପଚାରି ଦେଇଥିଲେ ବିଶ୍ୱମୋହନ ।

କିଛି ଉତ୍ତର ଦେଇ ନଥିଲା ପବନା । ହାତ ଧୋଇବା ବାହାନାରେ ଖାଉଥିବା କଦଳୀପତ୍ର ଧରି ଧୀରେ ଧୀରେ ଚାଲିଗଲା ନଈଆଡ଼କୁ । ଲାଜମିଶା ସଙ୍କୋଚରେ ଆଡ଼େଇ ଗଲା । ତାର ଏଇ ସହଜ ସରଳ ବିନମ୍ର ଆଚରଣରେ ମୁଗ୍ଧ ହେଲେ ବିଶ୍ୱମୋହନବାବୁ ।

ଅସ୍ତଗାମୀ ସୂର୍ଯ୍ୟର ଆରକ୍ତିମ ଆଭାରେ ବଣ, ଆକାଶ, ପାହାଡ଼, ନଦୀ ଚମତ୍କାର ଦିଶୁଥାଏ । ଫେରିବାର ଆୟୋଜନ ଚାଲିଥାଏ । ଜିନିଷପତ୍ର ନେଇ କାର୍‌ରେ ରଖୁଥାଏ ପବନା । ବଙ୍ଗଳା ପିଣ୍ଡାରେ ବସିଥାଏ ଘନଶ୍ୟାମ ।

ଶିଖା ନିତାନ୍ତ ବାଧକଲା ଘନଶ୍ୟାମକୁ ପଚାରିବା ପାଇଁ ।

ତମ ମା' କଣ କହୁଛନ୍ତି ଘନଶ୍ୟାମ, ଶୁଣିଲଣି । କହିଲେ, ବିଶ୍ୱମୋହନ ।

କ'ଣ ଆଜ୍ଞା ? ପଚାରିଲା ଘନଶ୍ୟାମ ।

ତୋ' ପୁଅ ପବନା କଥା, କାମିକା ପିଲାଟିଏ । ମା'ଙ୍କ ପାଖରେ ରହନ୍ତା । ତୁ ମଧ କିଛି ଟଙ୍କା..... ।

ଆଜ୍ଞା ?

କେବଳ ବିଶ୍ୱମୋହନ ନୁହଁନ୍ତି, ଶିଖା ବି ଚମକି ଉଠିଲେ । ଦୁହେଁ ଚାହିଁଲେ ଘନଶ୍ୟାମକୁ । ତା' ମୁହଁରେ ପଡ଼ିଥିଲା ଢ଼ଳି ଯାଉଥିବା ସୂର୍ଯ୍ୟର ସୁନେଲି କିରଣର କରୁଣ ଆଭା । ବିଶ୍ୱମୋହନବାବୁ କହୁ କହୁ ଅଧାବାଟରେ ଅଟକିଗଲେ । ଉଭୟେ ଚାହିଁଲେ ତା' ମୁହଁକୁ, ଠିକ୍ ଜଣେ ବିଚାରକର ମୁହଁରୁ ରାୟ ଶୁଣିଲା ପରି ।

ଆପଣମାନେ ବଟେଶ୍ୱର ମହାଦେବଙ୍କ ଦେଉଳକୁ ଆସିଥିଲେ । ପୂଜା କାମ ବଢ଼ିଗଲା । ଆପଣମାନେ ଚାଲିଯିବେ । ହେଲେ, କାଲି ରାତିଠୁଁ ମୁଁ ସେଇକଥା ଭାବୁଛି । ଜଳଭରା ମେଘ ଭଳି ଘନଶ୍ୟାମର କଣ୍ଠସ୍ୱର ଗମ୍ଭୀର ଆଉ ଭାରାକ୍ରାନ୍ତ । ସେମାନେ

ଉଭୟେ ବୁଝିପାରିଲେ, ଘନଶ୍ୟାମ ନିଜ ଭିତରେ ଭୟଙ୍କର ସଂଗ୍ରାମ କରୁଛି । ମନକଥା ପ୍ରକାଶ କରିବା ପାଇଁ ଭାଷା ଖୋଜି ପାଉନି ।

ବଟେଶ୍ୱର ଠାକୁରଠି ଆପଣମାନଙ୍କ ଯେଉଁଥିପାଇଁ ଅଳି, ସେ ଅଳି ତ ଠାକୁରେ ପୂରଣ କରି ଦେଇଛନ୍ତି, ଅନେକ ଦିନୁ ।

ମେଘହୀନ ଆକାଶରୁ ବଜ୍ରପାତ ହେଉଥିଲେ ମଧ ଏମିତି ବିସ୍ମୟ ସୃଷ୍ଟି ହୋଇନଥାନ୍ତା ସେମାନଙ୍କ ମନରେ । ଘନଶ୍ୟାମ କହୁଥିଲା, ହେଲେ ଶିଖା ଆଉ ବିଶ୍ୱମୋହନବାବୁଙ୍କୁ ମନେ ହେଉଥିଲା, ଏକ ଅପରିଚିତ କଣ୍ଠସ୍ୱର ଭାସି ଆସୁଥିଲା କେଉଁ ଏକ ଅଦୃଶ୍ୟ ଦୂର ସ୍ଥାନରୁ ।

ହଁ ଆଜ୍ଞା, ଆପଣମାନଙ୍କ ସାଇତା ଧନ, ଏଯାଏ ମୋଠି ରହିଚି । ହେଲେ ସେ ଆପଣମାନଙ୍କର । ମୋର ନୁହେଁ । ସେଦିନ ସେଇ ଝଡ଼ ବର୍ଷା ରାତିରେ... ।

ଘନଶ୍ୟାମ ! ତୀବ୍ର ଉତ୍ତେଜନାରେ ଚିତ୍କାର କରି ଉଠିଲେ ଉଭୟେ । ଦିହିଁଙ୍କ ଆଖି ଆଗରେ ଭାସି ଉଠିଲା ଉଣେଇଶ ବର୍ଷ ତଳର ସେଇ ଝଡ଼ି-ବର୍ଷା ରାତ୍ରିର ଭୟାବହ ବେଦନାମୟ କରୁଣ ଦୃଶ୍ୟ ।

ବିଶ୍ୱମୋହନ ଚାହିଁଲେ ସେଇ ଆମ୍ବ ଗଛଟିକୁ, ଯାହା ମୂଳରେ ସେଇ ମାଂସ ପିଣ୍ଡୁଳାକୁ ପୋତି ଦେବା ପାଇଁ ସେ ନିର୍ଦ୍ଦେଶ ଦେଇଥିଲେ । ସେଇ ଟାରାଗଛଟି ଫଳ ଭାରରେ ଆନତ ହୋଇଯାଇଚି ।

ହଁ ଆଜ୍ଞା, ସେଇ ଝଡ଼-ବର୍ଷା ରାତିରେ ଯାହାକୁ ଟେକିଦେଇଥିଲେ ମୋ ହାତକୁ ସିଏ ଏଇ ପବନା । ହଁ ମା, ଆପଣମାନଙ୍କ ହଜିଲା ଧନକୁ ଆପଣମାନେ ନେଇଯିବେ, ସେଥିରେ ମୋର ଆଉ କହିବାର କଣ ଅଛି ? ମରିଯାଉଥିବା ଖରାରେ ଦିଶିଲା, ତା' ଆଖିରେ ଚକ୍ ଚକ୍ କରୁଥିଲା ଲୁହଧାର ।

ହେଲେ, କି' ଏକ ଦୂରନ୍ତ ଆଶାର ଆଲୁଅରେ ଉଜ୍ଜ୍ୱଳ ହୋଇ ଉଠିଥିଲା ଶିଖାର ମୁଖଶ୍ରୀ । ଗଭୀର ଆଗ୍ରହ ନେଇ ସେ ଆଗେଇ ଯାଇଥିଲା ପବନା ପାଖକୁ । ଭୟଙ୍କର ଲୋଭାନ୍ୱିତ ହୋଇ ଉଠିଥିଲା ତାର ମାତୃପ୍ରାଣ । ତାକୁ ଟାଣିନେବ ତା'ର ତୃଷିତ ଛାତି ଉପରକୁ । କିନ୍ତୁ ହେଲା କ'ଣ ? ଅଧାବାଟରେ ସେ ଅଟକି ଗଲା- ମରୁପଥରେ ନଈ ହଜିଗଲା ପରି । ପବନାର ମୁହଁକୁ ଚାହିଁ, ସେ ଆଉ ଆଗେଇ ପାରିଲେ ନାହିଁ ।

ନାହିଁମା, ନାହିଁ । ବା' ସତ କହୁନି । ସେ କଞ୍ଚା ମିଛ କହୁଚି । ଏକ ନାଟକୀୟ ଢଙ୍ଗରେ ଚିତ୍କାର କରି ଉଠିଲା ପବନା । ୟେ ପବନାର ଏକ ସମ୍ପୂର୍ଣ୍ଣ ଭିନ୍ନ ରୂପ ।

ହଁ ହଁ, ବା ମିଛ କହୁଚି । ଆପଣମାନଙ୍କ ଧନ-ଦଉଲତ କଥା ଶୁଣି ସେ ଭାବୁଚି, ତା' ପୁଅ ସୁଖରେ ରହିବ । ତାକୁ ହୋଟେଲରେ ଅଇଁଠା ଧୋଇବାକୁ ପଡ଼ିବନି । ସେଥିପାଇଁ...

ପବନା କଥାରେ ଦାଉଁକିନା ଜଳି ଉଠିଲା ଘନଶ୍ୟାମ ।

କ'ଣ କହିଲୁ, ମୁଁ ପଇସା ଲୋଭରେ ମିଛି କହୁଚି ? ସେ ଉଠି ଆଗେଇ ଆସିଲା ବିଶ୍ୱମୋହନ ପାଖକୁ । ତାଙ୍କ ହାତକୁ ଟେକିଦେଲା ଗୁଡାଏ ପୁରୁଣାନୋଟ ଆଉ ଖଣ୍ଡିଏ ମେରୁନ ରଙ୍ଗର ପୁରୁଣା ବ୍ଲାଉଜ୍‌ଟିଏ ।

ଏଇ ନିଅ ବାବୁ, ଯେଉଥିପାଇଁ ଯେ ଟଙ୍କା ଦେଇଥିଲ, ମୁଁ ସେ କାମ କରି ପାରିନି । ମୋର ଦୋଷ ହେଇଚି, କ୍ଷମା କରିଦେ । ମୁଁ... । ତା'ର କଣ୍ଠ ରୁଦ୍ଧ ହୋଇଗଲା ।

ହେଲେ ଉଜ୍ଜ୍ୱଳ ହୋଇ ଉଠିଲା ଶିଖାର ଆଖି ଯୋଡ଼ିକ । ସ୍ନେହ ବିଗଳିତ କଣ୍ଠରେ ସେ ଡାକିଲା: ଆରେ ପବନା !

କିନ୍ତୁ ଶିଖାର ସ୍ପର୍ଶକୁ ଏଡ଼େଇ ଦୂରେଇଗଲା ପବନା । ଚିତ୍କାର କରି ଉଠି କହିଲା, ନା ନା ମୋ ବୋଉକୁ ମୋର ଭଲକି ମନେଅଛି । ତା' ରୂପ ମୋ' ଆଖି ଆଗରେ ଭାସି ଯାଉଚି । ସେଦିନ ଗୋଟିଏ ଦୁର୍ଘଟଣାରେ ତାର ଜୀବନ ଚାଲିଗଲା । ସେ ଜୀଇଁଥିଲେ ବା କ'ଣ ଏଡ଼େ ବଡ଼ ମିଛ କହିଥାନ୍ତା ? ବୋଉ ଚାଲିଗଲା, ହେଲେ ଏଇ ମୋ' ବା । ତାକୁ ଛାଡ଼ି ଦେଇ ମୁଁ କୁଆଡ଼କୁ ଯିବିନି । ସିଏ ମୋ ବୋଉ, ମୋ ବାପା ।

ଅଶ୍ରୁଳ କଣ୍ଠରେ ଶିଖା ପୁଣି ଡାକିଲା, ଆରେ ପବନା !

ବଟେଶ୍ୱର ମହାପ୍ରଭୁ ଚାହିଁଲେ ତମ ମନର ଆଶା ମେଣ୍ଟିଯିବ ମା । ତମେ କାହିଁକି ଏଇ ପର ପିଲାପାଇଁ ମିଛଟାରେ ଲୁହ ଢାଳୁଚ ? ଏତକ କହି, ଦୂରେଇ ଗଲା ପବନା ।

ବିଶ୍ୱମୋହନବାବୁଙ୍କର ମନେହେଲା, ଅଭିମାନୀ ପବନା ଭିତରେ ଆହୁରି ଅନେକ ଅଭିଯୋଗ ପୁଞ୍ଜିଭୂତ ହୋଇ ରହିଚି, ଯାହା ସେ ନିଜ ଭାଷାରେ ପ୍ରକାଶ କରିବାକୁ ଅକ୍ଷମ । ସେ ହୁଏତ କହିବାକୁ ଚାହୁଁଛି — ଯାହାକୁ ଦିନେ ଲୋକଲଜ୍ଜା, ଘୃଣା, ଅବହେଳା, ଅବଜ୍ଞାରେ ମାତୃସ୍ନେହର ଅଧିକାରରୁ ବଞ୍ଚିତ କରି ନିଷ୍ଠୁର ମୃତ୍ୟୁ ମୁଖକୁ ଫିଙ୍ଗି ଦେଇଥିଲ ତା'ପାଇଁ ଆଉ କାହିଁକି ହାତ ବଢ଼ାଇଚ ? ହେତୁ ହେଲାଦିନୁ ଯାହାକୁ ତାର ବୋଉ ବୋଲି ଜାଣିଚି, ଯାହାକୁ ତା'ର ବାପ ବୋଲି ଜାଣିଚି, ସେମାନେ ଯେତେ ଦୀନ-ହୀନ ହେଲେ ବି ସେମାନେ ତା'ର ମା-ବାପ !

ମନର ଭାରସାମ୍ୟ ସମ୍ପୂର୍ଣ୍ଣରୂପେ ବିପର୍ଯ୍ୟସ୍ତ ହୋଇଯିବାର ଅନୁଭବ କଲେ ବିଶ୍ୱମୋହନ । ହତାଶାର ଦୀର୍ଘଶ୍ୱାସକୁ ସମ୍ଭାଳକରି କୌଣସି ପ୍ରକାରେ ଶିଖାକୁ ନେଇ

ଗାଡ଼ିରେ ଷ୍ଟାର୍ଟ ଦେବାକୁ ପ୍ରୟାସ କଲେ ସେ । ନିଜ କୈଶୋରର ଏକଜିଦିଆ ସ୍ୱଭାବ ପବନା ଭିତରେ ଫୁଟି ଉଠୁଥିବାର ସେ ବେଶ୍ ଅନୁଭବ କରିପାରିଲେ । ଯେଉଁ ମା ଗର୍ଭଯନ୍ତ୍ରଣା ସହି ତାକୁ ଦିନେ ଜନ୍ମ ଦେଇଥିଲା ସେ ସେଇ ଶିଖାର କୋଳକୁ ଭ୍ରୂକ୍ଷେପ କରିବାକୁ ଚାହେଁନା । ସେଦିନ ଥିଲା ବୈଶାଖ ପୂର୍ଣ୍ଣମୀର ନିର୍ମଳ ସନ୍ଧ୍ୟା । ପ୍ରକୃତିରେ ନଥିଲା ଝଡ଼-ବତାସର କ୍ଷୀଣତମ ସୂଚନା । ହେଲେ, ଭୟଙ୍କର ଝଡ଼ର ଆଘାତରେ ଶିଖା ଆଉ ତାଙ୍କର ବକ୍ଷସ୍ଥଳ ଜୀର୍ଣ୍ଣ ବିଦୀର୍ଣ୍ଣ ହୋଇ ଯାଉଥିଲା । ସବୁ ରଙ୍ଗ ସବୁ ରୂପ କୁତ୍ସିତ ମନେ ହେଉଥିଲା । ବିବର୍ଣ୍ଣ ଦିଶୁଥିଲା ସମଗ୍ର ପୃଥିବୀ ।



# ହୃଦୟ

ଚେତା ଫେରିପାଇଲେ ମହାପାତ୍ରେ । ଢ଼ଳିଯାଉଥିବା ସୂର୍ଯ୍ୟର ମଉଳା ଆଲୋକରେ ସେ ଦେଖିଲେ ତାଙ୍କ ମୁଣ୍ଡ ପାଖରେ ବସିଛନ୍ତି ଅନୁ ବୋଉ । ମୁହଁରେ ଉଦ୍‌ବେଗର ନିସ୍ପନ୍ଦତାର କାଳିମା । ସାମନାରେ ଅପେକ୍ଷା କରି ରହିଛି ଧଳା ପୋଷାକରେ ଜଣେ ନର୍ସ । ଡାକ୍ତରଖାନାରେ ନିଜକୁ ଆବିଷ୍କାର କରି ବିସ୍ମୟରେ ମହାପାତ୍ରେ ଚାହିଁଲେ ଅନୁବୋଉଙ୍କୁ । ଶେଯରେ ଉଠିବାକୁ ଚେଷ୍ଟା କରି ପଚାରିଲେ, ହସ୍ପିଟାଲରେ କାହିଁକି ? ଉଠିବାକୁ ବାରଣ କଲେ ଅନୁବୋଉ । ମୁଣ୍ଡରେ ଆଗପରି ହାତ ବୁଲେଇବାକୁ ଲାଗିଲେ । ମନେପଡ଼ିଲା ମହାପାତ୍ରଙ୍କର । ଅନେକ ଦିନ ପରେ ଅନୁବୋଉଙ୍କ ହାତରୁ ସେ ଅନୁଭବ କରୁଛନ୍ତି ମମତାମଧୁର ସେବାର ସ୍ପର୍ଶ । ତୃପ୍ତିରେ ସେ ଆଖି ବୁଜିଦେଲେ । ନର୍ସଟି ମଧ୍ୟ ପାଖକୁ ଆସି କଅଁଳେଇ କହିଲେ, ଆପଣ ଦୟାକରି ଉଠିବେ ନାହିଁ । କଥା କହନ୍ତୁ ନାହିଁ, ମୁଁ ଡାକ୍ତରଙ୍କୁ ଖବର ଦେଉଛି ।

ମହାପାତ୍ରେ ବୁଝିଲେ, ତାଙ୍କର ପରିସ୍ଥିତି ଗୁରୁତର । ଅନୁବୋଉଙ୍କ ଆଙ୍ଗୁଳିର କଅଁଳ ସ୍ପର୍ଶ ମଥାରେ ଅନୁଭବ କରୁ କରୁ ସେ ମନେପକେଇବାକୁ ଚେଷ୍ଟା କଲେ । ଧୀରେ ଧୀରେ ମନେପଡ଼ିଲା, ଘରେ କାଗଜିଲେମ୍ବୁର ଦରକାର ଥିଲା । ସେଦିନ ଝିଅ ଘରେ ଥିଲା ଶୋଭନା । ତା'ର ବନ୍ଧୁ ହରଭାଇନା ଜଣେ ଉଦୀୟମାନ ଯୁବ ଶିଳ୍ପୀ । ସେ କିନ୍ତୁ ଏ ଯୁଗର ଚା, କଫି କିମ୍ବା ଆଇସକ୍ରିମ୍‌ର ଭକ୍ତ ନୁହେଁ । ତା ପାଇଁ ଲୋଭନୀୟ ଥିଲା ଦହି ଆଉ ଲେମ୍ବୁର ସରବତ୍ । ଘରେ ଫ୍ରିଜ୍‌ରେ ଦହି ଥିଲା, କିନ୍ତୁ ଲେମ୍ବୁ ସରିଯାଇଥିଲା ।

ବିରକ୍ତ ହୋଇ ଅଭିଯୋଗ କରୁଥିଲେ ଅନୁବୋଉ, ତୁମକୁ କେତେଥର କହିଛି କିଛି ଲେମ୍ବୁ ଆଣିବ । ଖରାଦିନ, କେତେବେଳେ କାହାର ଦରକାର । ଠିକ୍ ସେତିକିବେଳେ ଡ୍ରଇଙ୍ଗ ରୁମ୍‌ରେ ବନ୍ଧୁମାନଙ୍କୁ ଛାଡ଼ି ଚାପା ଗଳାରେ ଝିଅ ଶୋଭନା କହିଲା, କ'ଣ ହେଲା ବୋଉ, ହରଭାଇନାଙ୍କ ପାଇଁ ଦହି ସରବତ୍ ପଠେଇଲୁ ? ତୁ ତ ଜାଣିଛୁ ଚା, କଫି, ସ୍କ୍ୱାସ୍ କିଛି ପିଇବେ ନାହିଁ । ବୋଉ କହିଲେ, ଆଲୋ ଶୁଭ୍ର, ଘରେ ଦହି ଅଛି, ହେଲେ ଲେମ୍ବୁ ମୋଟେ ନାହିଁ । କ'ଣ କରିବା ତୁ କହ । ଏକଥା ନ ଶୁଣୁଣୁ ବାଣପରି ଫାଟି ଉଠିଲା ଶୋଭନା । କହିଲା, ମୁଁ ଜାଣିଛି ପରା ! ଏଇନେ ଅରୁଅପା କିମ୍ବା ବରୁଣଭାଇଙ୍କ ପାଇଁ ହେଇଥିଲେ ଘରେ ସମସ୍ତେ ବ୍ୟସ୍ତ ହେଇପଡ଼ନ୍ତେ । ହରଭାଇନାଙ୍କ କଥା କେହି ପଚାରୁନାହାନ୍ତି । ତମେ କ'ଣ ବିଚାରିଚ, ପ୍ରେଷ୍ଟିଜ୍ ବୋଲି ମୋର କିଛି ନାହିଁ ?

ଡ୍ରଇଙ୍ଗ ରୁମ୍‌ରେ ଜମା ହୋଇଥିଲେ ବିଶିଷ୍ଟ ଅତିଥିମାନେ । ସେମାନଙ୍କ ଲଞ୍ଚ୍ ପାଇଁ ଅନୁବୋଉଙ୍କୁ କିଚେନ୍‌ରେ ଝାଳନାଳ ହେଇ ସାହାଯ୍ୟ କରୁଥିଲେ ମିଃ ମହାପାତ୍ରେ । କୋଡ଼ପୋଛା ଝିଅଟିଏ ଶୋଭନା । ତାକୁ ସାନ୍ତ୍ୱନା ଦେଇ କହିଲେ, ତୁ ବ୍ୟସ୍ତ ହେଉଛୁ କାହିଁକି ମା ? ଏବେନେ ଯାଉଛି ମୁଁ ମାର୍କେଟ୍‌ରୁ ଲେମ୍ବୁ ଆଣିବି । ଏଇ ଗଲି ଆଉ ଆଇଲି ଜାଣିଥା । କିଚେନ୍‌ରେ ଜୁଗା ପାଲଟି ସାଇକେଲ ଖଣ୍ଡିକ ଧରି ମେ' ମାସର ଉଦ୍ଭୁଉଦିଆ ଖରାରେ ବାହାରିପଡ଼ିଲେ ମହାପାତ୍ରେ । ଡ୍ରଇଂ ରୁମ୍ ଭିତର ଦେଇ ସେ ଯାଇପାରିଥାନ୍ତେ, କିନ୍ତୁ ଗଲେ ନାହିଁ । ପୁଅ-ଝିଅଙ୍କ ଗହଳି । ଏଇତ ସେଦିନ ଯେଉଁ ଶିକ୍ଷା ସେ ପାଇଛନ୍ତି ଭୁଲିବାର ନୁହେଁ । ଆଜିକାପରି ସେଦିନ ମଧ ତାଙ୍କର ତିନି ଝିଅ ବନ୍ଧୁମାନଙ୍କ ଗହଣରେ ଭିଡ଼ିଓ ଉପଭୋଗ କରୁଥିଲେ । ଡ୍ରଇଂରୁମ୍‌ର ଆଲମାରୀରୁ ତାଙ୍କର ଡାଏରୀଖଣ୍ଡକ ଆଣିବା ପାଇଁ ପଶିଗଲେ । ବେଶ୍ ମନେଅଛି, ମିଡ଼, ମ୍ୟାକ୍‌ସୀ, ସାଲୁଆର ପଞ୍ଜାବୀ ସାଙ୍ଗକୁ ପେଣ୍ଟ ହାଓାଇନ୍ ପେଷ୍ଟାପେଷ୍ଟି ଦେଖି ସେ ନିଜେ ଅଣନିଃଶ୍ୱାସୀଆ ହେଇପଡ଼ିଥିଲେ । ଡାଏରୀ ଆଣିବେ କଣ, ଡାଏରୀ କଥା ପାସୋରି ଯାଇ ସେ ଡ୍ରଇଂ ରୁମ୍‌ରୁ ପଳେଇ ଆସିଲେ ପ୍ରାଣବିକଳରେ । ସେଦିନ ସଞ୍ଜକୁ ଅନୁବୋଉଙ୍କ ଯେଉଁ ଜେରା । ନୂଆକରି ଚେତା ପଶିଲା । ଶ୍ରୀମତୀ କହିଲେ, ହଇହୋ, ତୁମର ଅକଲ ହେବ କେବେ ? ଆକସ୍ମିକ ଆକ୍ରମଣର ଶିକାର ହେଇ ସେ ଚାହିଁଥିଲେ ଅନୁବୋଉଙ୍କ ଝାଳସରସର ମୁହଁକୁ । ମୁହଁ ଛିଞ୍ଚାଡ଼ି ମାଡ଼ି ଆସିଲେ ଶ୍ରୀମତୀ, ମୋ ମୁହଁକୁ ଏମିତି ଚାହିଁଛ, କ'ଣ ମୋତେ ପହିଲି ଦେଖୁଛ ? ପିଲାମାନେ ବସିଥିଲା ବେଳେ ଡ୍ରଇଂ ରୁମ୍‌କୁ ତୁମର ଯିବାର କ'ଣ ଦରକାର ଥିଲା ? ସେଇ ଛିଣ୍ଡା ପ୍ୟାଣ୍ଟ ଆଉ ସିଲେଇ ହେଇଥିବା ସାର୍ଟ ଖଣ୍ଡକ ପିନ୍ଧି କେମିତି ପଶିଯାଇଥିଲ ଡ୍ରଇଂରୁମ୍ ଭିତରକୁ ? ତୁମ ଝିଅମାନଙ୍କର ପ୍ରେଷ୍ଟିଜ୍ ତୁମେ ଦେଖିଲ ନାହିଁ ?

ସେଦିନ ମହାପାତ୍ରେ ଡ୍ରଇଂରୁମ୍ ଭିତରକୁ ପଶିଯାଇ ଦିନ ଦି'ପହରେ ମିଡ଼ି-ମ୍ୟାକ୍‌ସୀ ଆଉ ପେଣ୍ଟ-ସାର୍ଟର ଯେଉଁ ରୋମାଣ୍ଟିକ ପେଷାପେଷି ଦେଖିଥିଲେ ସେକଥା ଆଉ ଅନୁବୋଉଙ୍କୁ କହିବେ କ'ଣ ? ନିଜର ଭୁଲ ମାନି ଚୁପ୍ ରହିବା କଥା । ଭାବିଲେ, ସତକଥା, ଏଭଳି ଦୟନୀୟ ଡ୍ରେସ୍ ପିନ୍ଧି ସେମାନଙ୍କ ଆଗକୁ ଗଲେ ଝିଅମାନଙ୍କ ପ୍ରେଷ୍ଟିଜ୍‌ରେ ଆଞ୍ଚ ଲାଗିବ । କିନ୍ତୁ ମହାପାତ୍ରଙ୍କ ଝିଅମାନେ ଯେତେବେଳେ ନିଜର ଡ୍ରେସ୍ ଖରିଦ କରନ୍ତି, ବାପା ବୋଉଙ୍କ ଲୁଗାପଟା ବିଷୟରେ ଥରେ ଚିନ୍ତା କରନ୍ତି କି ? ବରଂ ସେମାନଙ୍କ ସାଙ୍ଗମାନଙ୍କ ଡ୍ରେସ୍ ଭଳି ଡ୍ରେସ୍ ନହେଇ ପାରିଲେ ଘରେ ଦକ୍ଷଯଜ୍ଞ ହେଇଯାଏ ।

ମହାପାତ୍ରେ ବିଚାରନ୍ତି, ସେମାନଙ୍କର ଦୁନିଆ ସ୍ୱତନ୍ତ୍ର । ସେଠି ହୁଏତ ଖେଳୁଛି ସାତ ରଙ୍ଗର ଇନ୍ଦ୍ରଧନୁ । ସେମାନଙ୍କର ରଙ୍ଗିନ୍ ସ୍ୱପ୍ନର ସୁନେଲି ଜଗତର କେନ୍ଦ୍ର କିମ୍ବା ପରିଧିର ଠିକଣା ମହାପାତ୍ରଙ୍କୁ ଜଣାନାହିଁ । ସେମାନଙ୍କ ଜଗତରେ ସେ ନିଜେ ଗୋଟିଏ ଅଡଡ ବୋ'ଅଣା ।

ମହାପାତ୍ରେ ତାଙ୍କର ପୁରୁଣା ସାଇକେଲରେ ମାଡ଼ି ଚାଲିଥିଲେ ହାଟଆଡ଼କୁ । ମୁଣ୍ଡ ଉପରେ ନିଆଁଭଳି ଖରା ତାତି । ପୁଅ ଆଉ ଝିଅମାନଙ୍କ ମୁହଁ ଭାସି ଉଠିଲା ତାଙ୍କ ଆଖିଆଗରେ । ତାଙ୍କର ଚାରି ଝିଅ, ଗୋଟିଏ ପୁଅ । ସରକାରୀ ଚାକିରୀରେ ଥାଉଁ ଥାଉଁ ବଡ଼ ଝିଅ ଅନୁପମାକୁ ଉଠେଇ ଦେଇଥିଲେ । ସେ ଅଲଗା ଧରଣର ଝିଅ । ଏ ତିନିଜଣଙ୍କ ଭଳି ନୁହେଁ । ନନା ବୋଉଙ୍କ କଥା ଅନୁସାରେ ସେ ଯାଇ ବସିଥିଲା ବାହା ବେଦୀରେ । ଠିକ୍ ତା' ପରେ ପରେ ଅବସର ନେଲେ ମହାପାତ୍ର ସାହେବ । ଗୋଟିଏ ଝିଅକୁ ଉଠେଇ ଅଣ୍ଟା ନଇଁପଡ଼ିଛି । ଆଉରି ତିନୋଟି ଝିଅ । ନିକଟ ଭବିଷ୍ୟତରେ କାହାରି ବାହାଘର ଦେଇ ପାରିବେ ଏ ବିଶ୍ୱାସ ତାଙ୍କର ନାହିଁ । ଏ ନିଆଁଗିଳା ଯୁଗ ସାଙ୍ଗରେ ତାଳ ଦେଇ ଚାଲିବା ତାଙ୍କ ପକ୍ଷରେ କଠିନ ବ୍ୟାପାର । ଏଇଟା ଅତ୍ୟାଧୁନିକ ଯୁଗ । ସେ ସିନା ଜନ୍ମ ଦେଇଛନ୍ତି । ମୁଣ୍ଡ ଗୁଞ୍ଜିବାକୁ ଘରଦ୍ୱାର ନ କରି ଇଂଲିଶ୍ ମିଡ଼ିୟମ୍ ସ୍କୁଲରେ ପାଠ ପଢ଼େଇଚନ୍ତି । କିନ୍ତୁ ସେମାନଙ୍କ ମନ ମିଜାଜ୍ ବୁଝିବା ସମ୍ଭବ ନୁହେଁ । ଅନୁ ପରେ ପୁଅ ସୁମନ । ସୁମନ ଭଳି ପୁଅଟିଏ ଘରେ ଥିଲେ ଏଇ ଖରା ଦି'ପହରେ ଲେମ୍ବୁ କିଣିବା ପାଇଁ ନିଜକୁ ଆସିବାକୁ ପଡ଼ିନଥାନ୍ତା । କିନ୍ତୁ ମହାପାତ୍ରଙ୍କର ଦୁର୍ଭାଗ୍ୟ । ଅବସର ନେଇଥିବା କମିଶନର ସାହେବଙ୍କ ପୁଅ । ସେ ପୁଣି ଥଳି ଧରି ବଜାରକୁ ଗଲେ ପ୍ରେଷ୍ଟିଜ୍ ରହିବ ? ସେ ଜଣେ ଏଡ୍‌ଭୋକେଟ୍ । ତଥାପି ମନେହୁଏ ବାପର ଗୁଣରୁ ଦି'ଅଣା ତା ଭିତରେ ରହିଯାଇଚି । ଭଉଣିମାନଙ୍କର ବୟଫ୍ରେଣ୍ଡମାନେ ବେଳ ନାହିଁ, ଅବେଳ ନାହିଁ, ଘରେ ଆଡ୍‌ଡ଼ା ଜମେଇବେ ଏଇଟା ସୁମନର ଦେହକୁ ସହିଲା ନାହିଁ । ଏଣୁ ସେ ଘରେ ରହିବାକୁ ପସନ୍ଦ କଲାନି । ହାଇକୋର୍ଟରେ ପ୍ରାକ୍ଟିଶ୍ କରିବା ଆଳରେ କଟକରେ ବସା ନେଇଚି । ଇନ୍ଦିରା ଗାନ୍ଧି ପ୍ରଧାନମନ୍ତ୍ରୀ ହେଲା ଦିନରୁ ମହାପାତ୍ରଙ୍କ ଘରେ ଝିଅମାନଙ୍କ ମର୍ଜି ବିରୁଦ୍ଧରେ ଯିବାକୁ କାହାରି କ୍ଷମତା ନାହିଁ । ପୁଣି ସେମାନେ କେତେନାହିଁ କେତେ ପାଠ ପଢ଼ିଛନ୍ତି । ତାଙ୍କ ମନମିଜାଜ୍ ବୁଝିବା ଭାରି କଠିନ ବ୍ୟାପାର । ସେମାନଙ୍କ ମନର ଗଭୀର କୋଣରେ ଆଲୋକପାତ କରିବା ସମ୍ଭବ ନୁହେଁ । ଘରେ କାହାରି କଥା ପକେଇବାକୁ ଡର ମାଡ଼େ । ପାତ୍ର ହିସାବରେ କୌଣସି ପିଲାର ନାଁ ଘରେ ପକେଇଲେ ଆଉ ରକ୍ଷା ନାହିଁ । ସବୁ ଭଉଣୀ ମିଳି ଯେଉଁ କଟୁ ସମାଲୋଚନାର ଝଡ଼ ଉଠେଇବେ ସେଥିରେ ବାପର ମନ ଘର ଧରିଯିବ । ପାତ୍ରଟି ବିଷୟରେ କିଏ ମନ୍ତବ୍ୟ କରିବ, ଫାଷ୍ଟକ୍ଲାସ୍ ପାଇଲେ କ'ଣ ହେବ ସେତ କୋଉ ମଫସଲ ଗାଁର ଲେକ୍‌ଚରର୍ । ଡ଼ୋନେସନ ଦେଇ ଚାକିରୀ ଖଣ୍ଡକ ଖରିଦ୍ କରିଚି । ବୁଝିଲୁ ବୋଉ, ନନାଙ୍କର ଯୋଉ ଚୟେଶ୍ । ପୁଣି କିଏ କହିବ, କେନ୍‌ଡ଼ିଡ଼େଟ ବିଲାତ ଯାଇଚି । ହେଲେ ତା' ଚେହେରାଟା ଦେଖିଚ ? ହିନ୍ଦୀ ଫିଲିମ୍‌ର ଭିଲେନ ଯେମିତି । ଆର ଭଉଣୀ କହିବ, ଆରେ ତା ଚେହେରା କଥା ଚୁଲୀକି ଯାଉ । ତାର ଚରିତ୍ର କଥା ଯାହା ଶୁଣାଯାଏ । ପୁଣି କିଏ କହିବ, ଯାହାର ବାପ ଗୁଡ଼ାଖୁ ଫେକ୍‌ଟରୀର ମହାଜନ, ତା ପୁଅ ଆଉ କୋଉ ଗୁଣର ହେବ ? ଯା ପରେ ନନା ଆଉ ପାଟି ଫିଟେଇବେ କେମିତି ?

ହଁ, ଅରୁଣା ତାଙ୍କର ଦ୍ୱିତୀୟ ଝିଅ । ଅନୁପମା ଭଳି ରଙ୍ଗ ଟୋପା ଗୋରା ନହେଲେ ମଧ ବିବାହ ବଜାରରେ ଅଯୋଗ୍ୟ ନୁହେଁ । ହେଲେ ଆଶଙ୍କା, ଯେଉଁ ରୂପଟି ଏଯାଏଁ ରହିଚି, ବୟସ ଗଡ଼ିଗଲେ ସେ ଲାଳିତ୍ୟ ଟିକକ ରହିବ ନାହିଁ । ସେ ରାଜନୀତି ବିଜ୍ଞାନରେ ପ୍ରଥମ ଶ୍ରେଣୀ ପାଇ ପିଏଚ.ଡ଼ି କରି ଏବେ ପ୍ରସ୍ତୁତ ହେଉଚି ଆଇ.ଏ.ଏସ୍ ପରୀକ୍ଷା ପାଇଁ । ପୁଣି ଅରୁଣା ବିଷୟରେ କିଛି ଠିକ୍ ନହେଲା ଯାଏ କରୁଣା କଥାତ ଉଠୁନାହିଁ । ଅବଶ୍ୟ କରୁଣା ଦେଖିବାକୁ ଯେମିତି ସୁନ୍ଦରୀ ସେଥିରେ ଭଲ ପାତ୍ରଟିଏ ମିଳିବା କଷ୍ଟକର ହେବ ନାହିଁ । ସେତ ଅଧାପିକା ଆଉ ବ୍ୟାଙ୍କ ଚାକିରୀ ପାଇଁ ପରୀକ୍ଷା ଆଉ ଇଣ୍ଟେରଭିଉ ଦେବାରେ ଲାଗିଛି । ଆଉ ସବା ସାନ ଝିଅ ଶୋଭନା, ତା' ପାଇଁ ମହାପାତ୍ରଙ୍କର ଦୁଶ୍ଚିନ୍ତା କହିଲେ ନସରେ । ସବୁ ପୁଅ ଝିଅ ସ୍କଲାର୍ । ହେଲେ ଶୋଭନା ତିନି ବର୍ଷ ଚେଷ୍ଟା କରି ମଧ କଲେଜ ଶିଡ଼ି ମାଡ଼ି ପାରିଲା ନାହିଁ । ପାଠ କିମ୍ୱା ପରୀକ୍ଷା ନାଁ ଧଇଲେ ଜ୍ୱର ଆସିବ । କାହାରି କଥା ଶୁଣିବାକୁ ରାଜି ନୁହେଁ, ପୁଣି ଅଭିମାନ କହିଲେ ନସରେ । ତାର ଅଭିଯୋଗ, କେହି ତା କଥା ବୁଝନ୍ତି ନାହିଁ । ଭଉଣୀମାନଙ୍କ ତୁଳନାରେ ତାକୁ ସମସ୍ତେ ଅବଜ୍ଞା କରନ୍ତି, ଅବହେଳା କରନ୍ତି ।

ଆଜି ଡ୍ରଇଂ ରୁମ୍‌ରେ ସେମାନେ ବନ୍ଧୁମାନଙ୍କୁ ନେଇ ଭିଡ଼ିଓ ଦେଖୁଚନ୍ତି । ଅନୁବୋଉ ଚା, କଫି, ଜଳଖିଆ ଯୋଗେଇବାରେ ବ୍ୟସ୍ତ । ପୁଣି ଲଞ୍ଚ ପାଇଁ ବିରିଆନୀ, ଚିକେନ୍‌କରୀର ଆୟୋଜନ ଚାଲିଛି । ଅଭିମାନୀ ସାନ ଝିଅ ଶୋଭନାର ମନ ରଖିବାକୁ ଲେମ୍ବୁ କିଣିବା ପାଇଁ ଖରା ଦି'ପହରବେଳେ ସେ ବାହାରିଛନ୍ତି । ମନକୁମନ ଭାବୁଥିଲେ ମହାପାତ୍ରେ : ସରକାରୀ ଚାକିରିରୁ ଅବସର ନେଲା ପରେ ମଣିଷର ଭାବିବାକୁ କିଛି ନଥାଏ । କଳରେ ଆଖୁ ପେଡ଼ିଲା ଭଳି ମସ୍ତିଷର ଯାହା କିଛି ନିର୍ଯ୍ୟାସ ସରକାର ନେଇ ସାରିଥାନ୍ତି । ଏଣୁ ଏ ପରିସ୍ଥିତିରେ ଶ୍ରୀମଦଭଗବଦ୍ ଗୀତାର ଭଗବାନ ଶ୍ରୀକୃଷ୍ଣଙ୍କ ଶାଶ୍ୱତ ବାଣୀର ନିର୍ଦ୍ଦେଶ ଅନୁସାରେ ସ୍ଥିତପ୍ରଜ୍ଞ ହେବା ବିଧେୟ । ଦୀର୍ଘଦିନ ଗୀତା ଅଧ୍ୟୟନ କରି ମଧ ମହାପାତ୍ରେ ସ୍ଥିତପ୍ରଜ୍ଞ ହେଇ ପାରିଲେ ନାହିଁ । ଜୀବନ ସୂର୍ଯ୍ୟ ଢ଼ଳି ନଢ଼ଳିଲା ଭଳି ସେ ଏ ଦାରୁଣ ସଂସାରରେ ନିଷ୍କାମ କର୍ମ ଯୋଗର ମାହାତ୍ମ୍ୟ କେବଳ ଉପଲବ୍ଧି କରିବାକୁ ଚେଷ୍ଟା କରୁଚନ୍ତି । ତା ନହେଲେ ଏ ଜଳନ୍ତା ଖରାରେ ସେ ବାହାରିପଡ଼ି ନଥାନ୍ତେ ।

ହଠାତ୍ ତାଙ୍କର ନଜର ପଡ଼ିଗଲା ସେଇ ଲୋକଟି ଉପରେ । ଅଶୁଭ ଦୃଶ୍ୟ ଦେଖିଲା ଭଳି ସୁରକୁ ଦେଖି ସେ ଚମକି ଉଠିଲେ । ସୁର ଏକଦା ପିଅନ ଥିଲା ତାଙ୍କ ଅଧୀନରେ । ଅନେକ ଦିନ ତାଙ୍କ ଘରେ କାମ କରିଥିଲା । ତେଣୁ ତାକୁ ବ୍ୟକ୍ତିଗତ ଭାବେ ଯଥା ସମ୍ଭବ ସୁବିଧା ସୁଯୋଗ ଦିଆ ଯାଇଥିଲା । ତା ପୁଅଝିଅଙ୍କ ପାଠପଢ଼ାର ଖର୍ଚ୍ଚ ମଧ ଦିଆ ଯାଇଥିଲା । ନହେଲେ ସେମାନେ କଲେଜ ମାଡ଼ି ପାରନ୍ତେ କି ନାହିଁ ସନ୍ଦେହ । ଶେଷ ଆଡ଼କୁ ସୁର ଅଫିସ୍‌ର ଷ୍ଟୋର ଦାୟିତ୍ୱରେ ଥିଲା । ପରିସ୍ଥିତି ଦୃଷ୍ଟିରୁ ମହାପାତ୍ରେ

ତାକୁ ସସ୍ପେନସନ୍ ଅର୍ଡର ଦେବାକୁ ବାଧ ହୋଇଥିଲେ । ଅବଶ୍ୟ ପରେ ସେ ପୁଣି ଚାକିରୀରେ ବାହାଲ ହେଲା । କିନ୍ତୁ ବାଟରେ ଦେଖାହେଲେ ଖୁବ ମୁହଁ ବୁଲେଇ ଚାଲିଯାଏ । ମହାପାତ୍ରେ ଅବସର ନେଲାପରେ ଶୁଣିଲେ ଖୁବ ମସୁଧା କରୁଛି, ତାଙ୍କର କିଛି ଅନିଷ୍ଟ କରିବ । ଯେଉଁ କମିଶନର ସାହେବଙ୍କର ପାଦ କାର୍ ବ୍ୟତୀତ ତଳେ ପଡୁନଥିଲା ସେ କମିଶନରଙ୍କୁ ଆଜି ପୁଣି ଦଦରା ସାଇକେଲରେ ଯାଉଥିବାର ଦେଖି ସେ ନିଶ୍ଚୟ ପରିହାସ କରୁଥିବ ।

ଆଉ ଠିକ୍ ତା ପରେ ସେଇ ଦୁର୍ଘଟଣା । ମହାପାତ୍ରଙ୍କ ସାମନାପଟୁ ବିରାଟ ଦୈତ୍ୟ ଭଳି ଦୁଇ ତିନିଟା ଟ୍ରକ ମାଡ଼ି ଆସିଲା । ଖରା ତାତିରେ ମଥା ଭିତରଟା କ'ଣ ହୋଇ ଯାଉଥିଲା । ଆଖିରେ ସୋରିଷ ଫୁଲ ଦିଶୁଥିଲା ।

ସାଙ୍ଗରେ ଡାକ୍ତରଙ୍କୁ ଧରି ସିଷ୍ଟର ଫେରିଲେ । ସେମାନଙ୍କ ସାଙ୍ଗରେ ସୁମନ । ସୁମନକୁ ଦେଖି ମନରେ ଆନନ୍ଦ ଜାଗିଲା । ନନାଙ୍କ ଚେତା ଫେରିବାର ଦେଖି ଉଜ୍ଜ୍ୱଳ ଦିଶିଲା ସୁମନର ମୁହଁ । ଡାକ୍ତର ପରୀକ୍ଷା କଲେ । ମହାପାତ୍ରଙ୍କୁ ପଚାରିଲେ, ଏବେ ଆପଣଙ୍କୁ କେମିତି ଲାଗୁଛି ? ମହାପାତ୍ରେ କହିଲେ ଟିକିଏ ଭଲ ଲାଗୁଛି । ରିପୋର୍ଟ ଲେଖି ସୁମନ ଆଉ ଅନୁ ବୋଉଙ୍କୁ ଡାକ୍ତର କହିଲେ, ଏବେ ଆପାତତଃ ଭୟର କାରଣ ନାହିଁ । ଭାବିଥିଲୁ ଇଣ୍ଟରନାଲ ହେମାରେଜ୍ । କିନ୍ତୁ ତା ନୁହେଁ । ମୁଣ୍ଡରେ ମାଇନର ଇଞ୍ଜୁରି । ସେ ଭଲ ହେଇଯିବେ । ତେବେ ମିଷ୍ଟର ମହାପାତ୍ର, ଆପଣଙ୍କୁ ଆଉ ସପ୍ତାହେ ଏଠାରେ ରହିବାକୁ ପଡ଼ିବ । ଅବ୍‌ଜରଭେସନ ଆଉ କମ୍ପ୍ଲିଟ୍ ରେଷ୍ଟ ।

ଡାକ୍ତର ବାହାରିଗଲେ । ଝିଅମାନେ ଆସି ଘେରିଗଲେ । ସେମାନେ ପରିଚର୍ଯ୍ୟାରେ ଲାଗିଲେ । କିଏ ଫଳ ରସ, କିଏ ଗରମ କ୍ଷୀର ଧରିଲେ ମହାପାତ୍ରଙ୍କ ମୁହଁ ପାଖରେ । ମହାପାତ୍ର ମନେ ମନେ ତୃପ୍ତି ଅନୁଭବ କଲେ ।

ପାଖ ଘରେ ସୁମନ ନିଶ୍ଚୟ ପରାମର୍ଶ କରୁଥିଲା ଡାକ୍ତରଙ୍କ ସଙ୍ଗରେ । ଡାକ୍ତର କହୁଥିଲେ, ବୁଝିଲେ ସୁମନବାବୁ, ଏ ବୟସରେ ସାଇକେଲିଙ୍ଗ କରିବା ତାଙ୍କ ପକ୍ଷରେ ଉଚିତ ହେଇନାହିଁ । ପୁଣି ଦି'ପହର ବେଳ । ଯଉ ମୁଣ୍ଡଫଟା ଖରା । ଆପଣମାନେ ଜାଣିଚନ୍ତି, ସେ ହାଇବ୍ଲଡ଼ପ୍ରେସର ରୋଗୀ । ସତର୍କ ରହିବା ଦରକାର । ସୁମନ କହିଲା, କ'ଣ କରିବୁ ସାର୍, ଏତେ ଯାହା କହିଲେ ନନା କ'ଣ ଶୁଣନ୍ତି ? ପୂଜାପାଠରେ ଲାଗିଲେ ଘରେ ବସନ୍ତୁ । ଘରେ ତ ଆମ୍ବାସାଡ଼ାର ଗାଡ଼ିଟିଏ ରହିଛି । ହେଲେ ସେ ସେଇ ପୁରୁଣା ସାଇକେଲ ଧରି ବାହାରିବେ । ସେଇ ସାଇକେଲର ମମତା ସେ ଛାଡ଼ିପାରିବେ ନାହିଁ ।

ସୁମନର ଯୁକ୍ତି ଶୁଣିଲେ ମହାପାତ୍ରେ । ଅତି ଦୁଃଖରେ ମଧ ହସ ସମ୍ଭାଳି ପାରିଲେ ନାହିଁ । ଏକଦା କମିଶନରଙ୍କ ପୁଅ ସୁମନ । ପୁଣି ଏବେ ଏଡ୍‌ଭୋକେଟ । ସେ ଆମ୍ବାସାଡ଼ାର

ବାଘଟା ଖୁଣ୍ଟାଉଛି । ଡାକ୍ତରଙ୍କ ଆଗରେ ନିଜର ପ୍ରେଷ୍ଟିଜ୍ ଜଗୁଛି । ହାଇପେସନର ମାଲୁଚିବାଲେ ଘୁମନ୍ତର ସ୍ୱପ୍ନ । ସେଇ ସ୍ୱପ୍ନ ଦେଇ ସେ ହାଇକୋର୍ଟରେ ତା, ଚିନାବାଦାମର ଝଙ୍କ ତୁଲାଇବାକୁ ଚେଷ୍ଟା କରୁଛି । ଘରେ ଆମ୍ବସାକାର କାର୍ ଅଛି । ସେଇଟା ଆଭିଜାତ୍ୟର ଲେଭେଲ୍ । ସେ ଅଚଳ ଆମ୍ବସାକାରକୁ ସଚଳ କରିବା ପାଇଁ ଏବେ ମହାପାତ୍ରଙ୍କର ସମ୍ବଳ କାହିଁ ? ଅବସର ନେଲା ପରେ ଘରେ ରହାବଢ଼ା କରିବା ପାଇଁ ଡାକରଟିଏ ରଖାଯାଇଥିଲା । ପେନ୍‌ସନ ଟଙ୍କାରେ ତା ଝଙ୍କ ତୁଲାଇବା ସମ୍ଭବ ହେଲାନାହିଁ । ପୁଣି ଡ୍ରାଇଭର ରଖିବାର ପ୍ରଶ୍ନ କାହିଁ ? ପେଟ୍ରୋଲର ଦର ଯାହା ହେଲାଣି, କାର୍ ମେଣ୍ଟେନ୍ କରିବା କ'ଣ ମହାପାତ୍ରଙ୍କ ପକ୍ଷରେ ସମ୍ଭବ ? ବଜାର ସଉଦା ଠାରୁ ରେସନ, ପୁଣି ଇଲେକ୍ଟ୍ରିକ୍, ପାଣି ବିଲ୍ ପେମେଣ୍ଟ ଯାଏ ସବୁ କାମ ପାଇଁ ସେଇ ସାଇକେଲ ହିଁ ତାଙ୍କର ଭରସା ।

ଡାକ୍ତର କହୁଥିଲେ, ମହାପାତ୍ର ମହାଶୟ ଖୁବ୍ ଦୁର୍ବଳ ହୋଇଯାଉଛନ୍ତି । ଆମେ ସିନା ମେଡ଼ିସିନ ପ୍ରେସ୍କ୍ରାଇବ କରିଦେବୁ କିନ୍ତୁ ଡାଏଟ୍ ଦରକାର ।

ମହାପାତ୍ରେ ମନକୁମନ ହସିଲେ । ଭାବିଲେ, ତାଙ୍କର ଯାହା ଡାଏଟ୍ ସେଥିରେ ଦେହରେ ବଳ ଆସିବ କେଉଁଠୁ ? ସକାଳେ ଟିକିଏ ଚୂଡ଼ା, ଦୁଇ ପିସ୍ ପାଉଁରୁଟି, ଦି'ପହରେ ଦି'ପଦ ରୁଟି, ସିଝା ପରିବା, ଟିକି ଡାହିଁ, ଅଲଣା । ସମସ୍ତଙ୍କ ପାଇଁ ଘରେ ଚିକିଆଛା, ମାଂସ, ମାଛର ସୁପ । ସେମାନଙ୍କୁ ଦେବା ପାଇଁ ଅନୁଭୋଲକୁ ବେଳ ନିଅଣ୍ଟ । ମହାପାତ୍ରଙ୍କ କଥା ପଚାରୁଛି କିଏ ? ଅନୁଭୋଲ ତ ମହାପାତ୍ରଙ୍କୁ ପାସୋରି ଗଲେଣି, ଆଉ ଡାଏଟ୍ କଥା କ'ଣ !

ହସ୍ପିଟାଲ ଛାଡ଼ିବା ବେଳ ହେଲା । ଯା ଭିତରେ ଇ.ସି.ଜି. ଟେଷ୍ଟ ବ୍ଲଡ ସୁଗାର ଟେଷ୍ଟ ହେଲା । ଡାକ୍ତର ସୁମନ ବାବୁଙ୍କୁ ଡାକି କହିଲେବେଳେ, ଦେଖନ୍ତୁ ଛ'ମାସ ମଧ୍ୟରେ କଲିକତା, ବଙ୍ଗଲୋର କିମ୍ବା ଦିଲ୍ଲୀର କୌଣସି ହାର୍ଟ ସ୍ପେଶାଲିଷ୍ଟଙ୍କ ସଙ୍ଗେ ପରାମର୍ଶ କରିବାକୁ ପଡ଼ିବ । ଅପରେସନ ଦରକାର ହୋଇପାରେ । ତେବେ ଆପଣମାନଙ୍କୁ ତାଙ୍କର ଯତ୍ନ ନେବାକୁ ପଡ଼ିବ । ମେଣ୍ଟାଲ ଟେନ୍‌ସନ ଯେପରି ବଢ଼ି ନଯାଏ । ତାଙ୍କ ପାଇଁ ଦରକାର କମ୍ପ୍ଲିଟ୍ ରେଷ୍ଟ । ମାନସିକ ଶାନ୍ତି ଆବଶ୍ୟକ ।

ଡାକ୍ତରଙ୍କ ଉପଦେଶ ବାଣୀ ଶୁଣି ମନକୁ ମନ କହିଲେ ମହାପାତ୍ରେ, ମୋର ମାନସିକ ଶାନ୍ତି ଲୋଡ଼ା । ଏକଥା ମୁଁ କ'ଣ ବୁଝିନାହିଁ ? ଡାକ୍ତର ମହାଶୟ, ଆପଣ ଜାଣିଛନ୍ତି, ଆପଣଙ୍କୁ ଭଲଭାବରେ ଜଣାଅଛି, ଯେ ହେଲା ହୃଦୟର ବ୍ୟାପାର । କିନ୍ତୁ ଏଇ କଥା ଘରର ବୁଝିବାକୁ ଏ ପୃଥିବୀରେ ହୃଦୟର ଏକାନ୍ତ ଅଭାବ । ହୃଦୟହୀନ ଜୀବନ ସଂଗ୍ରାମରେ ଉର୍ଦ୍ଧ୍ୱଶ୍ୱାସରେ ଧାଉଁଛନ୍ତି ମୋ ପୁଅଝିଅମାନେ । କାରଣ ଏ ଦୁନିଆରେ

ପ୍ରତିଯୋଗିତା ଅତି ତୀବ୍ର । ସେମାନଙ୍କର ଜୀବନ ସ୍ୱପ୍ନର ସୁନେଲି ଦିଗନ୍ତରେ ନନା ବୋଉଙ୍କର ସ୍ଥିତି ଅତି ଗୌଣ । ନନାବୋଉଙ୍କ ଅସ୍ତିତ୍ୱ ହଜି ଗଲାଣି ଅତୀତର ଅନ୍ଧାର ଭିତରେ । ସେମାନେ ଶୁଖିଲା ନଈର ନାଆ । ମହାପାତ୍ରେ ଚାହିଁଲେ ନିଜ ଭିତରକୁ । ସେ ବୁଝିପାରିଲେ, ହୃଦୟର ସମସ୍ତ ଉତ୍ତାପ ଦେଇ ମଧ ସେ ସେମାନଙ୍କର ସ୍ୱପ୍ନର ଦିଗନ୍ତର ପରିଧିକୁ ଛୁଇଁ ପାରୁନାହାନ୍ତି । ଅନେକ ବ୍ୟବଧାନ, ଆଲୋକ ବର୍ଷର ଦୂରତ୍ୱ ।

ମହାପାତ୍ରେ ଘରକୁ ଫେରିଲେ ଟ୍ୟାକ୍ସିରେ । ସାଙ୍ଗରେ ପୁଅ ସୁମନ । ବାଟରେ ଭାବୁଥିଲେ ପୁଅଝିଅଙ୍କ ଭବିଷ୍ୟତର କଥା । ସେମାନଙ୍କର ବାହାଘର ହେଇନି । ସେମାନେ ଅନ୍ତତଃ ଉପାର୍ଜନକ୍ଷମ ହେଲେ ସେ ସାନ୍ତ୍ୱନା ପାଇଥାନ୍ତେ । ଏକ୍ସିଡେଣ୍ଟ ହେଲା, ସେ ହସ୍ପିଟାଲରେ ପଡ଼ିଲେ । ଗୁଡ଼ାଏ ଖର୍ଚ୍ଚ ହେଲାଣି । ପୁଣି ଡାକ୍ତର ପରାମର୍ଶ ଦେଇଛନ୍ତି, ହାର୍ଟ ସ୍ପେଶାଲିଷ୍ଟଙ୍କ ସଙ୍ଗେ ପରାମର୍ଶ କରିବାକୁ ହେବ । କଲିକତା, ଭେଲୋର କିମ୍ବା ଦିଲ୍ଲୀ ଯିବାକୁ ହେବ । ଅପରେଶନ ଦରକାର ହେବ । ଚାକିରୀରେ ଥିଲେ ସରକାରୀ ସାହାଯ୍ୟ ମିଳନ୍ତା । କିନ୍ତୁ ମହାପାତ୍ରେ ଅବସର ନେଲେଣି । ପେନ୍‌ସନର ପଣତକୁ ଟାଣିଓଟାରି ଲାଜ ରଖିହେଉନି ।

ଟ୍ୟାକ୍ସି ପହଞ୍ଚିଲା ଘର ପାଖରେ । ଘରୁ ବାହାରି ଆସିଲେ ଝିଅମାନେ ଏବଂ ପଛେ ପଛେ ଅନୁବୋଉ । ଧୀରେ ଧୀରେ ମହାପାତ୍ରେ ଓହ୍ଲାଇବାକୁ ଯାଉଥିଲେ କିନ୍ତୁ ଅଟକିଗଲେ । ଟ୍ୟାକ୍ସିର କବାଟ ଖୋଲି ତାଙ୍କୁ ପାଛୋଟି ନେବାକୁ ଠିଆ ହୋଇଥିଲା ତାଙ୍କର ସେଇ ପୁରୁଣା ପିଅନ, ସୁର । ଏଠି ତାକୁ ଦେଖିଲାମାତ୍ରେ ମହାପାତ୍ରଙ୍କର ମନେହେଲା ତାଙ୍କର ରକ୍ତଚାପ ବଢ଼ିଯାଉଛି । ହୁଏତ ସବୁଦିନ ପାଇଁ ବନ୍ଦ ହୋଇଯିବ ତାଙ୍କର ହୃଦସ୍ପନ୍ଦନର କ୍ରିୟା । ସେଦିନ ଏକ୍ସିଡେଣ୍ଟ ପୂର୍ବରୁ ମଧ ସେ ଦେଖିଥିଲେ ସେଇ ଅଶୁଭ ବ୍ୟକ୍ତିଟିକୁ । ସେ ନିଶ୍ଚୟ ମନରେ ଦୂରଭିସନ୍ଧି ନେଇ ଏଠି ହାଜର ହେଇଚି । ଏକଥା କ'ଣ ଅନୁ ବୋଉ ବୁଝି ପାରିନାହିଁ ? ସେ ଓହ୍ଲେଇବାକୁ ଇତସ୍ତତଃ କରୁଥିବାର ଦେଖି ଅନୁବୋଉ କହିଲେ, ଦେଖିଲଣି ମେଘ ଘୋଟି ଆସିଲାଣି । ଏଇକ୍ଷଣି ବର୍ଷା ହେବ । ଶୀଘ୍ର ଓହ୍ଲଉ ନାହଁ କାହିଁକି ? ମହାପାତ୍ରେ ବିଚାରିଲେ, ତାଙ୍କ ମନରେ ଯେ ଭୟଙ୍କର ଆତଙ୍କର କଳାମେଘ ଘୋଟିଲାଣି ସେକଥା ବୁଝିବ କିପରି ଅନୁବୋଉ ? କାର୍ କବାଟକୁ ଖୋଲି ଧରି ସୁର କହୁଥିଲା, ସାର୍, ଓହ୍ଲେଇ ଆସନ୍ତୁ, ମୁଁ ଧରୁଚି ।

ସୁରର ସରଳ କଣ୍ଠସ୍ୱରରେ ବିସ୍ମିତ ହେଲେ ମହାପାତ୍ରେ । ପୁଣି ବିଚାରିଲେ ଅନୁ ବୋଉ ରହିଚି । ଝିଅମାନେ ଅଛନ୍ତି । ପୁଅ ସୁମନ ରହିଛି । ମହାପାତ୍ରେ ମନରେ ସାହସ ବାନ୍ଧିଲେ । ସୁର ଆଗରେ ମନର ଦୁର୍ବଳତା ଦେଖେଇବେ କାହିଁକି ? ମନକୁ ସେ ଶାନ୍ତ କଲେ । ଶୁଖିଲା ଓଠରେ ହସର ସୂକ୍ଷ୍ମରେଖା ଟାଣି ଗାଡ଼ିରୁ ଓହ୍ଲେଇଲେ ମହାପାତ୍ରେ । ସେ

ଦେଖିଲେ, ପୂର୍ବଭଳି ସୁର ମୁଣ୍ଡ ତଳକୁ କରି ତାଙ୍କୁ ଜୁହାର କରୁଛି । ବିସ୍ମୟରେ ଅଭିଭୂତ ହେଲେ । ଥରି ଉଠିଲା ତାଙ୍କର କଣ୍ଠସ୍ୱର । ସେ ପଚାରିଲେ, ସୁର, ତୁମେ ଏଠି କେମିତି ?

ସେତେବେଳକୁ ଅନୁ ବୋଉ ଆଗେଇ ଆସି ମହାପାତ୍ରଙ୍କ ଥରିଲା ହାତକୁ ଧରି କହିଲେ, ସୁରକୁ କ'ଣ ପଚାରୁଛ ? ସେଦିନ ତୁମର ଏକ୍‌ସିଡେଣ୍ଟ ସମୟରେ ସେଠି ଦୈବାତ୍ ସୁର ଥିଲାବୋଲି ସିନା !

ସୁମନ କହିଲା, ତିନିଟା ଟ୍ରକ ପାସ୍‌କଲା । ସମସ୍ତେ ବିଚାରିଲେ ତୁମ ଉପରେ ଟ୍ରକ ମାଡ଼ିଗଲା । ରାସ୍ତାଲୋକ ଜମା ହେଇଗଲେ । ଭାଗ୍ୟକୁ ସୁର ଥିଲାବୋଲି ତୁମକୁ ଚିହ୍ନି ତୁମର ଲହୁଲୁହାଣ ଦେହକୁ ଟେକିନେଇ ରିକ୍‌ସାରେ ସିଧା ହସ୍‌ପିଟାଲ ନେଇ ଯାଇଥିଲା । ସେଠୁ ସେ ଫୋନ୍ କରି ବୋଉକୁ ଖବର ଦେଲାରୁ ବୋଉ ଜାଣିଲା ।

ମହାପାତ୍ରେ ଚାହିଁଲେ ସୁରର ମୁହଁଟିକୁ । ତା ଆଖିରେ ସେ ଆବିଷ୍କାର କରି ପାରିଲେନି କଣାଏ ପ୍ରତିହିଂସାର ନିଆଁ । ବରଂ ତାଙ୍କ ନିଜ ମନରେ ପୂରି ଉଠିଲା କୃତଜ୍ଞତାର ଆଲୁଅ । ବିଚାରିଲେ, ନିଷ୍ଠୁର ଦୁଃଖ ଦାରିଦ୍ର୍ୟର ଜୁଇରେ ଜଳି ମଧ ଏ ଦୁନିଆରେ ସୁର ଭଳି ମଣିଷ ରହିଚନ୍ତି । ସ୍ୱାର୍ଥାନ୍ଧ ଜଗତରେ ମଣିଷ ମନରୁ ଦୟା, କ୍ଷମା ଭଳି ମହତ୍ ଗୁଣ ଲୋପ ପାଇ ଯାଇନାହିଁ । ସୁରର ହୃଦୟ ଅଛି ।

ସ୍ଥାନ କାଳ ଭୁଲିଯାଇ ଆକୁଳ ଆବେଗରେ ସେ କୁଣ୍ଢେଇ ପକେଇଲେ ସୁରକୁ । ତାଙ୍କ ଦି' ଆଖିରୁ ଝରିଗଲା ଧାର ଧାର ଲୁହ ।



# ବୁଢ଼ାବଲଙ୍ଗ ନଈର କୂଳେ

କଞ୍ଚନ, ଲୋ କଞ୍ଚନ ! ଦୋକାନ ପିଣ୍ଡାରୁ ଡାକ ପକାଇଲା ଆଈ । ପିତଳ ଦର୍ପଣ । ସେଥିରେ ମୁହଁ ଦେଖି ସିନ୍ଦୂର ନାଇବାକୁ ସଜ ହେଉଥିଲା କଞ୍ଚନ । ରାତି ପାହି ଗଲାଣି । ହେଲେ ଘର ଭିତରଟା ଅନ୍ଧାର । କରଞ୍ଜ ତେଲର ଦୀପ ଆଲୁଅରେ ମୁହଁଟା ଭଲକି ଦିଶୁନାହିଁ । ମଥାରେ ସିନ୍ଦୂର ନାଇଁବା ପାଇଁ ପିତଳ ଦର୍ପଣ ଆଗରେ ବସିଲେ କଞ୍ଚନର ମନେ ପଡ଼ିଯାଏ ସେଇ କୁଠିବାଡ଼ିର ମାର୍ଗାରେଟ ସାହେବାଣୀ କଥା । ମାର୍ଗାରେଟ ନାନୀଙ୍କ ଘରେ ସେ ଦେଖିଚି କାଚ ଦର୍ପଣ । କେଡ଼େ ସୁନ୍ଦର ଚିକ୍କଣ । ମୁହଁ କେଡ଼େ ସୁନ୍ଦର ଦିଶେ । ସେଇ ଦର୍ପଣ ଆଗରେ ବସି ସାହେବାଣୀ ଓଠରେ ନାଲିରଙ୍ଗ ଲଗାନ୍ତି । ମୁହଁରେ ପାଉଡ଼ର ବୋଳି ହୁଅନ୍ତି । କୁଠିବାଡ଼ି । ଇଂରେଜ ସାହେବଙ୍କ ବସ୍ତି । କଞ୍ଚନ ମୁଢ଼ି ଚୁଡ଼ା ବିକିବାକୁ ଯାଏ । ମାର୍ଗାରେଟ ନାନୀଙ୍କ ସେଇ ଦର୍ପଣରେ ନିଜ ମୁହଁକୁ ସେ ଥରକୁ ଥର ଦେଖେ । ଆଉ ସେତିକିବେଳେ ନିଜର ଚେହେରାଟା ଭାସିଉଠେ ତା' ଆଖି ଆଗରେ । ଏମିତି ଗୋଟିଏ କାର୍ତ୍ତିକ ପୂନେଇଁ ଦିନ ଅନୁକୂଳ କରି ବ୍ରାଉନ ସାଇବ ସଙ୍ଗେ ଭିକ ବିଲାତ ରମାନା ହେଲା । ଚାହୁଁ ଚାହୁଁ ପାଞ୍ଚ ବର୍ଷ ବିତିଗଲାଣି । କେବେ ଫେରିବ କିଏ ଜାଣେ ? ଲଣ୍ଡନ ମୂଲକରୁ ବର୍ଷକୁ ବର୍ଷ ଏ ବାଲିଶର ବନ୍ଦରକୁ ବୋଇତ ଆସୁଛି । ହେଲେ, ଭିକର କଞ୍ଚନ କଥା ମନେ ପଡୁନାହିଁ ? ମନେ ପଡୁଥିଲେ କଞ୍ଚନ ପାଇଁ ସେ କାଚ ଦର୍ପଣଟାଏ ପଠେଇ ଦିଅନ୍ତା ନାହିଁ ? କଞ୍ଚନର ଆଖି ସଜଳ ହୁଏ । ଲୁଗା ପଣତରେ ଆଖି ପୋଛି ସେ ଭାବେ, ଯାହା ହେଉ, ଏଥର ପିଟର ସାଇବ କଣ୍ଟ ଦେଇଚି । ସେ ବିଲାତ ଯିବ । ବ୍ରାଉନ ସାଇବ ଘରେ ସେ ଭିକକୁ ଭେଟିବ ।

କଞ୍ଚନ, ଲୋ କଞ୍ଚନ । ତୋତେ ମୋ ଡାକ ଶୁଭୁନି ? ପୁଣି ଡ଼ାକ ପକେଇଲା ଆଈ । ଆଈ ଏମିତି ତରତର ହେଉଚି କାହିଁକି ? ସକାଳୁ ସକାଳୁ କ'ଣ ପିଟର ଆସି ପହଞ୍ଚିଗଲାଣି ?

କାଲି ଗଲା କାର୍ତ୍ତିକ ପୂନେଇଁ । କେଡ଼େ ପର୍ବର ଦିନ । ରାତି ପାହାନ୍ତାରୁ ଏଇ ବାଲିଶର ବନ୍ଦର ଯାକର ମାଇକିନିଆ ମରଦ ସମସ୍ତେ ବଲଙ୍ଗ ନଈରେ ବୁଡ଼ ପକେଇଲେ । କଞ୍ଚନର କପାଳ ମନ୍ଦ । ଏମିତି ପୁଣ୍ୟ ଦିନରେ ସେ ବୁଡ଼ ପକେଇ ପାରିଲା ନାହିଁ । କେବଳ କଞ୍ଚନ ନୁହେଁ । ସାରା ବାରବାଟୀ ବସ୍ତିର ଗୁଡ଼ିଆ ସାହିର ଝିଅବୋହୂକୁ କ'ଣ ତର ଥିଲା ? ବେପାର ପାଇଁ ସାରା ବର୍ଷରେ ଏଇ ଗୋଟିଏ ସମୟ ।

ବୁଢ଼ାବଳଙ୍ଗ ନଈ ମୁହାଣ ବଳାମଗଡ଼ି ଠାରୁ ବାଲିଘାଟ ଯାଏଁ ମେଳା ବସିଯାଇଥାଏ । ପାଲ ତିଆରି ପାଇଁ ଦଳ ଦଳ ଦରଜି । ମାକଳପୁରର ତନ୍ତିମାନେ ସାହାନା ଲୁଗା ଜମା କରିଛନ୍ତି । ରେମୁଣାର ଥଟାରିମାନେ କଂସା ପିତଳ ବାସନ ଜମା କରନ୍ତି । ଶହ ଶହ ବଣିକ । ଫିରିଙ୍ଗ, ଓଲନ୍ଦାଜ, ଦିନାମାର, ଫରାସୀ ପୁଣି ଇଂରେଜ ଗୋରା ସାହେବଙ୍କ ଭିଡ଼ । କାଲି ସଞ୍ଜ ହେବା ଆଗରୁ ବଳାମଗଡ଼ି ମୁହାଣ ଠାରେ ବୋଇତ ସବୁ ଅନୁକୂଳ କରି ପାଲ ମେଲିଦେଲେ ଦରିଆ ମଝିକୁ । ବୋଇତକୁ ବନ୍ଦେଇବା ପାଇଁ ସାଧବଘର ବୋହୂ ଝିଅମାନେ ଯାଇଥିଲେ ବଳାମଗଡ଼ିକୁ । ସବାରି, ପାଲିଙ୍କି ଆଉ ଶଗଡ଼ର ଧାର ଛୁଟିଥିଲା । ଶଙ୍ଖ ହୁଳହୁଳି, ମୃଦଙ୍ଗ କୀର୍ତ୍ତନ ଶବ୍ଦରେ ଦୁଲୁକି ଉଠୁଥିଲା ବଳଙ୍ଗ ନଈର ଛାତି ।

ରୂପନାରାୟଣ ନଈର ତମଲୁକ ବନ୍ଦରରୁ, ସୁବର୍ଣ୍ଣରେଖା ନଈର ପିପିଲିରୁ ପୁଣି ହୁଗୁଳି ନଈର ସୂତାନୁଟିର କଲିକତା ବନ୍ଦରମାନଙ୍କରୁ ବୋଇତସବୁ ଆସି ନଙ୍ଗର ପକେଇଥିଲେ ବାଲିଶର ବନ୍ଦରରେ । ଦାସ ଘର ବୋଇତ, କର ଘର ବୋଇତ ସବୁ ଅନୁକୂଳ କରି ବାହାରିଗଲେ, ପିପିଲିକୁ, ତମଲୁକ ଆଉ କଲିକତାକୁ । ସାଉବମାନଙ୍କ ଜାହାଜ ଅନୁକୂଳ କଲା, ଲଣ୍ଡନକୁ, ହଲାଣ୍ଡକୁ, ଡେନମାର୍କ ଦେଶକୁ ।

କାଲି ବୁଡ଼ ପକାଇବାକୁ ବେଳ ପାଇ ନାହିଁ କଞ୍ଚନ । ଗହଳି ଭିଡ଼ । କଉଡ଼ି ଅରଜିବା ବେଳ । ହେଉପଛେ ପୂନେଇ ବାସି । ଆଜି ରାତି ପାହାନ୍ତାରୁ ସେ ବୁଡ଼ ପକେଇବାକୁ ଯାଇଥିଲା ବାଲିଘାଟକୁ । ହାଡ଼ ଭଙ୍ଗା ଶୀତ । ଥରି ଥରି ବାଲିଘାଟ ନଈ ତୁଠରୁ ଫେରିଲା କଞ୍ଚନ । ପଶ୍ଚିମ ଆକାଶରେ ପୂନେଇଁ ଜହ୍ନଟା ମାଇଚିଆ ଭଳି ଚାହିଁଥିଲା । ଦାସ ଘର ଉଆସ ପଛପଟେ ଅମାରରୁ ଢିଙ୍କି ପାହାର ଶୁଭୁନଥିଲା । କେବଳ ମଙ୍ଗଳ ଆରତିର ଘଣ୍ଟା ଧ୍ୱନି ଶୀତୁଆ ବାଆରେ ଭାସି ଆସୁଥିଲା ଷଡ଼ଭୁଜ ମନ୍ଦିର ଭିତରୁ । ମନ୍ଦିରା ଆଉ ମୃଦଙ୍ଗର ଶବ୍ଦ ଆସୁଥିଲା ଶ୍ୟାମସୁନ୍ଦର ମନ୍ଦିର ବେଢ଼ାରୁ ।

ଓଦାଲୁଗାରେ ଘରକୁ ଫେରି କଞ୍ଚନ ତରତର ହୋଇ କପାଳରେ ଟୋପାଏ ସିନ୍ଦୂର ନାଇ, ମାକଳପୁରୀ ଶାଢ଼ି ଖଣ୍ଡେ ପାଲଟି ପକେଇ ଧାଇଁଲା ଦୋକାନ ପିଣ୍ଡାକୁ । ପଚାରିଲା, ଆଈ, ଏମିତି ଡ଼ାକ ପକେଇଚୁ କାହିଁକି ? ମୁହଁ ଅନ୍ଧାରୁ କ'ଣ ପିଟର ସାଇବ ସଉଦା ନବାକୁ ଅଇଲାଣି ? କାଲି ଦିନଯାକ, ଆମେ ଅନିଶା କରି ଚାହିଁ ବସିଲୁ । କୁଆଡ଼େ ମଦପିଇ ଶୋଇଥିଲା କି ? ମତେ ଜଣା ଅଛି, କୁଠିବାଡ଼ିର ମାର୍ଗାରେଟ୍ ସାଇବାଣୀ କ'ଣ ତାକୁ ଛାଡ଼ିଦେବ, ଲଣ୍ଡନ ଯିବାକୁ ? ସେ ମାର୍ଗାରେଟ୍ ସାଇବାଣୀ.... କହୁ କହୁ ଅଟକିଗଲା କଞ୍ଚନ । ଆଈର ଶୁଖିଲା ମୁହଁକୁ ଚାହିଁ ସେ କାଠ ପାଲଟିଗଲା ।

ଫୁଲପକା ନାଲିକିନାରୀ ଶାଢ଼ିର ଓଢ଼ଣାକୁ ମୁଣ୍ଡ ଉପରକୁ ଟାଣିଦେଇ କରୁଣ ଆଖିରେ ଆଈ ଚାହିଁଥିଲା । ସେ କହିଲା, ଆଲୋ କଞ୍ଚନ, ପିଟର କ'ଣ ଆଉ ଜିଇଁଚି ଯେ

ସଉଦା ନବାକୁ ଆସିବ ? ଦେଖୁନୁ ସକାଳୁ ତା' ସାଙ୍ଗ ଡ଼େଭିଡ୍ ଆସି ଠିଆ ରହିଛି । ପିଟରର ସଉଦା ହରିକା ପଇଠ କରିଦେଲେ ଡ଼େଭିଡ୍ ଯିବ । ତୁ ଟିକିଏ ହିସାବ କରି କଉଡ଼ିତକ ଗଣିରଖ । ମୁଁ ହିସାବ ପାଉନି ।

ମାଈ ଅନ୍ଧାରୁ ଆଇ ମୁହଁରୁ ଅଲକ୍ଷଣା କଥା ଶୁଣି ଚମକି ଉଠିଲା କଞ୍ଚନ । ସେ ବିଶ୍ୱାସ କରି ପାରିଲା ନାହିଁ । ପଚାରିଲା, କ'ଣ କହିଲୁ ଆଇ, ପିଟର ସାଇବ ଜୀବନରେ ନାଇଁ ? କାଲିକିପରା ଲଣ୍ଡନ ରମାନା ହେବାର ଥିଲା ?

କଞ୍ଚନର କଥାର ଜବାବ ଡ଼େଭିଡ୍ ଦେଲା । ସେ କହିଲା, ହଁ, ପିଟର କାଲି ଲଣ୍ଡନ ଯିବାର ଥିଲା । ଲେକିନ୍, ପଅରିଦିନ ସଞ୍ଜରେ ଗବଗା ଗୁଦି ପାଖରେ କିଏ ଗୁଳି ଚଳାଇ ଖୁନ୍ କରିଦେଲା ।

ଖୁନ୍ ? ଚମକି ଉଠିଥିଲା କଞ୍ଚନର ଛାତି । ସେ ବିଚାରିଲା, ଆସାମୀ ଖାଲି ପିଟର ସାଇବକୁ ଖୁନ୍ କଲାନି ଯେ ଦୁଇ ଦୁଇଟା ମାଇକିନିଆର ସର୍ବନାଶ କଲା ।

ହଁ, ଖୁନ୍ ! ମୁଁ ଖବର ପାଇ ଗବଗା ଗୁଦିକୁ ଗଲା । ପିଟରର ଜମାନବନ୍ଦୀ ନେଲା । ତା'ର ଜୀବନ ଉଡ଼ିଗଲା । ଏତକ କହି, ଡ଼େଭିଡ଼ ଖୋଲି ପକେଇଲା ତାର ଟୋପିକୁ: ପୁଣି କହିଲା, ଲେକିନ୍ ମଲା ଆଗରୁ ପିଟର କହିଲା, ଆଇର ସଉଦାର କଉଡ଼ି ବାକି ନାହିଁ ରଖିବ ।

ମଉସା, ପିଟର ସାଇବକୁ କିଏ ଖୁନ୍ କଲା, ତୋତେ କ'ଣ ମାଲୁମ ନାହିଁ ?

କଞ୍ଚନର କଥା ଶୁଣି, ଡ଼େଭିଡ୍ ପୁଣି ମୁଣ୍ଡର ଟୋପି ନିକାଲି, ଚନ୍ଦାମୁଣ୍ଡରେ ବାଁ ହାତ ବୁଲାଇ କହିଥିଲା, କଞ୍ଚନ, ଏଇଟା ମର୍ଡର ବେଶ୍ । ସାକ୍ଷୀ ନାହିଁ, ପ୍ରମାଣ କାହିଁ ?

କାହିଁକି ମଉସା, ପିଟର ସାଇବ କାହାରି ନାଁ କହିଲା ନାହିଁ ?

ଓ ଇଏସ । ସେ ସେଇ ଫିରିଙ୍ଗି ଫ୍ରାନ୍‌ସିସ୍‌ର ନାଁ କହିଲା । ପିଟର ଦୁଶମନ୍ ଫିରିଙ୍ଗି ଫ୍ରାନ୍‌ସିସ୍‌କୁ ସନ୍ଦେହ କଲା ।

ଡ଼େଭିଡ୍ ମଉସାଙ୍କ ମୁହଁରୁ ପର୍ତ୍ତୁଗୀଜ୍ ସାଇବ ଫ୍ରାନ୍‌ସିସ୍‌ର ନାଁ ଶୁଣି ମନେ ମନେ ଖୁସୀ ହେଇଥିଲା କଞ୍ଚନ । ବୁଝିଥିଲା, ତାର ସନ୍ଦେହ ଭୁଲ ନୁହେଁ । ତା'ପରେ ସେ ଡ଼େଭିଡକୁ କହିଥିଲା, ମଉସା, କୁଠିବାଡ଼ିକି ଯାଇ ମାର୍ଗାରେଟ ସାହେବାଣୀକି ଭେଟିଲେ ତୁମେ ସବୁ କଥା ଜାଣିପାରିବ । କଞ୍ଚନର କଥା ଶୁଣି, ତା' ବୁଦ୍ଧିକୁ ତାରିଫ୍ ନକରି ରହିପାରିଲାନି ଡ଼େଭିଡ଼ । ସେ କହିଥିଲା, ତୁ ଭଲକଥା କହିଲୁ କଞ୍ଚନ ! ତୋ' ବୁଦ୍ଧି ପାଖରେ ହାମେ ହାରିଗଲା । ମୁଁ ମାର୍ଗାରେଟ୍ କଥା ବିଲ୍‌କୁଲ୍ ପାସୋରିଗଲା । ବହୁତ ଭୁଲ ହେଲା । ହମକୋ କୁଠିବାଡ଼ି ଜାନା ହୋଗା ।

ମାର୍ଗାରେଟ ଦେଖିବାକୁ ଭାରି ସୁନ୍ଦରୀ । ସେ ପର୍ତ୍ତୁଗୀଜ ଝିଅ । ଦରିଆରେ ଝଡ଼-ପବନରେ ତାଙ୍କ ବୋଇତ ବୁଡ଼ିଗଲା । ସ୍ୱାମୀର ପତ୍ତା ମିଳିଲା ନାହିଁ । ବୁଡ଼ି ଯାଉଥିବା ବୋଇତରୁ ପିଟର ସାଇବ ଉଦ୍ଧାର କରିଥିଲା ମାର୍ଗାରେଟକୁ । ପିଟର ମାର୍ଗାରେଟକୁ ରଖିଚି କୁଠାବାଡ଼ିରେ । ସେଥିପାଇଁ ଫ୍ରାନ୍‌ସିସ୍‌ର ରାଗ । ସେ ନିଜେ ଜଣେ ପର୍ତ୍ତୁଗୀଜ ସାଇବ ।

କଞ୍ଚନ ଜାଣିଚି । ମାର୍ଗାରେଟ୍ ନିଜକୁ ଅସହାୟା ମଣୁଥିଲା । ହେଲେ, ପିଟର ତା'ର କେବଳ ଜୀବନ ରଖିନାହିଁ । ତାର ମାନ ଇଜ୍ଜତ ରଖିବା ପାଇଁ ନିଜ ଜୀବନକୁ ପାଣି ଛଡ଼େଇ ଦେଇଚି । ସେ ପିଟରକୁ ପୁଣି ବାହା କରିବାକୁ ମନ କରିଛି । ପିଟର ମଧ କଥା ଦେଇଚି, ସେ ଏଥର ଲଣ୍ଡନରୁ ଫେରିଲେ, ମାର୍ଗାରେଟକୁ ବାହାହେବ । ମାର୍ଗାରେଟ ଜାଣେ । ଲଣ୍ଡନରେ ପିଟରର ସ୍ତ୍ରୀ ମେରୀ ଅଛି । ତାର ପୁଅଝିଅ ଅଛନ୍ତି । ପିଟର ଲଣ୍ଡନ ଯିବାକଥା ଶୁଣି ମାର୍ଗାରେଟ୍ କାନ୍ଦିଥିଲା । କହିଥିଲା, ଡ଼ିୟର ପିଟର, ତୁମେ ଲଣ୍ଡନ ଚାଲିଗଲେ, ମୋତେ ସେ ଫ୍ରାନ୍‌ସିସ୍ ରଖେଇ ଦେବନି । କିନ୍ତୁ ପିଟର କହିଥିଲା, ଡ଼ାର୍ଲିଙ୍ଗ, କୁଠିବାଡ଼ିରେ ତୁମେ ନିରାପଦ । ଫ୍ରାନ୍‌ସିସ୍ ତୁମର ଅନିଷ୍ଟ କରିବାକୁ ସାହସ କଲେ ତାକୁ ମାରିବାକୁ ପଡ଼ିବ ।

କିନ୍ତୁ ଘଟଣା ଓଲଟିଗଲା । ଫ୍ରାନ୍‌ସିସ୍ ପିଟରର ଜୀବନ ନେଲା । କଞ୍ଚନ ଡ଼େଭିଡ଼କୁ ପଚାରିଥିଲା, ମଉସା, ସେଇ ଫିରିଙ୍ଗି ଡ଼କେଇତଟାକୁ ତମେ ଖୋଜି ପାଇଲ ?

ସେଇଟା ଭାରି ମୁସ୍କିଲ କଥା ହେଲା । ପିଟର ତ ମଲା । ଫ୍ରାନ୍‌ସିସ୍‌ର ପତ୍ତା ନାହିଁ । ସେ ଫେରାର୍ !

ମଉସା, ସେ ଫିରିଙ୍ଗୀ ଡ଼କେଇତ ଆଉ ଯିବ କୁଆଡ଼େ ? ବାଲିଶର ବନ୍ଦରରେ ମଣିଷ ମାରି କେଉଁଠି ଲୁଚିଛି, ସେ କଥା କ'ଣ ତୁମକୁ ଜଣାନାହିଁ ?

ତୁ ଠିକ୍ କହିଲା କଞ୍ଚନ । ସେ ଅଲବଦ୍ ପଳାଇଲା ଫରାସିଡ଼ିଙ୍ଗା !

ତହୁଁ, ମୁଣ୍ଡର ଓଢ଼ଣାକୁ ଟାଣି ଆଣି କହିଥିଲା: ଆମ ବାପ ଅଜା ଅମଳରୁ ଏମିତି କଥା ଶୁଣା ନଥିଲା । ଆମର ଏ ବାଲିଶର ହାଟ ବଜାରରେ ଇମିତି ମାରପିଟ ହାଣକାଟ କଥା ଜଣାନଥିଲା । ଦୋଳ, ଦଶରା, ରଜ, ଚନ୍ଦନ ଯାତରେ ଏ ବନ୍ଦରର ବୋହୂ ଝିଅମାନେ ରୂପା ସୁନାର ଗହଣା ନାଇ ସଜବାଜ ହେଇ ଦଳଦଳ ହେଇ ଦାଣ୍ଡକୁ ଯାଉଥିଲେ । ତୁମର ଏଇ ସାଇବ ବେପାରୀଙ୍କ ଅମଳରେ ବୋହୂ ଝିଅ ଘର ବାହାରକୁ ବାହାରିବା ମୁସ୍କିଲ୍ ହେଲାଣି । ସାଇବ ଗୁଡ଼ାକ ଦିନ ଦି' ପହରେ ବିଲାତି ପାଣି ପିଇ ନାଲାବଜାର କି ମୋତିଗଞ୍ଜ ବଜାରରେ ଯାହା କରୁଚନ୍ତି ସେ କଥା କହିଲେ ନସରେ । ବୋହୂ ଭୁଆସୁଣୀଙ୍କ ମାନ ଇଜ୍ଜତ ରହୁନାହିଁ ।

ଆଈଙ୍କ ଏଭଳି ମନ୍ତବ୍ୟ ଶୁଣି ଇଂରେଜ ଡେଭିଡ୍ ସାଇବକୁ ଭାରି ବାଧିଗଲା । ସେ କହିଥିଲା, ସବୁ ସାହେବ ସମାନ ନାହିଁ । ଫ୍ରାନ୍‌ସିସ୍ ଫିରିଙ୍ଗି ଶଇତାନ ଅଛି । ସେ ପାଇରେଟ୍, ଜାହାଜର ଦସ୍ୟୁ । ଆମର କମ୍ପାନୀର କ୍ୟାପଟେନ ହୀଥ୍ ଏଇ ବାଲାଶୋର ବନ୍ଦରକୁ ବେପାର କରିବାକୁ ଆସିଲା ମାର୍‌ପିଟ୍, ହାଣ୍‌କାଟ୍ ଗୁଳିଗୁଳା ଫାୟାର କରିବାକୁ ଆସିଲା ନାହିଁ । ତୁମର ରାଇଣ ଫାଇନ୍ ଅଛି । ମାକଲିପୁରର ଉଇଭେରସ୍‌ମାନେ ସାହାନା ଲୁଗା ବୁଣିଲା । ରେମୁଣାରେ କଂସା ପିତଳ ବାସନ ବହୁତ ବଢ଼ିଆ । ସବୁ ସଉଦା ହାମେ ବିଲାତ ପଠାଇଲା । ଆମ ବିଲାୟତୀ ଝିଅମାନେ ସାହାନା କପଡ଼ା, ସିଲକ୍ ଲୁଗା ବହୁତ ପସନ୍ଦ କଲା । ଆଈ, ଫିର୍ ଦେଖେଲାନା, ହାମେ ଇଂରେଜ ଟ୍ରେଡ଼େରସ୍ ସେଇ ଫିରିଙ୍ଗିକୋ ଜୋର କରି ନିକାଲି ଦେବା । ହାମର ଇଂରେଜ କମ୍ପାନୀ ମନୋପଲି ଟ୍ରେଡ୍ କରିବା ।

ମୁଣ୍ଡର ଓଢ଼ଣାକୁ ସଜାଡ଼ି ଆଈ କହିଥିଲା, ଜାଣିଚିରେ ଡେଭିଡ୍ ମୁଁ ନ' ବରଷରୁ ବାହାହେଇ ମୁଁ ଆସିଚି ଏଇ ବାଲିଶର ବନ୍ଦରକୁ । ମୋ ଜେଜେ ଶାଶୁ ଅମଳରୁ ମୁଁ ଦେଖୁଛି । ତୁମେ ସବୁ ସମାନ । ଓଲନ୍ଦା ସାହିର ଓଲନ୍ଦାଜସାଇବ କଥା କହ, ଦିନାମାର ଡ଼ିଙ୍ଗା ବସ୍ତିର ଦିନାମାର ସାଇବ କଥା କହ, କେହି ମୁହଁରେ କଥା କହନ୍ତି ? କଥା କଥାକେ ଗୁଳି ନ ହେଲେ ଖଣ୍ଡା । କିଏ ବାଲିଶର ହାଟରେ ଚୋରିକଲା, ସେ ଯାଇ ଫରାସି ଡ଼ିଙ୍ଗାରେ ଲୁଚିଲା । ସେଠି ତୁମ ଆଇନ୍ ଚଳିବ ନାହିଁ ।

ତୁ ଦେଖ୍ ଆଈ, ଓ୍ୱ ଫ୍ରେଞ୍ଚ କେଠିନୋ ଆମ ଇଂରେଜ କମ୍ପାନୀ ବାହାଦୁର ଦଖଲ କରିନେବ । ଶେଷକୁ ଆଈଠୁ ବିଦାୟ ନେଲାବେଳେ ଡ଼େଭିଡ କହିଥିଲା, ଏଇ କଉଡ଼ିସବୁ ଆଈ ତୁ ରଖ । ପିଟର ସାହେବର ସଉଦା ହିସାବ କରେ । ହମ୍ ଫିର ଆଏଗା । ମୁଁ ଚାଲିଲି । ଗୁଡ୍ ବାଇ, ଆଈ । ଟୋପି ହଲାଇ ଡ଼େଭିଡ୍ ଯିବାକୁ ବାହାରିଲା ।

କଞ୍ଚନ କହିଲା, ଆଈ, ପିଟର ସାଇବ ମରିଗଲା । ତା' କଉଡ଼ିରେ ତୁ ହାତ ଦବୁନାହିଁ । ଫେରେଇ ଦେ ।

ଆଈ କହିଲା, ଡ଼େଭିଡ୍, କଞ୍ଚନ ଠିକ୍ କହିଛି । ପିଟର କଉଡ଼ି ଛୁଇଁବି ନାହିଁ ।

ଡ଼େଭିଡ୍ ସାହେବ ଅଡୁଆରେ ପଡ଼ିଗଲା । କଣ କରିବ, ବୁଝିପାରିଲା ନାହିଁ । ସେ ଚାହିଁଲା, ମାନସିଂ ବଜାରର କରିମ୍ ଖାଁର ଦାଢ଼ିଆମୁହଁକୁ । ତା' ଶଗଡ଼ ଧରି ସେ ରାତିସାରା ଅପେକ୍ଷା କରି ରହିଛି । ପିଟର ସାଇବର ବରାଦ ମୁତାବକ ମୁଢ଼ି, ଚୂଡ଼ା, ଖଇ, ଉଖୁଡ଼ା, ନଡ଼ିଆକୋରା ତାଳପତ୍ର ଭୋଗେଇରେ ଆଈ ଆଉ କଞ୍ଚନ ଦୁହେଁ ସଜାଡ଼ି ଦେଇଥିଲେ ସେ ସବୁ । ଶଗଡ଼ରେ ଲଦି ପିଟର ସାଇବର ବାଟକୁ ଚାହିଁ, କରିମ ଖାଁ ବସିଛି ଯେ ବସିଛି ।

ଆଈର କଥା ଶୁଣି ଡେଭିଡ଼ ପଡ଼ିଲା ମଝି ଦରିଆରେ । ପଚାରିଲା ଆଈ, ଅଭି, କରିମ୍ ଖାଁ କ୍ୟା କରେଗା ?

କଞ୍ଚନ କହିଥିଲା, ମଉସା, ଶ୍ୟାମସୁନ୍ଦର ମନ୍ଦିର ପାଖରେ କବରଖାନାରେ ପିଟର ସାଇବର କବର ଦେବ । ତାର ଚୂଡ଼ା, ମୁଢ଼ି, ଉଖୁଡ଼ା ଗରିବ ପିଲାଙ୍କୁ ଖାଇବାକୁ ଦେଇ ଦେବ । ସେଥିରେ ନିଶ୍ଚୟ ପିଟର ସାଇବର ଆତ୍ମା ଶାନ୍ତି ପାଇବ ।

କଞ୍ଚନର କଥାଟା ଡେ଼ଭିଡ ମଉସାଙ୍କ ମନକୁ ପାଇଗଲା । କରିମ୍ ଖାଁକୁ କବରଖାନା ପାଖକୁ ଶଗଡ଼ ନେବାକୁ କହି ଡେ଼ଭିଡ୍ ସାହେବ ଘୋଡ଼ା ଛୁଟେଇ ଦେଇଥିଲେ ସିଧା ସଙ୍ଖ କୁଠିବାଡ଼ିର ମାର୍ଗାରେଟ୍‌ର କୁଠି ପାଖକୁ ।

ଡେ଼ଭିଡ୍ ସାଇବାର ଘୋଡ଼ାଟି ବାରବାଟୀ ବସ୍ତିର ଧୂଳି ଉଡ଼େଇ ଅଦୃଶ୍ୟ ହେଲାପରେ କଞ୍ଚନ ଆଉ ତା'ର ଆଈ ଦୀର୍ଘଶ୍ୱାସ ପକେଇ ଗଲେ ଘର ଭିତରକୁ । ଅଗଣାରେ ତୁଳସୀ ଚଉରା ମୂଳେ ଖରାରେ ଥପକିନା ବସି ପଡ଼ିଥିଲା କଞ୍ଚନ । ସେ ଆକାଶ ପାତାଳ ଭାବିବାକୁ ଲାଗିଲା: ପିଟର ସାଇବର ଚେହେରାଟାକୁ କଞ୍ଚନ ତା ମନରୁ ପୋଛି ପାରିଲା ନାହିଁ । ପିଟର ଜୀବନରେ ନାହିଁ, ଏ କଥାକୁ ସତ ମଣିବାକୁ ମନ ମୋଟେ ଚାହିଁଲା ନାହିଁ । ଏଇତ ସେ ଦିନର କଥା । ଦୁର୍ଗାପୂଜା ଗଲା । ଦଶରା ପରେ ଘୋଡ଼ା ଛୁଟେଇ ହାଜର ହୋଇଥିଲା ପିଟର । କହିଥିଲା, ଆଈ ଆମ କମ୍ପାନୀର ସିପ୍ ବଲାମଗଡ଼ିର ବାଲାଶୋର ପୋର୍ଟରେ ନଙ୍ଗର ପକାଇଲା । ସୁତାନୁଟୀ କ୍ୟାଲକେଟା ପୋର୍ଟରୁ ସଉଦା ଆଣିଲା । ଏଠି ମାଲ୍ ଲୋଡ଼କରି ଲଣ୍ଡନକୁ ସେଲ କରିବ । କାର୍ତ୍ତିକ ପୂନେଇଁ ଦିନ ଜାହାଜ ଅନୁକୂଳ କରି ଷ୍ଟାର୍ଟ କରିବ ।

ଆଈ କହିଥିଲା, ସବୁବର୍ଷ ତ ଏଇ ସମୟରେ ତୁମ କମ୍ପାନୀ ବୋଇତ ବାଲିଶର କ-ଥ-ନ୍ଦରରୁ ଅନୁକୂଳ କରେ । ସେଥିରେ ଆଉ ନୂଆ କଥା କିସରେ ପିଟର ?

ଆଈର ପ୍ରଶ୍ନ ଶୁଣି ପିଟର ହସିଥିଲା । କହିଥିଲା, ସେଇ ବୋଇତରେ ସେ ବିଲାତକୁ ଯିବ । ଲଣ୍ଡନ ଯିବ ।

ସେଇକଥା କହ । ଗାଁକୁ ଯିବୁ । ସେଥିପାଇଁ ତୋ ମନ ଭାରି ଖୁସୀ । ଓଢ଼ଣାକୁ ସଜାଡ଼ି, ନଥକୁ ଦୋହଲାଇ ହସିଥିଲେ ଆଈ ।

ବୁଝିଲୁ ଆଈ, ଗଲାଥର, ମଝି ଦରିଆରେ, ମାଝି-ମଲ୍ଲା ସମସ୍ତେ ଖାଇବା ପାଇଁ ବହୁତ୍ ହଇରାଣ ହେଲା । ପିଟର କହିଥିଲା ।

ହବନାହିଁ ? ହଇରେ ପିଟର, ତୁମର କଣ ଅକଲ ଅଛି ? ଛଏ କଣ ଦିନକର ବାଟ, ନା ମାସକର ? କାହିଁ ବାଲିଶର ବନ୍ଦର ଆଉ କାହିଁ ଦରିଆ ସେପାରି ବିଲାତର ଲଣ୍ଡନ ମୂଲକ ! ଯେ ପରା ଦରିଆ କଥା । କେତେବେଳେ ବର୍ଷା, କେତେବେଳେ ଝଡ଼ ।

ମୁହଁରୁ ପାଇପ ବାହାର କରି ସେଥିରେ ଧୂଆଁପତ୍ର ପୂରେଇ ଧୂଆଁ ଟାଣି ପିଟର କହିଲା, ଓଃ ୟେସ୍, ଠିକ୍ କହିଲା ଆଇ । ୟେ ସେଇ ଦରିଆର ମର୍ଜି । ଦରିଆ ନୁହେଁ ଅଭିମାନୀ ମାଇକିନିଆ । ତାର ମିଜାଜକୁ ଠଉରେଇବା ମୁସ୍କିଲ ଅଛି । ପାଗ ଅନୁକୂଳ ହେଲା, ବୁଝିଲୁ ଆଇ, ସେ ଦରିଆର ନୀଳପାଣି ଠିକ୍ ତୋର ସେଇ ସୁନା ନଥପିନ୍ଧା ପାନପତର ମୁହଁ, ଧୀର ଶାନ୍ତ, ବହୁତ ସୁନ୍ଦର । ଲେକିନ୍ ପାଗ ବିଗିଡ଼ିଗଲେ, ଅଜା ସଙ୍ଗେ ତୋର କଳି ହେଲେ ତୋ' ଚେହେରା ଯେମିତି ପାଲଟିଯାଏ, ସେ ଦରିଆର ମିଜାଜ ସେମିତି ବିଗିଡ଼ିଯାଏ । ଝଡ଼ତୁଫାନ୍ ହେଲା, ଦରିଆ ବିଗିଡ଼ିଗଲା । ଜାହାଜଟା ମାତାଲ ହେଇଗଲା । ଦରିଆ ପାଣିରେ ଜାହାଜଟା ଦୌଡ଼ିଲା । ଜୀବନ ବିକଳରେ ପାଲର ରସିକୁ ଜାବୁଡ଼ି ଧରି, ଡେ଼କ୍ ଉପରେ ଆଣ୍ଠୁମାଡ଼ି ସମସ୍ତେ ପ୍ରାର୍ଥନା କଲା । କାହାପାଇଁ ମୃତ୍ୟୁଘଣ୍ଟା ବାଜିଲା କେହି କହି ପାରିଲା ନାହିଁ । ସମସ୍ତଙ୍କ ଆଖିରୁ ଲୁହ ଝରିଲା । ଲୁହ ବର୍ଷା ହେଲା ।

ମୁଁ ଜାଣିଚି ପରା । ବିପଦ ନ ପଡ଼ିଲେ ତୁମେ ବିଶ୍ୱାସ କରିବ ନାହିଁ । ଆରେ ପିଟର, ଆମ ନିମକାଳୀ ଭାରି ଜାଗ୍ରତ ଠାକୁରାଣୀ । ଦରିଆପାରି ବୋଇତରେ ପାଦ ଥୋଇଲା ଆଗରୁ ନଡ଼ିଆଟାଏ ପଠେଇ ଦେବୁ, ପୁଝାରୀ ଜଟିଆନନା ପାଖକୁ । ନଡ଼ିଆ ସଙ୍ଗେ ଦିଗଣ୍ଡା କଉଡ଼ି ପଠେଇ ଦବୁ । ସେ ଠାକୁରାଣୀ ପାଖରେ ଦୀପ ଜାଳିବ, ତୋ ଶୁଭମନାସି ପୂଜା କରିବ । ଦେଖିବୁ, ତୋ' ବୋଇତ ବଲାମଗଡ଼ିରୁ ଅନୁକୂଳ କରି ଠିକ୍ ଲାଗିଯିବ ଲଣ୍ଡନ ବନ୍ଦରରେ । ଝଡ଼-ତୁଫାନ-ମେଘ-ବାଆବତାସ ସବୁକୁ ତୁ ପାରେଇ ଯିବୁ ।

ତୁ ଠିକ୍ କଥା କହିଲା ଆଇ । କ୍ୟାପଟେନ୍ ହୀଥ କ୍ୟାଲକେଟା କାଳୀଘାଟରେ କକୋନଟ୍ ଦେଇ ପୂଜା କଲା । ମଥାରେ ସିନ୍ଦୂର ଦେଲା । ଏଥର ହାମେ ଭୁଲିଲା ନାହିଁ । କକୋନଟ୍ ଆଉ କଉଡ଼ି ପିଟର ସାହେବ ପେଶ କରିବ, ଜଟିଆ ପ୍ରିଷ୍ଟ ପୂଜା କରିବ । ପ୍ଲିଜ୍ ଆଇ, କରିମ୍ ଖାଁ ମାରଫତ୍ ତୁ ମୁଡ଼ି ପଠାଇ ଦବୁ, ଲୁଚାଖିଆ ପୀର ଦରଘାରେ ପୂଜା କରିବ । ପିଟର କହିଥିଲା ।

ହଇରେ ପିଟର, ଗାଁକୁ ଯାଉଛୁ । ପିଲାଙ୍କ ପାଇଁ କ'ଣ ନେଲୁ ? ପଚାରିଲା ଆଇ ।

ଆଇଙ୍କ କଥା ଶୁଣି ପିଟର ଲାଜେଇ ଯାଇଥିଲା । ତଥାପି, ଘୋଡ଼ା ପିଠିରୁ ବ୍ୟାଗଟିଏ ଆଣି ଦେଖାଇଲା । କହିଲା, ମାଙ୍କଲପୁରରୁ କପଡ଼ା ଆଣିଲା । ମେରୀ ମୋ ପିଲାର ସାର୍ଟ କରିବ । ତା'ପରେ ଖଣ୍ଡେ ନାଲି ରଙ୍ଗର କାଗଜ ପୁଡ଼ିଆକୁ ଖୋଲି, କହିଲା, ପ୍ଲିଜ୍ ଆଇ, ଏଇଟା ଦେଖ୍ । ଏଇ ନେକ୍ଲେଶ୍ ମେରୀକୁ କିପରି ମାନିବ ?

ଚମ୍ପାକଢ଼ି ସୁନାମାଳି ହାତରେ ଧରି ଖୁସୀରେ ଆଇର ଆଖି ଉଜ୍ଜ୍ୱଳ ଦିଶିଲା । ଆଉ କହିଲା, ଏଇଟା ନିଶ୍ଚେ ମୋତିଗଞ୍ଜ ବଜାରର ବରଜ ମୋହନ ବଣିଆର କାମ । ହଁ, ବରଜୁ ବଣିଆର ହାତର କରାମତି ଅଛି ।

କାହିଁ ଆଈ, ତୁ କହିଲା ନାହିଁ, ମେରୀକୁ ଏଇ ଗୋଲ୍ଡ଼ ନେକଲେଶଟା କେମିତି ମାନିବ ? ପଚାରିଥିଲା ପିଟର ସାଇବ ।

ପିଟର ସାଇବର କଥା ଶୁଣି ମୁରୁକି ହସର ଫୁଲ ବୁଣି ଦେଇଥିଲା ଆଈ । ସେ ହସରେ ଝଟକି ଉଠିଥିଲା ଆଈର ନଥରେ ବସିଥିବା ନାଲିରଙ୍ଗର ପଥରଟି ।

ଭଲକଥା ପଚାରିଲୁରେ ପିଟର । ମୁଁ କ'ଣ ମେରୀକୁ ଆଖିରେ ଦେଖିଚି ? ଅଡୁଆରେ ପଡ଼ିଯାଇଥିଲା ପିଟର । ଚମ୍ପାକଢ଼ି ସୁନାମାଳି ଧରି ଲଣ୍ଡନ ଯାଉଚି ମେରୀର ମନ କିଣିବାକୁ । ଫେରିଲେ, ମାର୍ଗାରେଟକୁ ବାହାହେବ । ହେଲେ ମାର୍ଗାରେଟ୍ ଢ଼େର ଅଧିକ ସୁନ୍ଦରୀ । ଆଈଙ୍କ ଆଗରେ ପିଟର କୁଠିବାଡ଼ିର ପର୍ତ୍ତୁଗୀଜ୍ ଝିଅ ମର୍ଗାରେଟ୍‌ର ନାଁ ଧରିବାକୁ ସଙ୍କୋଚ ଅନୁଭବ କରୁଥିଲା ।

ଏଯାଏ କଞ୍ଚନ ସବୁକଥା ଶୁଣୁଥିଲା । ପିଟର ସାଇବର ମନରେ ସଙ୍କୋଚର କାରଣ କଞ୍ଚନ ଆଗରେ ଅଛପା ନ ଥିଲା । ସେ ଭାବିଲା, ପିଟର ତା'ର ଉପକାର କରିବ । ସୁତରାଂ ସେ ପିଟରକୁ ସାହାଯ୍ୟ କରିବ । ତେଣୁ ସେ କହିଥିଲା, ମେରୀ, ଆମ କୁଠିବାଡ଼ିର ମାର୍ଗାରେଟ୍ ନାନୀଙ୍କ ଭଳି ଦେଖିବାକୁ ହେଇଥିବ, ନାଇଁ ପିଟର ସାଇବ ? କଞ୍ଚନର କଥା ଶୁଣି, ଲାଜରେ ରଙ୍ଗା ପଡ଼ି ଯାଇଥିଲା ପିଟର ସାଇବର ମୁହଁଟି । ପିଟର ବୁଝିଲା, ମାର୍ଗାରେଟ୍ କଥା କଞ୍ଚନ ପାଖରେ ଲୁଚି ରହି ନାହିଁ ।

କଞ୍ଚନର କଥା ଶୁଣି ଆଈ କହିଥିଲେ ଓଃ, ତୋ ଭାରିଜା ମେରୀ ଦେଖିବାକୁ କୁଠିବାଡ଼ିର ସେଇ ଫିରିଙ୍ଗ ମାଇକିନିଆ ମାର୍ଗାରେଟ୍ ଭଳି ? ତା' ହେଲେ, ତୋ' ଭାରିଯାକୁ ଏ ଚମ୍ପାକଢ଼ି ସୁନାମାଳି ଖୁବ୍ ମାନିବ ।

ହଁ ଆଈ, ମେରୀ କହିଥିଲା, ପୁଅ ଜନ ପାଇଁ କଂସାର ଶାମୁକା ଦରକାର । ସେ କ୍ଷୀର ପିଇଲା ନାହିଁ । ମେରୀ କିଚିନ୍ ଘରେ ଦୀପ ଜାଳିବ । ପିଲସଜ ଦରକାର । ଏ ସବୁ ନନେଲେ ନା ମେରୀ ରାଗି ଫାୟାର ହେବ ।

ହଁ, ତୁ ତ ବାବନା ଭୂତ ଭଳି ବୁଲୁଛୁ । ଆଜି ଲଣ୍ଡନ, କାଲି କାଳିଘାଟ । କେବେ ପିପିଲି । କେବେ ପୁଣି ବାଲାଶର । ଏକୁଟିଆ ମାଇକିନିଆ ଲୋକଟା ଚଳିବ କେମିତି ? ସବୁ ଜିନିଷ ତୋ ଭାରିଜାକୁ କିଣି ଦଉନୁ ? ଆଈ କହିଥିଲା ।

ଠିକ୍ କହିଲା ଆଈ । ଏଇ ଲେଡ଼ିସ ଗୁଡ଼ାକ ପାଇଁ ହାମରା ଲାଇଫ୍ ଚାଲିଗଲା । ଏଇ ମେରୀ ପାଇଁ ଦରିଆର ବିପଦକୁ ଭୁଲି ମୁଁ ଲଣ୍ଡନ ଚାଲିଲି । ବୁଝିଲୁ ଆଈ, ଗଲାଥର ଦରିଆରେ ଖାଇବା ପାଇଁ ଯୋଉ ହଇରାଣ ସେ କଥା ମୁଁ କହି ପାରୁନାହିଁ ।

କାହିଁକି, ତୁମର କେକ୍ ବିସ୍କୁଟ ଗୁଲାବ୍ ପଠାଣର ପାଉରୁଟି କ'ଣ ହେଲା ? ଥଟ୍ଟାରେ ପଚାରିଥିଲା କଞ୍ଚନ ।

ବ୍ରେଡ୍ ଥିଲା, କେକ୍‌ଥିଲା ବିସ୍କୁଟ୍ ବି ଥିଲା । ମାସେ ଗଲା । ଛତୁ ଫୁଟିଗଲା । ଗନ୍ଧେଇଲା । ପାଟିକି ଗଲା ନାହିଁ । ଭୋକରେ ସବୁ ଛଟପଟ ହେଲା । ଆମର ମନେ ପଡ଼ିଗଲା । ବାଲାଶୋର ଗୁଡ଼ିଆ ଆଈ ସତ କଥା କହିଥିଲା । ମୁଢ଼ି, ଚୁଡ଼ା, କୋରା ଆଣିଲା ନାହିଁ । ଆମ ଆଖିର ଲୁହ ଝରିଲା । ମଝି ଦରିଆରେ ବସି କାନ୍ଦିଲା । ସେଥିପାଇଁ, ମାସକ ଆଗରୁ ଆସି ପିଟର ସାଇବ ବରାଦ କରିଥିଲା, ତା' ପାଇଁ ମୁଢ଼ି, ଚୁଡ଼ାଭଜା, ନଡ଼ିଆ କୋରା, ଖର-ଉଖୁଡ଼ା ସଜ କରି ରଖିବାକୁ । ଗୁଡ଼ବାଇ କହି ଗଲା ପୂର୍ବରୁ ସେ କହିଥିଲା, ଆଈ ତୁ ଭୁଲିବୁ ନାହିଁ, କାର୍ତ୍ତିକ ପୂନେଇଁ ସକାଳେ କରିମ ଖାଁ ଆସିବ । ମୁଁ ଆସିବି । କଉଡ଼ି ଗଣି ଦେବି । ମହାଜନ ପାଖରୁ କତା ଦଉଡ଼ି, ଦୁକୁଡାପଡର, ଲୁଗା ଖରିଦ କରିବାକୁ ଘୋଡ଼ା ପିଠିରେ ବସିଲା ବେଳକୁ କଞ୍ଚନ ମନେପକେଇ ଦେଇଥିଲା, ହଁ ପିଟର ସାଇବ, ମୋ କଥା ମନେ ଅଛି ତ ?

କଞ୍ଚନର ଲାଜଲାଜ ମୁହଁକୁ ଚାହିଁ ପିଟର ସାଇବ କହିଥିଲା, ଓଃ ଇଏସ, ମନେ ରଗଲା । କଞ୍ଚନ ପାଇଁ ଗ୍ଲାସ ମିରର ଅଲବତ ଆଣିବି ।

ହଁ ସାଇବ, ତୁ କଉଡ଼ି କଥା ଭାବିବୁ ନାହିଁ । ମୁଁ ଖସା ଲଡୁ ଦେବି । ଲଣ୍ଡନର ବ୍ରାଉନ ସାଇବ କୋଠିକି ଯିବୁ । ସାଉକୁ ଲଡୁ ଦେବୁ । ଦର୍ପଣର କଉଡ଼ି ବୁଝିନେବୁ । କଞ୍ଚନ କହିଥିଲା ।

ନାତୁଣୀ କଥା ଶୁଣି ଆଈର ମନେ ପଡ଼ିଗଲା ଭିକାରି କଥା । ଆଈ କହିଥିଲା, ହଁରେ ପିଟର, ତୁମର ସେଇ ବ୍ରାଉନ ସାଇବ କେମିତି ମଣିଷ କହିଲୁ ? ଏମିତି କାର୍ତ୍ତିକ ପୂନେଇଁ ଦିନ ଭିକକୁ ନେଇ ଗଲା ଲଣ୍ଡନ ମୂଲକକୁ । କଣ୍ଟ କରିଥିଲା ବର୍ଷକ ପରେ ଭିକକୁ ଫେରେଇ ଦବ ବୋଲି । କାହିଁ ଚାହୁଁ ଚାହୁଁ ଚାରିବର୍ଷ ବିତିଗଲା ନାତୁଣୀ ଜୋଇଁଟା ଆମ ଗବଗା ଗଦିରେ ବୋଇତ ତିଆରିରେ ବଢ଼େଇ କାମ କରୁଥିଲା । ବ୍ରାଉନ ସାଇବର ତା କାମକୁ ପସନ୍ଦ ହେଇଗଲା । ଟୋକାଟାକୁ ଫୁସୁଲେଇ ନେଇଗଲା, ଆଉ ଦେଖାନାହିଁ ।

ବ୍ରାଉନ ସାହେବ ବହୁତ ବଢ଼ିଆ ଆଦମୀ ଆଈ । ତୋ' ଜୋଇଁ ଭିକ ବହୁତ ଖୁସିରେ ଥିବ । କହିଥିଲା ପିଟର ।

ଚୁଲିକି ଯାଉ ସେ ଖୁସୀ, କଥା ଦେଇ ଯେ କଥା ନ ରଖିଲା ସେ କି ଭଲଲୋକ ? ମୋ ନାତୁଣୀର ମୁହଁକୁ ଚାହିଁ ଦେଖିଲୁ ? ତା ମୁହଁକୁ ଚାହିଁଲେ ମୋ କଲିଜା ଫାଟି ଯାଏ । ହଁ ପିଟର, ତୋତେ କହି ରଖିଲି । ସେ ବ୍ରାଉନ ପାଖରୁ ମୁକୁଲେଇ ଭିକକୁ ଆଣି ସିଧାସଳଖ ତୁ ମୋ ଜିମା ଦେବୁ । ନହେଲେ, ଜାଣିଥା, ଆମ ନିମକାଳୀ ଠାକୁରାଣୀକି । ମୋ ନାତୁଣୀ ମୁହଁକୁ ମୁଁ ଚାହିଁ ପାରୁ ନାହିଁରେ ପିଟର — କହୁଁ କହୁଁ ଆଈ ଶୋକରେ ଭାଙ୍ଗିପଡ଼ିଲା ।

ପିଟର ବ୍ୟସ୍ତରେ କହିଥିଲା ଆଈ, ପ୍ଲିଜ କାନ୍ଦିବୁ ନାହିଁ । ମୁଁ ପ୍ରମିଜ୍ କଲା, ଭିକକୁ ଅଲବତ ୱାପସ ଆଣିବି । ତା'ପରେ ବାରବାଟୀ ବସ୍ତି ଡାଣ୍ଡରେ ଧୂଳି ଉଡ଼େଇ ଘୋଡ଼ା ଛୁଟେଇ ଦେଇଥିଲା ପିଟର ସାହେବ ସେଦିନ ।

ପୂନେଇଁ ଦିନ ସକାଳେ ସକାଳେ ଶଗଡ଼ ଧରି ହାଜର ହୋଇଥିଲା ମାନସିଂବଜାରର କରିମ ଖାଁ । ପିଟରର ବରାଦ ମୁତାବକ ସଉଦା ସଜାଡ଼ି ଦେଇଥିଲେ କଞ୍ଚନ ଆଉ ଆଈ ଦୁହେଁ । ପିଟରକୁ ଚାହିଁ ସଂଜ ବୁଡ଼ିଗଲା, ହେଲେ ପିଟର ଆସି ନଥିଲା । ସକାଳେ ତେଭିତ ମଉସା କହୁଚି କଣନା ପିଟର ସାଇବକୁ କିଏ ଗୁଳିମାରି ଖୁନ କରିଦେଲା ।

ତୁଳସୀ ଚଉରା ମୂଳେ କଞ୍ଚନ ବସି ବସି ସେଇକଥା ଭାବୁଥିଲା । ଶୂନ୍ୟ ହତାଶାର ଝଡ଼ ବହିଗଲା ତା' ଛାତିଭିତରେ । ଭିକ ପାଇଁ ସେ ସାଇତି ରଖିଥିଲା ଭୋଗେଇରେ ଖସାଲଡୁ । ସେଇ ଲଡୁ ଭୋଗେଇଟାକୁ ସେ କଚାଡ଼ି ପକେଇଦେଲା ତୁଳସୀ ଚଉରା ମୂଳେ ଏବଂ କାନ୍ଦି ପକେଇଲା ଆଇଲୋ ଆଈ... । ଆଈ ତର ତର ହୋଇ ଧାଇଁ ଆସି ଦେଖିଲା, ତୁଳସୀ ଚଉରା ମୂଳେ ଝୋଟି ଚିତା ଉପରେ ବିଛେଇ ହୋଇ ପଡ଼ିଛି ଖସାଲଡୁ ସବୁ । ଆଈ ଜାଣିଚି, ତା' ନାତୁଣୀ ଜୋଇଁ ଖସାଲଡୁ ଖାଇବାକୁ କେତେ ଭଲପାଏ । ଆଈ ମଧ କଞ୍ଚନର ମନକଥା ବୁଝିଗଲା । ପିଟର ସାହେବ ମରିଗଲା । ଏ ଖସାଲଡୁ ନାତୁଣୀଜୋଇଁ ପାଖକୁ ପହଞ୍ଚିବ ନାହିଁ କି ପିଟର ଭିକକୁ ଧରି ଫେରିବ ନାହିଁ । କୋହରେ ଭାଙ୍ଗିପଡ଼ିଲା ଆଈ ।

ଆଈ ଆଉ ନାତୁଣୀ ଦିହେଁ କାନ୍ଦି ଉଠିଲେ ।



# ଭଙ୍ଗା ଦର୍ପଣର ମୁହଁ

ମଙ୍ଗଳ ଘଡ଼େଇ ସଙ୍ଗେ ମୋର ପ୍ରଥମ ଦେଖା, ଏଇ ସହରର ରେଳ ଷ୍ଟେସନରେ । ସେଦିନ ମୋ ଭଉଣୀ ଶାନ୍ତିକୁ ନେଇ ଟ୍ରେନ୍‌ରୁ ଓହ୍ଲେଇ ରିକ୍ସାଟିଏ ଖୋଜୁଥିଲି ସହରର କୌଣସି ନର୍ସିଙ୍ଗହୋମକୁ ଯିବାପାଇଁ । ଦେଖିଲି ଆମକୁ ନେବା ପାଇଁ ରିକ୍ସାବାଲାଙ୍କ ଭିତରେ କଳି ଲାଗିଗଲା । ଶେଷକୁ ମଙ୍ଗଳୁ ଜିତିଗଲା ।

ବାଟରେ ସେ ନିଜର ପରିଚୟ ଦେଇ କହିଥିଲା, ତା' ନାଁ ମଙ୍ଗଳ ଘଡ଼େଇ । ସେ ମେଟ୍ରିକ ଯାଏ ପାଠ ପଢ଼ିଥିଲା । ତା' ବାପ ମରିଯାଇ ନଥିଲେ ସେ ମଧ୍ୟ ପାଠପଢ଼ି ଡାକ୍ତର ହୋଇ ଏମିତି ନର୍ସିଙ୍ଗହୋମଟିଏ ଖୋଲିଥାନ୍ତା । ସ୍ତ୍ରୀ ଆଉ ପାଞ୍ଚବର୍ଷର ଝିଅ ଲତାକୁ ନେଇ ତା'ର ସଂସାର । କହୁ କହୁ ସେ ଜଣେଇଥିଲା, ଝିଅକୁ ସେ ପାଠ ପଢ଼େଇବ । ନିଜ ଜୀବନରେ ସିନା ସେ କିଛି କରି ପାରିଲା ନାହିଁ, ହେଲେ ଲତାକୁ ସେ ଜଣେ ଡାକ୍ତର କରିବ ।

ମଙ୍ଗଳୁ ମନରେ ଉଚ୍ଚ ଆଶା ଦେଖି ମୁଁ ଖୁସୀ ହୋଇଥିଲି । ଟିକିଏ ଅନ୍ତରଙ୍ଗ ହେବାରୁ ସେ କହିଥିଲା, ବାବୁ ଅନ୍ୟ ରିକ୍ସାବାଲାଙ୍କ ପାଲରେ ପଡ଼ିଥିଲେ ଆପଣମାନେ ପସ୍ତେଇ ଥାନ୍ତେ । ଆତଙ୍କିତ ହୋଇ ରୋଗୀ ଶାନ୍ତି ପଚାରିଥିଲା, ଆମେ ପସ୍ତେଇ ଥାନ୍ତୁ, କାହିଁକି ?

ସେ କଥା ମୁହଁରେ ଆଉ ମୁଁ କ'ଣ କହିବି ମା ? ଏ ସହରରେ ଯେଉଁ କ୍ଲିନିକ୍ କିମ୍ବା ନର୍ସିଙ୍ଗହୋମ ସବୁ ଅଛି, ସେ ଗୁଡ଼ାକ ନରକ କୁଣ୍ଡ କହିଲେ ଚଳେ । ଏଭଳି ମଇଳା, ଆବର୍ଜନା ! ଦୁର୍ଗନ୍ଧରେ ବାନ୍ତି ହୋଇଯିବ । ସେ ଗୁଡ଼ାକ ସରକାରୀ ଡାକ୍ତରଖାନାଠୁଁ ମଧ୍ୟ ହୀନ । ବୁଝିଲେ ମା, ସେ ସବୁ ଜାଗାରେ ଅପରେସନ କରେଇଲେ ଇନ୍‌ଫେକସନ ହୋଇଯିବ । ଟିଟାନାସ୍ ମଧ୍ୟ ହୋଇପାରେ । ଜୀବନକୁ ନେଇ ଟଣା ଓଟରା ପଡ଼ିଯାଏ ।

ମଙ୍ଗଳୁର ଏଭଳି କଥା ଶୁଣି ରୁଗ୍ଣ ଶାନ୍ତିର ମନ ବିଚଳିତ ହେବା ସ୍ୱାଭାବିକ । ଏଣୁ ମୁଁ ମଙ୍ଗଳୁକୁ ପଚାରିଥିଲି, ଆଉ ତୁ ଆମକୁ ଯେଉଁ ନର୍ସିଙ୍ଗହୋମକୁ ନେଇଯାଉଛୁ ସେଠିକାର ଅବସ୍ଥା ବୋଧହୁଏ ଅପସରା ଭୁବନ କିମ୍ବା ନନ୍ଦନକାନନ ?

ବାବୁ ଆପଣ ନିଜ ଆଖିରେ ଦେଖିବେ ନାହିଁ ? ଚାଲନ୍ତୁ, ଦେଖିବେ କିପରି ସଫା ସୁତୁରା ! ମୋଜାଇକ୍ ଚଟାଣ । ମାର୍ବଲ ପଥରର କାନ୍ଥ । ସବୁ କେବିନ୍‌ରେ ଏ.ସି.ର ବନ୍ଦୋବସ୍ତ ରହିଛି । ମୁଖସ୍ଥ କରିଥିବା ଏକ ସଂକ୍ଷିପ୍ତ ବକ୍ତୃତା ଦେବା ଢଙ୍ଗରେ ସେ କହୁଥିଲା ।

ଏ.ସି.ର ଏରେଞ୍ଜମେଣ୍ଟ ? ସତେ ନା କ'ଣ ? ମୁଁ ପଚାରିଥିଲି । ସେଥିରେ ଉସାହିତ

ହୋଇ ସେଇ ନର୍ସିଙ୍ଗହୋମର ପ୍ରଶସ୍ତିଗାନରେ ପଞ୍ଚମୁଖ ହୋଇ ସେ କହିଥିଲା, ମୁଁ ମିଛ କାହିଁକି କହିବି ? ଆପଣମାନେ ନିଜ ଆଖିରେ ଦେଖିବେ ନାହିଁ ? ତା' ପରେ ଶାନ୍ତିକୁ ଲକ୍ଷ୍ୟ କରି ସେ କହିଥିଲା, ମୁଁ ମା ଆପଣ ଦେଖିବେ ଆମ ନର୍ସିଙ୍ଗହୋମର ବଡ଼ଦିଦିଙ୍କ ମୁହଁର କଥା ନୁହେଁତ ଅମୃତ । ତାଙ୍କ ମଧୁର ବଚନ ଶୁଣିଲେ, ଆପଣ ରୋଗର ଯନ୍ତ୍ରଣା ଭୁଲିଯିବେ । ଆଉ, ଆମ ଡ଼ାକ୍ତର ମିଶ୍ରବାବୁ, ତାଙ୍କ କଥା କ'ଣ ବାବୁ ନିଜେ ଜାଣି ନଥିବେ ? ସର୍ଜରୀରେ ତାଙ୍କ ହାତ ଯଶ ସାରା ଓଡ଼ିଶାରେ ଜଣାଶୁଣା ।

ମଙ୍ଗଳୁର ନଈସୁଅ ଭଳି ବକ୍ତୃତାରେ ବନ୍ଧ ପକାଇବା ପାଇଁ କହିଥିଲି, ହଇରେ ମଙ୍ଗଳୁ, ରୋଗୀ ଆରୋଗ୍ୟ ହୋଇ ତୁମ ନର୍ସିଙ୍ଗହୋମରୁ ଫେରୁଛନ୍ତି ନା ସିଧାସଳଖ ଯମପୁରକୁ ବାଟ ଦେଖୁଛନ୍ତି ?

ମୋ କଥା ଆପଣ ବିଶ୍ୱାସ କରୁନାହାନ୍ତି ବାବୁ ? ଆମ ନର୍ସିଙ୍ଗହୋମ ଅଫିସ ଘରେ ଆପଣ ଦେଖିବେ ନାହିଁ, ଆରୋଗ୍ୟ ହୋଇଥିବା ରୋଗୀମାନଙ୍କର ବଡ଼ ବଡ଼ ଫଟୋ ରହିଛି । ତା'ପରେ ଆଧୁନିକ ଚିକିତ୍ସାବିଜ୍ଞାନର ଚମତ୍କାରିତା ସମ୍ବନ୍ଧରେ ସେ ମୋତେ ବୁଝାଇବାକୁ ଚେଷ୍ଟା କରି କହିଥିଲା, ବୁଝିଲେ ବାବୁ, ଯୁଗ ବଦଳି ଗଲାଣି । ଆପଣ ଟି.ଭି.ରେ ନିଶ୍ଚୟ ଦେଖୁଥିବେ, କି ଚମତ୍କାର ଭାବେ ସଫଳତାର ସହିତ କରାଯାଉଛି ଓପନ ହାର୍ଟ ସର୍ଜରୀ । ମଣିଷର ହୃଦଯନ୍ତ୍ର ବଦଳାଇ ଦିଆଯାଇ ପାରୁଛି । ପୁଣି ମାତୃଗର୍ଭରେ ଥିବା ଭ୍ରୂଣ ଅବସ୍ଥାରୁ ଜାଣି ହେଉଛି, ଆପଣଙ୍କର ପୁଅ କି ଝିଅ ହେବ । ଆଧୁନିକ ଚିକିତ୍ସା ବଳରେ ଅସାଧ୍ୟ ସାଧନ କରିହେବ... ।

ଝିଅକୁ ଡାକ୍ତର କରିବାକୁ ସ୍ୱପ୍ନ ଦେଖୁଥିବା ରିକ୍ସାବାଲା ମଙ୍ଗଳୁ ମୁହଁରୁ ଏଭଳି ବକ୍ତୃତା ଶୁଣି ମୋର ତାକୁ କହିବାକୁ ମନେ ହେଉଥିଲା, ଆରେ ମଙ୍ଗଳୁ, ଟି.ଭି.ର ରଙ୍ଗିନ ପର୍ଦ୍ଦାରେ ଅଦ୍ଭୁତ ଛବି ଦେଖି ମନଖୁସୀ କରିବାରେ ଆତ୍ମତୃପ୍ତି ମିଳିପାରେ । ହେଲେ ବାସ୍ତବ ଜୀବନ ବଡ଼ କଠୋର, ଅତ୍ୟନ୍ତ ନିର୍ଦ୍ଦୟ । ଆମର ସାଧାରଣ ମଣିଷ ଜୀବନରେ ସେ କଥା କଳ୍ପନା କରିବା ବିଳାସିତା ଛଡ଼ା କିଛି ନୁହେଁ ।

ମୁଁ ସେ ସବୁ ତାତ୍ତ୍ୱିକ ଆଲୋଚନା ନକରି, କହିଥିଲି, ମଣିଷ ଜହ୍ନମାଟିରେ ପାଦ ଦେଲେଣି, ଏକଥା ସତ । ପୁଣି ଜହ୍ନରେ କିଛି ଜମି ଖରିଦ କରିବା ପାଇଁ ଟଙ୍କା ଅଗ୍ରୀମ ଦେବାକୁ ମଧ୍ୟ ଲୋକ ଅଛନ୍ତି, ଏକଥା ମଧ୍ୟ ମିଛ ନୁହେଁ । କିନ୍ତୁ ମଙ୍ଗଳୁ ଏକଥା ଜାଣିରଖ, ସେମାନେ ତୁମ ଆମ ପରି ସାଧାରଣ ମଣିଷ ନୁହନ୍ତି । ଓପନ୍ ହାର୍ଟ ସର୍ଜରୀ ହେଉ କି ମାତୃଗର୍ଭରେ ଭ୍ରୂଣ ପରୀକ୍ଷା ହେଉ, ସେସବୁ କ'ଣ ଆମ ହାତ ପାହାନ୍ତାରେ ଅଛି ?

ମୋ କଥା ଶୁଣି ମୋ ମୁହଁକୁ ଚାହିଁଥିଲା ମଙ୍ଗଳୁ । ସେ ଜାଣେ, ରୋଗୀ ବିକଳ ହୋଇ ତାର ବକ୍ତୃତା ଶୁଣନ୍ତି । କିନ୍ତୁ ମୁଁ ସେ ଧରଣର ଲୋକ ନୁହେଁ । ସେ ମୋ ପ୍ରଶ୍ନର

କଣ ଉତ୍ତର ଦେବ ବୁଝି ନପାରି, କଥା ବୁଲେଇବାକୁ ଚେଷ୍ଟାକଲା । ସେ କହିଲା, ବାବୁ ଆପଣ ଆଗରୁ ଜଣାଇ ନାହାନ୍ତି । ନର୍ସିଙ୍ଗହୋମରେ କେବିନ ଖାଲି ନଥିଲେ ଅସୁବିଧା ହେବ । ଆଶଙ୍କାରେ ଅଧୀର ହୋଇ ଶାନ୍ତି ପଚାରିଥିଲା, ତା' ହେଲେ କ'ଣ ହେବ ମଙ୍ଗଳୁ ?

ମଙ୍ଗଳୁ ଖୋଜୁଥିଲା ସେଇ ସୁଯୋଗ । ସେ ଉତ୍ତର ଦେଇଥିଲା, ମୁଁ ଆପଣଙ୍କୁ ନର୍ସିଙ୍ଗହୋମକୁ ଆଣିଛି ଯେତେବେଳେ, ଭଲ କେବିନ୍‌ଟିଏ ଆପଣଙ୍କ ପାଇଁ କରିଦେବିନି ?

ମଙ୍ଗଳୁ ଘଡ଼େଇର ବ୍ୟକ୍ତିଗତ କରାମତି ହେଉ କି ନର୍ସିଙ୍ଗହୋମର କେବିନ ଖାଲିଥାଉ, ସେଇଠି ମୁଁ ଶାନ୍ତିକୁ ଆଡ୍‌ମିଟି କରାଇଦେଇଥିଲି; ଏବଂ ଡାକ୍ତରଙ୍କ ପରାମର୍ଶ କ୍ରମେ ଅପରେଶନ ମଧ୍ୟ କରାଯାଇଥିଲା । ପନ୍ଦରଦିନ ପରେ ଶାନ୍ତିକୁ ନେଇ ମୁଁ ଫେରିଆସିଥିଲି । ନର୍ସିଙ୍ଗହୋମର ଗେଟ୍ ପାଖରେ ଶାନ୍ତିକୁ ଅପେକ୍ଷା କରିବାକୁ କହି ରିକ୍‌ସାଟିଏ ଖୋଜିବାକୁ ମୁଁ ବାହାରି ପଡ଼ିଥିଲି । ଦେଖିଲି, ଆମକୁ ଅପେକ୍ଷା କରି ଗେଟ୍ ନିକଟରେ ଠିଆହୋଇ ରହିଛି, ମଙ୍ଗଳୁ ଘଡ଼େଇ । ମୋତେ ଆଉ ଖୋଜିବାକୁ ପଡ଼ିଲା ନାହିଁ । ହାତ ପାଖରେ ମଙ୍ଗଳୁକୁ ପାଇ ଆମେ ଆଶ୍ୱସ୍ତ ହେଲୁ ।

ଷ୍ଟେସନରେ ପହଞ୍ଚି ରିକସା ଭଡ଼ା ଚୁକ୍ତିକରି, ଆମେ ଦୁହେଁ ଆଗେଇ ଗଲୁ ଟିକଟ୍ ଘରପାଖକୁ । ପଛରୁ ମଙ୍ଗଳୁ ଡାକି କହିଥିଲା, ବାବୁ, ମୋତେ ବକ୍‌ସିସ୍ ମିଳିବନାହିଁ ?

ପୁଣି ବକ୍‌ସିସ୍ ? ବିରକ୍ତ ହୋଇ ମୁଁ ଚାହିଁଥିଲି ମଙ୍ଗଳୁର ମୁହଁକୁ ।

ମଙ୍ଗଳୁ କହିଥିଲା, ଆପଣ ଏମିତି ରାଗୁଛନ୍ତି କାହିଁକି ? ଆପଣତ ଦେଖିଲେ, କେଡ଼େ ବଢ଼ିଆ ଆମ ନର୍ସିଙ୍ଗହୋମ ? କେଡ଼େ ସୁନ୍ଦର ବନ୍ଦୋବସ୍ତ ! ଦିନ ପନ୍ଦରଟା ଭିତରେ ଆପଣଙ୍କ ଭଉଣୀ ସୁସ୍ଥ ହୋଇ ଘରକୁ ଫେରୁଛନ୍ତି । ଆପଣ ଏଠି ହଜାର ହଜାର ଟଙ୍କା ଖର୍ଚ୍ଚ କରିପାରିଲେ, ହେଲେ ମଙ୍ଗଳୁ ରିକ୍‌ସାବାଲାକୁ ଟଙ୍କା ଦଶଟା ବକ୍‌ସିସ୍ ଦେଇଥିଲେ କଣ ଆପଣଙ୍କର ସରିଯାଇଥାନ୍ତା ? ଆଜ୍ଞା, କେଡ଼େ ବଡ଼ଘରର ଝିଅ ସବୁ ଏଇ ନର୍ସିଙ୍ଗହୋମରେ ଏବରସନ କରେଇ ପୁଣି କୁଆଁରୀ ସାଜି ମୋ ହାତରେ ପଚାଶ ଶହେ ଟଙ୍କା ଗୁଞ୍ଜି ଦେଇ ଚାଲିଯାଆନ୍ତି । ପୁଣି ନୂଆବୋହୂମାନେ ପହିଲି ଛୁଆକୁ କୋଳରେ ଧରି ମନ ଖୁସୀରେ ମୋତେ ବକ୍‌ସିସ୍ ଦିଅନ୍ତି, ଆଉ ଆପଣ କ'ଣ ନା... !

ମୁଁ କଡ଼ା ନଜରରେ ଚାହିଁଲି ମଙ୍ଗଳୁର ମୁହଁକୁ । ଏଭଳି ଦାମିକା ନର୍ସିଙ୍ଗହୋମର ଖର୍ଚ୍ଚ ତୁଲେଇବା କଷ୍ଟ କିପରି ବୁଝେଇବି ମଙ୍ଗଳକୁ ? ଶେଷକୁ ଶାନ୍ତିର ଶେଷ ସମ୍ବଳ ଗହଣା କେତୋଟି ମଧ୍ୟ ଖର୍ଚ୍ଚକୁ ନିଅଣ୍ଟ ହେଲା । ପୂର୍ବରୁ ମୋ ପକ୍ଷରେ ଜାଣିବା ସମ୍ଭବ ନଥିଲା, ଏଇ ନର୍ସିଙ୍ଗହୋମକୁ ରୋଗୀ ଆଣିବାପାଇଁ ମୋଟା ଦରରେ କମିସନି ପାଉଥିବା ମଙ୍ଗଳୁ ଜଣେ ଏଜେଣ୍ଟ ଥିଲା । ସେଥିପାଇଁ ରେଳଷ୍ଟେସନରେ ରୋଗୀନେବା ପାଇଁ ରିକ୍‌ସାବାଲାଙ୍କ ଭିତରେ କଳି ହୁଏ । ନର୍ସିଙ୍ଗହୋମରୁ ସବୁ ପାଉଣା ଚୁକ୍ତି କରି, ନର୍ସଠାରୁ

ଆରମ୍ଭ କରି ସୁଇପର ଯାଏ ସମସ୍ତଙ୍କୁ ବକ୍‌ସିସ୍ ଦେଇ ଆମେ ଅତିଷ୍ଠ ହୋଇପଡ଼ିଥିଲୁ । ତେଣୁ ମଙ୍ଗଳୁ ଉପରେ ବିରକ୍ତ ହୋଇ ମୁଁ କହିଥିଲି, ଅପରେସନ୍ ପାଇଁ ଦେହରେ ଛୁରୀ କଇଁଚି ଚଳେଇ ନର୍ସିଙ୍ଗହୋମର ବିଭିନ୍ନ କିସମର ପାଉଣା ଆଦାୟ କରି ସେମାନେ ଯେମିତି ସନ୍ତୁଷ୍ଟ ନୁହନ୍ତି, ରୋଗୀ ଚୁଟେଇ କମିସନି ପାଇ ମଧ ତୁ ଖୁସୀ ନୁହଁ । କାରଣ ଅଙ୍ଗେ ନ ନିଭେଇଲେ ମଣିଷ ଅନ୍ୟର ଦୁଃଖ ବୁଝିପାରେ ନାହିଁ । ସେଥିପାଇଁ କଥାରେ ଅଛି 'ଯେପକ୍ଷୀ ଉଡ଼େ ଯେତେଦୂର ସେ ଜାଣେ ତା'ର ସମାଚାର ।' ତୋତେ ଆଉ ଦୋଷ ଦେବି କ'ଣ ? ଆମ ଦୁଃଖ କଷ୍ଟ ତୁ କେମିତି ବୁଝିବୁ ?

ମୋ କଥା ଶୁଣି ମଙ୍ଗଳୁ ସେଦିନ ପାଟି ଫିଟେଇ ନଥିଲା ।

ସମୟକ୍ରମେ ମୁଁ ମଧ ପାସୋରି ଦେଇଥିଲି ମଙ୍ଗଳୁ ଘଡ଼େଇର କଥାକୁ । ଯା ଭିତରେ ନଈ ସୁଅ ଭଳି ସମୟ ଗଡ଼ିଯାଇଥିଲା । ଦୀର୍ଘ ଦଶ ବାର ବର୍ଷ ପରେ ମଙ୍ଗଳୁ ଘଡ଼େଇ ସଙ୍ଗେ ପୁଣି ଭେଟ ହେବ ଏକଥା ମୁଁ ଭାବି ନଥିଲି । ସେଦିନ କଚେରି କାମ ପାଇଁ ମୁଁ ଆସିଥିଲି ଏଇ ସହରକୁ ଏବଂ ଦୈବାତ୍ ଯେଉଁ ରିକ୍‌ସାରେ ମୁଁ ବସିଥିଲି, ସେଇଟା ଥିଲା ମଙ୍ଗଳୁର ।

ଯାଉ ଯାଉ ବାଟରେ ରିକ୍‌ସାବାଲାଟି ପଚାରିଥିଲା, ବାବୁ, ମୋତେ ଆପଣ ଚିହ୍ନି ପାରିଲେ ନାହିଁ ? ମୁଁ ନିରେଖି ଚାହିଁଥିଲି ତା' ମୁହଁକୁ । ସତକୁ ସତ ମୁଁ ଚିହ୍ନି ପାରି ନଥିଲି । ହେଲେ ମନେହେଲା, ଲୋକଟିକୁ ଆଗରୁ କେଉଁଠି ଦେଖିଛି । ସୁତରାଂ ମୁଁ କହିଥିଲି- ନା ମୋର ମନେ ପଡୁନାହିଁ ।

ବାବୁ, ମୋ ନାଁ ମଙ୍ଗଳୁ ଘଡ଼େଇ ।

ମଙ୍ଗଳୁ ଘଡ଼େଇ ? ପରିଚିତ ନାଁଟି ଶୁଣି ମୁଁ ବିସ୍ମିତ ହେଲି । ଏଇ ସହରର ଜନଅରଣ୍ୟରେ ହଜିଯାଇଥିଲା ମଙ୍ଗଳୁ ଘଡ଼େଇ । ଏବେ ପୁଣି ମୁଁ ତାକୁ ଅକସ୍ମାତ୍ ଖୋଜି ପାଇଲି । ମୋର ସ୍ମୃତିର ଆକାଶରେ ପୁଣି ଜାଗି ଉଠିଲା, ସହରର ସେଇ ନର୍ସିଙ୍ଗହୋମ କଥା । ଭଉଣୀ ଶାନ୍ତିର ସ୍ମୃତି ମଧ ।

ମୁଁ ଟିକିଏ ରୁଷ୍ଟହେବା ଢଙ୍ଗରେ କହିଥିଲି, ମଙ୍ଗଳୁ, ତମର ସେଇ ନର୍ସିଙ୍ଗହୋମକୁ ମୁଁ ତ ଯିବି ନାହିଁ । କହିଲି ପରା କଚେରିକୁ ଯିବି । ମୋର ଆପତ୍ତି ଶୁଣି ହସିଥିଲା ମଙ୍ଗଳ ଘଡ଼େଇ । କହିଥିଲା, ଆପଣ କଚେରିକୁ ଯିବା ସବାରି । ମୁଁ ଆପଣଙ୍କୁ ସେ ନର୍ସିଙ୍ଗହୋମକୁ ନେବି କାହିଁକି ?

ସେ ନର୍ସିଙ୍ଗହୋମର ଏଜେଣ୍ଟ ରିକ୍‌ସାବାଲା ମଙ୍ଗଳୁ ଘଡ଼େଇ ମୁହଁରୁ ଏଭଳି ନିସ୍ପୃହ ଉତ୍ତର ଶୁଣି ମୁଁ ଟିକିଏ ଅବାକ୍ ହେଲି । ମୋର ମନେହେଲା, ସେଇ ଦଶବର୍ଷ ତଳେ ଯାହାକୁ ମୁଁ ଦେଖିଥିଲି, ଯେ ସେ ମଙ୍ଗଳୁ ହୋଇ ରହିନାହିଁ । ସେ ବଦଳି ଯାଇଛି ।

ସେ କିନ୍ତୁ ମୋତେ ପ୍ରଶ୍ନ କରି ଚାଲିଥାଏ; ବାବୁ, ଆପଣତ କାହିଁ ଆଉ ସେ ନର୍ସିଙ୍ଗହୋମକୁ ଆସିନାହାନ୍ତି । ଆପଣଙ୍କ ଭଉଣୀ ନିଶ୍ଚୟ ଭଲ ହୋଇଗଲେଣି ।

ଶାନ୍ତିର କରୁଣ ସ୍ମୃତିକୁ ମୁଁ ପୁଣି ମନେ ପକେଇବାକୁ ଚାହିଁ ନଥିଲି । ମଙ୍ଗଲୁ ପୁଣି ମୋର ପୁରୁଣା କ୍ଷତରେ ଆଘାତ ଦେଲା । ମୁଁ ସେ ଯନ୍ତ୍ରଣା ଅନୁଭବ କଲି । ଉତ୍ତରରେ କହିଥିଲି, ନା ମଙ୍ଗଲୁ, ତୁମର ସେଇ ନର୍ସିଙ୍ଗହୋମକୁ ମୋତେ ଆଉ ଆସିବାକୁ ପଡ଼ିନାହିଁ । ଏଠୁ ଫେରିଯାଇ, ଅଳ୍ପଦିନ ଭିତରେ ସବୁଦିନ ପାଇଁ ଶାନ୍ତି ଆଖିବୁଜି ଦେଇଥିଲା ।

ଆହା, ଭାରି ଦୁଃଖର କଥା । ଦୁଃଖରେ ଦୀର୍ଘଶ୍ୱାସ ଛାଡ଼ିଥିଲା ମଙ୍ଗଲୁ । ମୁଁ ପଚାରିଥିଲି, ମଙ୍ଗଲୁ, ତୋ' ଝିଅର ଖବର କ'ଣ ? ତାକୁ ଡାକ୍ତରୀ ପାଠ ପଢ଼ାଉଛୁ ।

ଝିଅ କଥା ଶୁଣି ମଙ୍ଗଲୁ ମୁହଁ ରକ୍ତହୀନ ଦିଶିଲା । ମୁହଁ ଶୁଖେଇ ସେ କହିଥିଲା, ନା ବାବୁ ଡାକ୍ତରୀ ପାଠ ପଢ଼ିବା ତା' ଭାଗ୍ୟରେ କାହିଁ ହେଲା ?

କାହିଁକି ? ତୁମର ସେ ନର୍ସିଙ୍ଗହୋମ କଥା କ'ଣ ହେଲା ?

ସେ ନର୍ସିଙ୍ଗହୋମ ନାଁ ଧରନ୍ତୁ ନାହିଁ । ସେଇଟା ଗୋଟିଏ ସେବା ଅନୁଷ୍ଠାନ ନୁହେଁ ବାବୁ । ସେଇଟା ସେମାନଙ୍କର ବେଉସାର କେନ୍ଦ୍ର । ଡାକ୍ତର ନର୍ସ ଯେ ଯାହାର ପାଉଣା ଅସୁଲ କରିବା ପାଇଁ ଅଛନ୍ତି । ରୋଗୀ ବଞ୍ଚିଲେ କେତେ.... ମଲେ କେତେ ?

ମଙ୍ଗଲୁ ତୁ ପୁଣି ଏମିତି କଥା କହୁଛୁ ?

ମୁଁ ଯାହା କହୁଚି ସତ କହୁଛି ବାବୁ । ସେ ନର୍ସିଙ୍ଗହୋମ ପାଇଁ କେତେ ରିକ୍ସାବାଲାଙ୍କ ସଙ୍ଗେ ଲଢ଼େଇ କରିଥିଲି । ରୋଗୀଙ୍କୁ ବୁଝେଇ ଶୁଝେଇ ସେଠିକି ଘେନି ଯାଉଥିଲି । ସେ ନର୍ସିଙ୍ଗହୋମ ପାଇଁ ମୁଁ କ'ଣ କରି ନଥିଲି ? ହେଲେ, ମୋ ଜୀବନର ଆଶା ଭରସା, ମୋ ଝିଅଟିକୁ ମରଣ ମୁହଁରୁ ବଞ୍ଚେଇ ପାରିଲି କାହିଁ ? ଯେଉଁଠି ମଣିଷ ପାଇଁ ଦରଦ ନାହିଁ ସେଠି ପଥର ଦେହରେ ମୁଣ୍ଡ ପିଟିବା ସାର ।

କାହିଁକି ? ସେମାନେ ତ ତୋର ଆପଣାର ଲୋକ । ସେ ବଡ଼ଦିଦି, ସେ ଡାକ୍ତର ବାବୁ ?

ପେଟ ରୋଗ ଯନ୍ତ୍ରଣାରେ ମୋ ଝିଅ ଲତାକୁ ବିକଳ ହେବାର ଦେଖି ମୁଁ ଠିକ୍ ସେଇକଥା ଭାବିଥିଲି । ଭାବିଥିଲି, ସେମାନେ ଆପଣାର ଲୋକ । ବଡ଼ ଦିଦି, ଡାକ୍ତର ସମସ୍ତେ ମୋତେ ଜାଣିଛନ୍ତି । ଲତାକୁ ସେମାନେ ନିଶ୍ଚୟ ଭଲ କରିଦେବେ । ଦଶ ବାର ବର୍ଷ ତଳେ ଲତା ବୋଉ ଚିକିତ୍ସା ନପାଇ ମରିଯାଇଥିଲା । ହେଲେ, ବିନା ଚିକିତ୍ସାରେ ମୁଁ ଲତାକୁ ମରିବାକୁ ଦେବିନାହିଁ । ଏଇୟା ଭାବିଥିଲି ।

ତୋ' ଝିଅକୁ ସେଇ ନର୍ସିଙ୍ଗହୋମକୁ ନେଇଥିଲୁ ? ମୁଁ ପଚାରିଥିଲି ।

ହଁ ବାବୁ ନେଇଥିଲି ! ମିଶ୍ରବାବୁ ଟିକିନିଖି ପରୀକ୍ଷା କରିଥିଲେ । ଶେଷକୁ କହିଲେ, ଖୁବ୍ ଶୀଘ୍ର ଅପରେଶନ କରିବାକୁ ପଡ଼ିବ । ଏକମାତ୍ର ଝିଅ ଲତାକୁ ଅପରେଶନ କରିବାକୁ ହେବ ଏକଥା ଶୁଣି ମୋ ଛାତି ଫାଟିଗଲା । ଦୁନିଆ ଅନ୍ଧାର ଦିଶିଲା । ଦିଦି କହିଲେ, ତୋ ଝିଅକୁ ବଞ୍ଚେଇବାର ଅନ୍ୟ କୌଣସି ଉପାୟ ଥିଲେ ମିଶ୍ରବାବୁ ଅପରେଶନ ନାଁ ଧରିନଥାନ୍ତେ । ଯେମିତି ହେଲେ ତୋତେ ତିନିହଜାର ଟଙ୍କା ଯୋଗାଡ଼ କରିବାକୁ ପଡ଼ିବ ।

ତିନିହଜାର ଟଙ୍କା ? ଏତେ ଟଙ୍କା ମୁଁ ପାଇବି କେଉଁଠୁ ? ବିକଳ ହୋଇ ମୁଁ ଧାଇଁ ଯାଇଥିଲି ମିଶ୍ରବାବୁଙ୍କ ଘରକୁ । କାରଣ, ପିଲାଦିନେ ସେଇ ମିଶ୍ରବାବୁ ମୋତେ ଡାକି କହିଥିଲେ, ମଙ୍ଗଳୁ ତୁ ପାଠଶାଠ ପଢ଼ିନୁ । ତୋଦେଇ ଏକାମ ହେବ । ତୁ ମଧ ନଗଦ ଦି' ପଇସା ପାଇବୁ । ରୋଗୀଙ୍କୁ ବୁଝେଇ ସୁଝେଇ ଆମ ନର୍ସିଙ୍ଗହୋମକୁ ଆଣି ପାରିଲେ, ପ୍ରତି ରୋଗୀ ପାଇଁ କୋଡ଼ିଏ ପଚିଶି ଟଙ୍କା କମିସନି ପାଇବୁ । ତାଙ୍କରି ଦୟାରୁ ମୁଁ ଦି' ପଇସା ଅର୍ଜିବାକୁ ବାଟ ପାଇଥିଲି । ମୋ ମେହନତ ପାଇଁ ସେମାନେ ଭଲ ଲାଭପାଉଥିଲେ । ସେମାନେ ଘର ତିଆରି କଲେ, ମଟର କିଣିଲେ । ନର୍ସିଙ୍ଗହୋମକୁ ବଢ଼େଇ ପାରିଲେ । ମୁଁ ଆଶା କରିଥିଲି ମିଶ୍ରବାବୁ, ବଡ଼ ଦିଦି ସେମାନେ ମୋ ବିପଦବେଳେ ସାହାଯ୍ୟ କରିବେ । ଲତା ପାଇଁ ଅନ୍ତତଃ ଫି ଛାଡ଼ କରିଦେବେ ।

କିନ୍ତୁ ମଙ୍ଗଳୁ ଘଡ଼େଇ ରିକ୍ସାବାଲାର କଥା ଶୁଣି ମିଶ୍ରବାବୁ ହସିଥିଲେ । ଅନ୍ୟ ଡାକ୍ତର ଆଉ ସିଷ୍ଟରମାନେ ଥଟ୍ଟା କରିଥିଲେ । ଭଙ୍ଗା ଦର୍ପଣରେ ମୁହଁ ଭଳି ସେମାନଙ୍କ ମୁହଁ ସବୁ ବିକୃତ ଦିଶିଲା । ମିଶ୍ରବାବୁ ମୋତେ କହିଥିଲେ, ଏ ନର୍ସିଂହୋମରେ ଛାଡ଼ କିଏ ଦେବ ? ଏଇଟା ଦାତବ୍ୟ ଚିକିତ୍ସାଳୟ ନୁହେଁ । ରୋଗୀଙ୍କୁ ଆଣି ତୁ ଯେମିତି ତୋ ପାଉଣା ଗଣି ନେଉଛୁ, ନର୍ସ, ଡାକ୍ତର, ବେହେରା ଯେ ଯାହାର ପାଉଣା ଗଣିନେବେ । ନିହାତି ଯଦି ଏଠି ତୋ ଝିଅର ଅପରେଶନ କରିବାକୁ ଚାହୁଁଛୁ, ତୋତେ ଫି ଦାଖଲ କରିବାକୁ ପଡ଼ିବ ।

ସେମାନଙ୍କର ହୃଦୟହୀନ କଥା ଶୁଣି, ମନେହେଲା, ଆକାଶଟା ମୋ ମୁଣ୍ଡ ଉପରେ ଭାଙ୍ଗିପଡ଼ିଲା । ପାଦତଳର ମାଟି ଦବିଗଲା । ମୁଁ ପଶିଗଲି, ପାତାଳର ଅନ୍ଧକାର ଭିତରକୁ । ସେଦିନ, ମନେ ପଡ଼ିଗଲା ଆପଣଙ୍କ କଥା, ମୁଁ ବୁଝିପାରିଲି, ଅଙ୍କେ ନିଭେଇବା ଦୁଃଖ କେଡ଼େ ଦାରୁଣ !

ମଙ୍ଗଳୁର କଥା ଶୁଣି ବ୍ୟଗ୍ର କଣ୍ଠରେ ମୁଁ ପଚାରିଥିଲି, ତା'ପରେ, ତୋ' ଝିଅକଥା କଣ ହେଲା ?

କ'ଣ ଆଉ ହେବ ? ଶେଷକୁ ମୋ ଝିଅକୁ ନେଇ ଭର୍ତିକଲି ସରକାରୀ ଡାକ୍ତରଖାନାରେ । ସ୍କୁଲରେ ଭଲ ପାଠ ପଢୁଥିଲା । ସ୍କୁଲର ବଡ଼ ଦିଦିଙ୍କ ଠାରୁ ଲେଖାନେଇ ମୁଁ ଡାକ୍ତରଖାନାର ବଡ଼ ଡାକ୍ତରଙ୍କୁ ଦେଖାକଲି । ସେମାନେ ଏଡ୍‌ମିଟ୍ କରିନେଲେ ।

ଶେଷକୁ ସରକାରୀ ଡାକ୍ତରଖାନାରେ ଭର୍ତ୍ତିକଲୁ ? ମୁଁ ପଚାରିଥିଲି ।

ଗରିବକୁ ଟିଟାନସ୍‌ର ଡର କଲେ କ'ଣ ଚଳିବ ? କହିଥିଲା ମଙ୍ଗଳୁ ।

ତା'ହେଲେ, ସେଇ ସରକାରୀ ଡାକ୍ତରଖାନାରେ ତୋ' ଝିଅ ଲତାର ଅପରେସନ୍ କରେଇବାକୁ ପଡ଼ିଲା ? ମୋର ଦୁଃଖର ମନ୍ତବ୍ୟ ଶୁଣି ମଙ୍ଗଳୁ ଯାହା କହିଥିଲା ସେଥିରେ ମୁଁ ପଥର ପାଲଟି ଗଲି । ମୋ ମନ୍ତବ୍ୟର ଦୃଢ଼ ପ୍ରତିବାଦ କରି ସେ କହିଥିଲା, ନା ବାବୁ-ମୋ' ଝିଅର ଅପରେସନ ଆଉ ହୋଇପାରିଲା କେଉଁଠି ?

କାହିଁକି ? ମୁଁ ବିସ୍ମୟରେ ପ୍ରଶ୍ନ କରିଥିଲି ।

ମଣିଷ ଚାହିଁଲେ କଣ ହେବ ବାବୁ ? ଯାହା ଭାଗ୍ୟରେ ଯାହା ହେବାର ଥାଏ, ଶେଷକୁ ସେଇକଥା ଘଟେ । ନର୍ସିଙ୍ଗହୋମରୁ ସରକାରୀ ଡାକ୍ତରଖାନାକୁ ନେବା ମଝିରେ ଢ଼େର ଡେରୀ ହୋଇଯାଇଥିଲା । ଅପରେସନ ଟେବୁଲକୁ ନେବା ପୂର୍ବରୁ ମୋ ଝିଅର ଜୀବନପକ୍ଷୀ ଉଡ଼ିଯାଇଥିଲା ।

ମଙ୍ଗଳୁର ଛାତିର ପଞ୍ଜରା ଚିରି ଦୀର୍ଘଶ୍ୱାସ ବାହାରିଗଲା ବୋଧହୁଏ ।

ମୋ ମୁହଁରୁ ଭାଷା ହଜିଯାଇଥିଲା ।



# ଝୁମ୍ରୁ

ମୋ ଝିଅର ସାର୍ଟିଫିକେଟ ଆଣିବା ପାଇଁ ଯାଇଥିଲି ପ୍ରଧାନ ଶିକ୍ଷୟିତ୍ରୀଙ୍କ ପାଖକୁ । ସେଠି ପୁଣି ଦେଖାଗଲା ଝୁମ୍ରୁ ସଙ୍ଗେ, ସଂପୂର୍ଣ୍ଣ ଆକସ୍ମିକ ଭାବେ । ସେଦିନ ସ୍କୁଲ ଛୁଟୀ ଥିଲା । ପ୍ରଧାନ ଶିକ୍ଷୟିତ୍ରୀ ମିସେସ ପଟ୍ଟନାୟକ କ୍ୱାର୍ଟର୍ସରେ ଥିଲେ । ତାଙ୍କ ସଙ୍ଗେ ଦେଖାହେଲା ଅନେକ ଦିନ ପରେ । କାରଣ ବର୍ଷେ ହେବ ସେ ଇଲାକାରୁ ମୋର ବଦଳି ହୋଇ ଯାଇଥିଲା । ଚା' କପଟି ମୋ ହାତକୁ ବଢ଼େଇ ଦେଇ ତାଙ୍କର ସେଇ ସ୍ୱଭାବସୁଲଭ ଢ଼ଙ୍ଗରେ ମିସେସ୍ ପଟ୍ଟନାୟକ ଚଞ୍ଚଳ ହୋଇ ଉଠିଲେ, ଛୋଟ ଝିଅଟି ଭଳି । କହିଲେ, ଏଇ ଯା, ଭୁଲିଯାଇଥିଲି ଆପଣଙ୍କୁ କହିବାକୁ । ଆଜି ଝୁମ୍ରୁ ଆସିଛି । ପୁଣି ଅକସ୍ମାତ୍ ଆପଣ ମଧ୍ୟ ଆସି ପହଞ୍ଚିଲେ । ସୁନ୍ଦର ଯୋଗାଯୋଗ । ଝୁମ୍ରୁ ସଙ୍ଗେ ଦେଖା ହୋଇଯିବ ।

ଝୁମ୍ରୁ ? ମୋ ସ୍ମୃତିର ଆକାଶରେ ଛୋଟ ଏକ ଝଡ଼ର ସଞ୍ଚାର ହେଲା । କେଉଁ ଝୁମ୍ରୁ ? ମୁଁ ପ୍ରଶ୍ନ କଲି ।

ଝୁମ୍ରୁ ମ ! ଆଖିରୁ ଚଷମା ବାହାର କରି କୌତୂହଳର ଆଖିରେ ବିସ୍ମୟ ଖେଳାଇ ସେ ମୋତେ ଚାହିଁଲେ । ମୃଦୁ ହସି ପଚାରିଲେ, ବା ! ଝୁମ୍ରୁ ବୋଲି ସେଇ ଝିଅଟିକୁ ଆପଣଙ୍କର ମନେ ନାହିଁ ? ସେଇ ଯେ ଶୀତ ରାତିରେ, ଝିପିଝିପି ବର୍ଷା ପଡୁଥିଲା । ଆମ ହଷ୍ଟେଲରୁ ଝୁମ୍ରୁ ଅଚାନକ ହଜିଗଲା । ବ୍ୟସ୍ତରେ ଫୋନ କରି ଆପଣଙ୍କୁ ଜଣାଇଲି । ଟୁର୍‌ରୁ ଫେରି କ୍ଲାନ୍ତ ହୋଇ ମଧ୍ୟ ଆପଣ ଧାଇଁ ଆସିଥିଲେ ।

ମୋର ସ୍ମୃତିର ପୃଷ୍ଠା ଆନ୍ଦୋଳିତ ହେଲା ।

ସତେ ତ ! କି ଦୁଃଖର କଥା । ଝୁମ୍ରୁକୁ ପାସୋରି ଯାଇଛି । କିନ୍ତୁ ଭୁଲିଯିବା ସଂଭବ ନୁହେଁ । କାହିଁକି ନା, ସେ ତ କେବଳ ମନେ ରଖିଲା ଭଳି ଝିଅଟିଏ ନଥିଲା । ମୋର ମନେ ହେଉଥିଲା ଝୁମ୍ରୁ ଏକ ଅଦ୍ଭୁତ ଧରଣର ଝିଅ । ଆଦିବାସୀ ଝିଅମାନଙ୍କ ଭିତରେ ଏକ ବିସ୍ମୟ । ଆମର ତଥାକଥିତ ସହରର ସଭ୍ୟ ସମାଜରେ ମନେ ହେଉଥିଲା ଅଦ୍ଭୁତ ବୋଲି, କିନ୍ତୁ ହୁଏତ ସହରଠାରୁ ଦୂର ବଣପାହାଡ଼ଘେରା ଅରଣକ ସମାଜରେ ସେଇୟା ଥିଲା ସ୍ୱାଭାବିକ । ଅଥଚ ଆମକୁ ମନେ ହେଉଥିଲା ଆଶ୍ଚର୍ଯ୍ୟଜନକ, ଅଦ୍ଭୁତ । ତା' ବାପ ମା ଝିଅଟିକୁ ଡାକୁଥିଲେ, ଝୁମ୍ରୁ ବୋଲି । ମୋର ମନେ ହୋଇଥିଲା, ଗଭୀର ଅରଣ୍ୟରେ ସେ ଏକ ପାହାଡ଼ି ଝରଣା, ବଣର ଚଞ୍ଚଳ ହରିଣୀଟିଏ । ସୁନା ପଞ୍ଜୁରିରେ ରହିବାର ଝିଅ ନୁହେଁ । ସେ ଜିଇଁବାକୁ ଚାହୁଁଥିଲା ବଣ ପାହାଡ଼ର ମୁକ୍ତ ପରିବେଶରେ

ଏକ ସ୍ୱାଧୀନ ଜୀବ ଭଳି । ସଭ୍ୟସମାଜର ଇଟା ପଥରର ପାଚେରୀ ଭିତରେ ତାକୁ ଅଣନିଃଶ୍ୱାସିଆ ଲାଗୁଥିଲା । ସୀମାହୀନ ମୁକ୍ତ ଜୀବନର ପରିସୀମାକୁ ଆଇନକାନୁନର ବାଲିବନ୍ଧରେ ବାନ୍ଧିବା ସମ୍ଭବ ନୁହେଁ ।

ଯେତେବେଳେ ନିବିଡ଼ ସବୁଜ ଅରଣ୍ୟର ମେଘମୁକ୍ତ ନୀଳ ଆକାଶର ବୋଳିହୋଇ ଯାଉଥିଲା ମଧୁର ଫଗୁଣର ଫଗୁରଙ୍ଗ, ବଣ ପାହାଡ଼ ବୁକୁରେ ଦାଉଦାଉ କରି ଜଳି ଉଠୁଥିଲା ପଳାଶ ଆଉ କୃଷ୍ଣଚୂଡ଼ାର ଲାଲ୍ ଅଗ୍ନିଶିଖା, ସେତେବେଳେ ଏକ ଉଦ୍ଦାମ ଉଲ୍ଲାସରେ ଝୁମରୁର ଧମନୀରେ ନାଚି ଉଠୁଥିଲା ତା'ର ଆଦିମ ରକ୍ତ । ପ୍ରକୃତିର ଆହ୍ୱାନରେ ଉନ୍ମନା ହୋଇ ଉଠୁଥିଲା, ଅଣନିଃଶ୍ୱାସିଆ ବୋଧ କରୁଥିଲା ହଷ୍ଟେଲର ଇଟାପଥର ଘେରା ଚାରିକାନ୍ଥର ରୁକ୍ଷ ପାଚେରି ଭିତରେ । ଦୂର ସମୁଦ୍ରର ଗୋପନ ଆହ୍ୱାନରେ ନଦୀର ମନ ଚଞ୍ଚଳ ହେଲାଭଳି ପାଗଳ ହୋଇ ଉଠୁଥିଲା ଝୁମରୁର ମନ । ତା'ର ମନ ହେଉଥିଲା, ସେ ମୁକ୍ତଛନ୍ଦରେ ଧାଇଁ ବୁଲିବ ବଣପଥରରେ । ସାଙ୍ଗମାନଙ୍କ ମେଳରେ ସେ ଖୋଜିବ ବଣର ଫଳମୂଳ । ଟୋକେଇ ଧରି ସେ ସାଉଁଟିବ ଝରା ମହୁଲ ।

ଆଷାଢ଼-ଶ୍ରାବଣର ଆକାଶରେ ଯେତେବେଳେ ଗୁରୁ ଗୁରୁ ଶବ୍ଦ କରି ବଣୁଆ ହାତୀ ପଲପରି ମାଡ଼ି ଆସୁଥିଲା କଳାକଳା ବଉଦ ସବୁ, ପ୍ରତିଧ୍ୱନିତ ହେଉଥିଲା ବଣପାହାଡ଼ । ଆକାଶରୁ ଝରି ପଡୁଥିଲା ରିମ୍‌ଝିମ୍ ବର୍ଷାଧାରା । ସେଇ ମେଘ ବିଜୁଳି ବର୍ଷାରେ ଝୁମରୁ ମନ ଚାହୁଁଥିଲା ନାଚି ବୁଲିବାକୁ ବଣ ମୟୂରୀ ସଙ୍ଗେ ନିଜର ପାଦକୁ ମେଳେଇ ।

ପୁଣି ପଉଷର ଝରାପତ୍ର ସବୁ ଯେତେବେଳେ ଝରି ପଡୁଥିଲା ସହରର ମୌସୁମୀ ଗଛର ଦେହମାନଙ୍କରୁ ସେତେବେଳେ ନିବିଡ଼ ବଣ ରାଇଜରେ ସୁନାକେରୀକେରୀ ପାଚିଲା ଧାନର ଢେଉ ଖେଳୁଥିଲା ବିଲରେ କ୍ଷେତରେ । ଶାଳମହୁଲ ବଣରେ ଝରି ପଡୁଥିଲା ପାଗଳ ଜହ୍ନର ରୂପେଲି ବର୍ଷା ବିନ୍ଦୁସବୁ । ଆଉ ବଇଁଶୀଆଳ ଟୋକାଟି ତା'ର ବଇଁଶୀରେ ଗାଁ ଝିଅଙ୍କ ମନ ଉଚାଟ କରି ମନମତାଣିଆ ସ୍ୱରର ଢେଉ ତୋଳୁଥିଲା ଅଜଣା ଗଛର ଡ଼ାଳରେ ବସି । କଞ୍ଚା ଶାଳପତ୍ରର ଦୋନାରେ ପେଟପୂରା ହାଣ୍ଡିଆ ପିଇ ମାଦଳ ବଜାଉଥିଲେ ତରୁଣ ସାଙ୍ଗମାନେ । ସେଇ ମୁହୂର୍ତ୍ତରେ ଝୁମରୁର ମନ ମାନୁନଥିଲା ବନ୍ଦୀ ରହିବାକୁ ହଷ୍ଟେଲର ସେଇ ଧଳା ପାଚେରି ଭିତରେ । ମନ ଚାହୁଁଥିଲା, ଅଣ୍ଟାରେ ହାତକୁ ଛନ୍ଦି ସାଙ୍ଗମାନଙ୍କ ସଙ୍ଗେ ପାଦକୁପାଦ ମେଳେଇ ମାଦଳ ସଙ୍ଗେ ଦେହକୁ ଦୋଳେଇ ମନଖୁସିରେ ସେ ନାଚିବ । ନାଚି ନାଚି ସେ ବିତେଇ ଦେବ ସାରା ଜହ୍ନରାତିଟା । ପାଚିଲା ଫସଲର ମିଠା ମିଠା ବାସନାରେ ପାଗଳ ହେଇ ସମସ୍ତଙ୍କ ସଙ୍ଗେ ସ୍ୱର ମେଳେଇ ସେ ମଧ ଗାଇବ ମୁକ୍ତ କଣ୍ଠରେ ବଣର ଚଢ଼େଇମାନଙ୍କ ଭଳି । ଯାହାର ଅର୍ଥ ହୁଏତ ସାଥିରେ

ରାତିସାରା ଆମେ ଜହ୍ନର ରୂପେଲି ଆଲୁଅର ବର୍ଷାରେ ତିନ୍ତି ତିନ୍ତି ନାଚିବା । ସରିବନି ଏଇ ଜହ୍ନରାତି । ଏଇ ଜହ୍ନକୁ କହିବା ଆମ ମନକଥା । ପୃଥିବୀର ଲୋକ ଭାରି ନିଷ୍ଠୁର । ଆମ କଥା କେହି ନ ଶୁଣିଲେ ବି, ଜହ୍ନ ନିଶ୍ଚୟ ଶୁଣିବ... ଇତ୍ୟାଦି । ଏସବୁ କଥା ମୁଁ ଶୁଣିଥିଲି, ପ୍ରଧାନ ଶିକ୍ଷୟିତ୍ରୀ ମିସେସ୍ ପଟ୍ଟନାୟକଙ୍କ ଠାରୁ, ଝୁମ୍ରୁର ହଷ୍ଟେଲ ସାଙ୍ଗମାନଙ୍କ ମୁହଁରୁ । ତେଣୁ ହେଡ୍‌ମିଷ୍ଟ୍ରେସ୍ ଯେତେବେଳେ ଝୁମ୍ରୁ କଥା କହିଲେ, ସେତେବେଳେ ମୋର ସ୍ମୃତିର ଆକାଶରେ ଧୀରେ ଧୀରେ ଭାସି ଉଠିଲା ଏସବୁ ନାନାରଙ୍ଗର ଦୃଶ୍ୟ । ଭୁଲିଯାଇଥିବା ମିଠା ଗୀତର ସ୍ୱର ପୁଣି ମନେ ପଡ଼ିଗଲା ସତେ ।

ଦେଖନ୍ତୁ ସାର୍, ଝୁମ୍ରୁ ଆପଣଙ୍କୁ ଜୁହାର କରୁଛି । ମିସେସ୍ ପଟ୍ଟନାୟକ କହିଲେ । କେତୋଟି ମୁହୂର୍ତ୍ତ ପାଇଁ ମୁଁ ଆତ୍ମବିସ୍ମୃତ ହୋଇଯାଇଥିଲି । ମିସେସ୍ ପଟ୍ଟନାୟକଙ୍କ କଥା ଶୁଣି, ଚାହିଁ ଦେଖିଲି କୋଣାର୍କର କଳା ମୁଗୁନି ପଥରର ଖୋଦେଇ ଦେହରେ ଦୁଧଭଳି ଧଳା ହାତବୁଣା ଶାଢ଼ିଟିଏ ପିନ୍ଧି ଅଳ୍ପ ଦୂରରେ ମୁଣ୍ଡ ନଇଁ ଜୁହାର କରୁଛି, ଝୁମ୍ରୁ । ପାଦରେ କଂସାର ଓଜନଦାର ଗୋଡ଼ବଙ୍କାର ଶବ୍ଦ ଉଠୁଛି । ଝୁମ୍ରୁ ଉଠି ଠିଆହେଲା । ରୁପାର ନାକଫୁଲ । ଠିଆ ନାକରେ ବିନ୍ଦୁ ବିନ୍ଦୁ ଝଲ ସୁନ୍ଦର ଦିଶୁଛି; ମୋତିଆବିନ୍ଦୁ ଭଳି ।

ମନେ ପଡ଼ିଲା, ପାଞ୍ଚବର୍ଷ ତଳେ ମୁଁ ପ୍ରଥମେ ଦେଖିଥିଲି କିଶୋରୀ ଝୁମ୍ରୁକୁ । ବଣ ପାହାଡ଼ଘେରା ତାଙ୍କର ସେଇ ଗାଁରେ । ପାଞ୍ଚବର୍ଷ ପରେ ଝୁମ୍ରୁ ଢେର ବଦଳି ଯାଇଛି । ଦେହ ଓ ମନ ଉଭୟ ଦିଗରୁ । ବେଶ୍ ସୁନ୍ଦର ଦିଶୁଥାଏ ଯୌବନ ଢ଼ଳଢ଼ଳ ଝିଅଟି ।

କଣ ଝୁମ୍ରୁ, ମୋତେ ଚିହ୍ନି ପାରୁଛ ? ମୁଁ ପ୍ରଶ୍ନ କଲି । ଝୁମ୍ରୁ ମୁଣ୍ଡ ଦୋହଲାଇଲା ଏକ ଅପୂର୍ବ ଭଙ୍ଗୀରେ । ସେ ମୋତେ ଚିହ୍ନି ପାରିଥିଲା । ହେଲେ ତା'ର ମନେ ପଡ଼ିଯାଇଛି, ସେଇ ପୁରୁଣା ଦିନର ଘଟଣା । ନ ଜଣେଇ, ଚାଲିଯାଇଥିଲା । ଅନୁତାପରେ ସେ ଲାଜେଇ ଯାଇଥିଲା । ମୋ ଆଗରୁ ଏକରକମ ଧାଇଁ ପଳେଇ ପରଦା ଆଡୁଆଳରେ ଲୁଚିବାକୁ ସେ ଚେଷ୍ଟା କଲା, ହେଲେ ଚିକ୍‌କଣ କଳା ପାଦରେ ଦିଶୁଥିଲା ସେଇ କଂସାର ଗୋଡ଼ବଙ୍କା ଦୁଇଟି । ପରଦା ସେପଟରୁ ମୃଦୁ ସ୍ୱରରେ ସେ କଣ ଅନୁରୋଧ କଲା, ମୁଁ ଠିକ୍ ବୁଝି ପାରିଲି ନାହିଁ । ମିସେସ୍ ପଟ୍ଟନାୟକ କହିଲେ, ଝୁମ୍ରୁ କହୁଛି, ଆପଣ ଟିକିଏ ବସନ୍ତୁ । ଗାଁରୁ ସେ ଆଣିଛି, ପାଚିଲା ଅମୃତଭଣ୍ଡା, ଆଉ କଣ କଣ !

ମୁଁ ସମ୍ମତି ଜଣେଇ କହିଲି, ମୁଁ ବସୁଛି । ମିସେସ୍ ପଟ୍ଟନାୟକ କହିଲେ, ଝୁମ୍ରୁ ଆପଣଙ୍କୁ ନ ଚିହ୍ନିବ କିପରି ? ସେ ଆପଣଙ୍କ ପାଖରେ ଭାରୀ କୃତଜ୍ଞ । ଆପଣ ତ ଝୁମ୍ରୁକୁ ଆବିଷ୍କାର କରିଥିଲେ ତାଙ୍କର ସେଇ ବଣପାହାଡ଼ ଘେରା ଗାଁର କୁଡ଼ିଆ ଘରୁ । ତାକୁ ଆପଣ ଆଣିଥିଲେ ଆମର ଏଇ ଶିକ୍ଷକ ତାଲିମ୍ କେନ୍ଦ୍ରକୁ ।

ଆଉ କୁହନ୍ତୁ ନାହିଁ ମିସେସ ପଟ୍ଟନାୟକ । ମୋ ଚାକିରି ଜୀବନର ସେ ଭୟଙ୍କର ଅନୁଭୂତି । ଭୁଲିବା ସଂଭବ ନୁହେଁ ।

ମୋର ମନେ ପଡ଼ିଗଲା । ଝୁମ୍‌ରୁ ଆଦିବାସୀ ଝିଅଟାଏ । ହେଲେ ତା'ର ହାତର ଓଡ଼ିଆ ଅକ୍ଷର ଥିଲା ଖୁବ୍ ସୁନ୍ଦର । ତୀକ୍ଷଣବୁଦ୍ଧିସମ୍ପନ୍ନା ଝିଅଟି ଗାଁ ସ୍କୁଲରେ ପଞ୍ଚମ ଶ୍ରେଣୀଯାଏ ପଢ଼ିଥିଲା । ତା' ବାପ ମାଙ୍କୁ ବୁଝେଇ ସୁଝେଇ ଝିଅକୁ ମୁଁ ଆଣିଥିଲି ଏଇ ଶିକ୍ଷକ ତାଲିମ କେନ୍ଦ୍ରକୁ । ଭାବିଥିଲି ତାଲିମ ପାଇଲେ ଶିକ୍ଷୟିତ୍ରୀ ହିସାବରେ ନିଜ ଗାଁ ସ୍କୁଲରେ ଆଦିବାସୀ ପୁଅ-ଝିଅଙ୍କୁ ପାଠ ପଢ଼େଇ ପାରିବ । ଇଂରାଜୀ ଯେମିତି ଆମ ପାଇଁ ବିଦେଶୀ ଭାଷା, ସେ ଅଞ୍ଚଳରେ ଆଦିବାସୀମାନଙ୍କ ପାଇଁ ଓଡ଼ିଆ ସେମିତି ବିଦେଶୀ ଭାଷା । ଜଣେ ଆଦିବାସୀ ଶିକ୍ଷୟିତ୍ରୀଙ୍କ ପାଖରେ ସେଠିକାର ଛୋଟ ପିଲାମାନେ ପାଠ ପଢ଼ିବାକୁ ସଂକୋଚ କରିବେ ନାହିଁ ।

ଦୈବାତ୍ ମୁଁ ଆସିଥିଲି ପ୍ରଧାନ ଶିକ୍ଷୟିତ୍ରୀଙ୍କ ପାଖକୁ ଏବଂ ଅକସ୍ମାତ୍ ଦେଖା ହୋଇଗଲା ଝୁମ୍‌ରୁ ସଙ୍ଗେ । ମୁଁ ପଚାରିଲି, ଏବେ ଝୁମରୁ କୁଆଡ଼େ ଆସିଛ ? ପ୍ରଧାନ ଶିକ୍ଷୟିତ୍ରୀଙ୍କ ମୁହଁରେ ହସ ଖେଳିଗଲା । ସେ କହିଲେ ଜାଣି ଖୁସୀ ହେବେ, ଝୁମରୁ ଆସିଛି ତା'ର ପାସ୍ ସାର୍ଟିଫିକେଟ୍ ନେବାକୁ । ଏବେ ସେ ଜଣେ ଶିକ୍ଷୟିତ୍ରୀର ଚାକିରି ପାଇ ତାଙ୍କ ନିଜ ଗାଁ ସ୍କୁଲରେ ଯୋଗ ଦେଇଛି । ଏ ଖବର ଶୁଣି, ମୋ ମନରେ ଖେଳିଗଲା ନାହିଁ ନଥିବା ଖୁସିର ଜୁଆର । ମୋର ସ୍ୱପ୍ନ ଯେ ଝୁମ୍‌ରୁର ଜୀବନରେ ସଫଳ ହୋଇଛି, ଯାଠାରୁ ଆଉ ଅଧିକ ସୁଖର କଥା କ'ଣ ହୋଇପାରେ ? କିନ୍ତୁ, ତିନିବର୍ଷ ତଳର ସେ ଭୟଙ୍କର ରାତିର ଘଟଣାକୁ ମୁଁ ଭୁଲିଯିବି କିପରି ?

ମନେ ପଡ଼ିଗଲା, ଟୁର୍‌ରୁ ଫେରି ସେଦିନ ସଂଧ୍ୟାରେ ହେଡ୍ ମିଷ୍ଟ୍ରେସ୍‌ଙ୍କ ଠାରୁ ଫୋନ ପାଇ ମୁଁ ଚମକି ଉଠିଥିଲି । ଝୁମରୁ ହଜିଯାଇଛି । ହଷ୍ଟେଲରେ ନାହିଁ, ଭୟଙ୍କର ଦୁଃସମ୍ବାଦ । ବିଭିନ୍ନ ଆଶଙ୍କାରେ ମୋର ରକ୍ତ ଶୀତଳ ହେବାର ଉପକ୍ରମ ହେଲା । ଆଦିବାସୀ ସରଳ ଝିଅକୁ ଭୁଲେଇ ଅସାମାଜିକ ଲୋକ ଦରିଆ ସେପାରି ଦେଶରେ ବିକିବାର ଘଟଣା ବିରଳ ନୁହେଁ । ହଷ୍ଟେଲରେ ତା' ରୁମକୁ ଗଲୁ । ତାର କେଇଖଣ୍ଡ ବହି, ଲୁଗାପଟା, ମଥାର ନାଲିରଙ୍ଗର ରିବନ ସବୁ ପଡ଼ିଛି, କିନ୍ତୁ ଝୁମରୁ ନାହିଁ ।

ମିସେସ୍ ପଟ୍ଟନାୟକ ଆଉ ଝୁମରୁର ସାଙ୍ଗମାନେ ଯାହା କହିଲେ, ତା'ର ମୋଟାମୋଟି କଥା ଏହିପରି: ଗାଁରୁ ଆସିଲାଦିନୁ ଝୁମ୍‌ରୁ ମନରେ ସୁଖ ନଥିଲା, ହସ ମରିଯାଇଥିଲା । ମନମାରି ସବୁବେଳେ ବସି ରହୁଥିଲା । କାହାରି ସଙ୍ଗେ ଗପସପ ହେବାକୁ ସେ ଚାହୁଁନଥିଲା । ଦିନେ ଦିନେ ରାତିରେ ଲୁଚେଇ ଲୁଚେଇ କାନ୍ଦୁଥିଲା, ନିଦରେ ବାଉଳି ହେଉଥିଲା । ବେଳେ ବେଳେ ସେ ସାଙ୍ଗମାନଙ୍କୁ କହୁଥିଲା, ଏଇ ଦେଖିଲୁ, ସେଇ ଗଛ ମୂଳରେ କେତେ ମହୁଲ ଝରି ପଡ଼ିଛି ? ମହୁଲର ମିଠା ବାସନାର ପବନ ମହ ମହ କରୁଛି । ଗାଁରେ ରାତି ପାହାନ୍ତାରୁ ସାଙ୍ଗମାନେ ବଣକୁ ଯାଉଥିବେ, ମହୁଲ ସାଉଣ୍ଟିବାକୁ । ବେଳେ

ବେଳେ ଦୀର୍ଘଶ୍ୱାସ ଛାଡ଼ି ସେ କହୁଥିଲା, ନାଃ ଏଠି କିଛି ସୁଖ ଲାଗୁନି । ଆମ ଗାଁରେ କେଡ଼େ ସୁନ୍ଦର ପାହାଡ଼, ଶାଳ ମହୁଲର ନିଘଞ୍ଚ ବଣ । ରାତିରେ ସେଠି ମାଦଳ ବାଜୁଥିବ । ମହୁଲ ରନ୍ଧା ହେଉଥିବ । ଜହ୍ନ ରାତିରେ ନାଚ ହେଉଥିବ । ରାତିସାରା ନାଚ ଆଉ ଗୀତ । ଆଃ, ସେ କି ମଜା ! ମୋ ସାଙ୍ଗମାନେ କେତେ ମଉଜ କରୁଥିବେ !

ହଠାତ୍ ସେଦିନ ହଷ୍ଟେଲ କୋଠାରୁ ସେ ଦେଖିଲା, ସଡ଼କ ସେପାରିରେ ଧାନକ୍ଷେତ । ଏଇ ସେଦିନ ଶୁଆପଖିଆ ଧାନ କିଆରୀ ଥିଲା । ଆଜି ଧାନ କିଆରି ପାଚିଲା ଧାନରେ ସୁନାରଙ୍ଗ ଧରି କେଡ଼େ ସୁନ୍ଦର ଦିଶୁଛି । ଝୁମରୁ କହିଥିଲା ଦେଖ୍, ଦେଖ୍, ବିଲରେ ଧାନ ପାଚିଲାଣି । ଧାନକେଣ୍ଡାଗୁଡ଼ାକ ନଇଁ ପଡ଼ିଲାଣି ନୂଆବୋହୂଙ୍କ ଭଳି । ଗାଁରେ ସାଙ୍ଗମାନେ ଦଳଦଳ ହୋଇ ଗୀତ ଗାଇଗାଇ ଧାନ କାଟୁଥିବେ । ସକାଳର ସୁନେଲି କିରଣରେ ଦା' ସବୁ ଝଲସି ଉଠୁଥିବ, ଆଉ ସାଙ୍ଗମାନଙ୍କ ମୁହଁରେ ଗୀତର ସୁଅ- ଗୁଣୁଗୁଣୁ କରି ଧାନକଟାର ଗୀତ ନିଜ ଭାଷାରେ ଗାଇ ଉଠିଥିଲା ଝୁମ୍ରୁ ।

ହଠାତ୍ ଦିନେ ଦେଖାଗଲା, ଝୁମ୍ରୁ ଗୁମ୍ ମାରି ବସିଛି । ମୁହଁ ନୁହେଁ ତ, ଧାନ ଉଁଷା ହାଣ୍ଡିଟିଏ । କାହାରି ସଙ୍ଗେ କଥାନାହିଁ । ସେଦିନ ତା'ର ବଢ଼ାଭାତ ପଡ଼ିରହିଲା । ଖଟରେ ଶୋଇ ଆଖିରୁ ଲୁହ ଝରେଇବାକୁ ଲାଗିଲା ।

ସମସ୍ତେ କହିଲେ, ଝୁମରୁର ମୁଣ୍ଡ ବିଗିଡ଼ିଯାଇଛି । କେହି କେହି କହିଲେ, ପ୍ରେତାତ୍ମା ସବାର ହୋଇଛି । ଦୁଷ୍ଟ ପ୍ରେତାତ୍ମା । ବେଳେବେଳେ ସେ ହସିବାକୁ ଲାଗିଲା ଅକାରଣରେ, ପୁଣି କାନ୍ଦିବାକୁ ଲାଗିଲା ।

ସେମାନେ କହିଲେ, ଗୁଣିଆ ଡ଼ାକିବାକୁ ହେବ । କୁକୁଡ଼ା ବଳୀଦେଇ ଶାଳବଣରେ ପୂଜା କରିବାକୁ ପଡ଼ିବ । ନହେଲେ, ସେ ପ୍ରେତାତ୍ମା ଝୁମରୁର ସବୁ ଲହୁ ପିଇଦେଇ, ଶେଷକୁ ଜୀବନ ନେଇଯିବ । ଦେଖୁନ, ଝିଅଟା କେମିତି ଶୁଖି କଳାକାଠ ପଡ଼ିଗଲାଣି ?

ପ୍ରଧାନ ଶିକ୍ଷୟିତ୍ରୀ ଡ଼ାକ୍ତରାଣୀଙ୍କୁ ଡକେଇଲେ । ଡାକ୍ତର ପରୀକ୍ଷା କଲେ କିଛି ଦୋଷ ଆବିଷ୍କାର କରିପାରିଲେ ନାହିଁ । ଖାଲି, ନିଦରେ ଶୋଇବାକୁ ବଟିକା ଦେଲେ । ଦିନ କେଇଟା ଏମିତି କଟିଗଲା । ଝୁମରୁର ମନ ହେଲେ ସ୍କୁଲକୁ ଗଲା । ମନ ନହେଲେ ଖଟରେ ଶୋଇ ରହିଲା ।

ସେଦିନ ସଂଧ୍ୟାରେ ପ୍ରାର୍ଥନା ସଭାରେ ବଡ଼ଦିଦି ଦେଖିଲେ, ଝୁମରୁ ନାହିଁ ।

ଖବର ପାଇ ମୁଁ ଆସିଲି । କହିଲି, ପୋଲିସକୁ ଖବର ଦେବାକୁ ପଡ଼ିବ । ପୁଣି ବିଚାରିଲି, ପୋଲିସକୁ ଦେବା ଆଗରୁ ଝୁମରୁର ଗାଁଟା ଥରେ ଖୋଜି ଆସିଲେ ଭଲ ହୁଅନ୍ତା । କିନ୍ତୁ ଦେଖିଲି, ରାତି ହେଲାଣି । ହାଡ଼ଭଙ୍ଗା ଶୀତ । ଟୁରରୁ ଫେରି ଡ୍ରାଇଭର

କ୍ଲାନ୍ତ । ଦୂରବାଟ । ତା' ଉପରେ ପାଗ ଖରାପ । ଭୟଙ୍କର ଶୀତ ତା' ସାଙ୍ଗକୁ ଝିରି ଝିରି ବର୍ଷା ।

କିନ୍ତୁ ଯିବାକୁ ପଡ଼ିବ । ନିରୁପାୟ । ପଥ ଦୁର୍ଗମ । ପାଦଚଲା ବାଟରେ ଝୁମରୁ ଗାଁ ପନ୍ଦର କୋଡ଼ିଏ କି.ମି. ହେବ । କିନ୍ତୁ ଜିପ୍ ଗଲା ବାଟରେ ଚାଳିଶି କି.ମି.ରୁ କମ୍ ହେବନାହିଁ । ପାହାଡ଼ି ସଡ଼କ । ଉଠାଣି ଗଡ଼ାଣି । ଛୋଟ ଛୋଟ ଚିକ୍‌କଣ ପଥର । ବର୍ଷା ହେଉଛି । ଜିପର ଚକ ଖସିଯିବାର ଆଶଙ୍କା ରହିଛି । ପୁଣି ମଝିରେ ମଝିରେ ଘୋର ବଣ ଜଙ୍ଗଲ ।

ସେଇ ଘନ ଅରଣ୍ୟର ବୁଦା, ଲଟା ଭିତରେ ବାଟ କଢ଼େଇ ଜିପ୍ ଚାଲିବାକୁ ଲାଗିଲା । ହଠାତ୍ ଡ୍ରାଇଭର ଗାଡ଼ିରେ ବ୍ରେକ୍ କସିଦେଲା । ନିଘଞ୍ଚ ଜଙ୍ଗଲ ଭିତରେ ଗାଡ଼ିର ବ୍ରେକ୍ ଦେବାର କାରଣ ଡ୍ରାଇଭରକୁ ପଚାରିବାକୁ ଯାଉଥିଲି, ମୋ ନଜର ପଡ଼ିଗଲା ଆଗକୁ । ଅଳ୍ପ ଦୂରରେ ଗୋଟିଏ ପାହାଡ଼ି ଝର । ସେଇ ଝର ପାଖରେ ଆମେ ଯେଉଁ ଦୃଶ୍ୟ ଦେଖିଲୁ ସେଥିରେ ଆମ ରକ୍ତ ପାଣି ହୋଇଗଲା । ଭୟରେ ତୁଣ୍ଡ ଲେଉଟିଗଲା ନାହିଁ ।

ସର୍କସରେ ବାଘର ଖେଳ ଦେଖିଛୁ । ଯନ୍ତାର ବାଘ । ହେଲେ ସେଇ ନିଘଞ୍ଚ ବଣରେ ଅନ୍ଧାର ରାତିରେ ବଣର ରଜା ମହାବଳ ବାଘ । ଆଖିରେ ଥରେ ନ ଦେଖିଲେ ସେ ଭୟଙ୍କର ଦୃଶ୍ୟର ଅନୁଭୂତି ବୁଝାଇବା ସଂଭବ ନୁହେଁ । ବାଉଁଶ ବୁଦା ଭିତରୁ ବାହାରି ପାଣି ଝର ଆଡ଼କୁ ଯାଉଁ ଯାଉଁ ମହାବଳ ବାଘଟି ଅକସ୍ମାତ ଅଟକି ଯାଇଥିଲା । କଳା ହଳଦିଆ ରଙ୍ଗର ଦୀର୍ଘ ଲାଞ୍ଜଟିକୁ ହଠାତ୍ ଗୋଟିଏ ପଥର ଚଟାଣ ଉପରେ ପିଟିଦେଲା ସେଇ ବାଘ । ସେଇ ଶବ୍ଦରେ ଆମ ହୃତ୍‌ସ୍ପନ୍ଦନ ବନ୍ଦ ହୋଇଯିବାର ଉପକ୍ରମ ହେଲା । ସେଇ ଭୟଙ୍କର ଦୃଶ୍ୟ ଦେଖି ଭୟରେ ଅଜ୍ଞାନ ହୋଇପଡ଼ିବା ଅତି ସ୍ୱାଭାବିକ । କିନ୍ତୁ ଡ୍ରାଇଭର ସେ ଅଞ୍ଚଳର ଲୋକ । ବଣରେ ବାଘକୁ ଭେଟିବା ତା' ପାଇଁ ନୂଆ କଥା ନଥିଲା । ସେ ସାହସ ହରେଇ ନଥିଲା । ଯଥାସମ୍ଭବ ନିଃଶବ୍ଦରେ ସେ ଗାଡ଼ିଟିକୁ ପଛକୁ ହଟେଇ ଆଣିଲା ।

ଆମ ଦି'ଜଣଙ୍କ ମୁହଁରୁ ଭାଷା ହଜି ଯାଇଥିଲା । ପଥର ପାଲଟି ଯାଇଥିଲି । ଗାଡ଼ି କିଛିଦୂର ଫେରିଆସିଲା ପରେ ମୁଁ ସମ୍ବିତ ଫେରି ପାଇଲି । କହିଲି, ଫେରିଚାଲ । ମନେ ମନେ ବିଚାରିଲି, ଅଳ୍ପକେ ଆମେ ବାଘ ମୁହଁରୁ ରକ୍ଷା ପାଇଯାଇଛୁ । କିନ୍ତୁ, ଝୁମରୁ ହଜିଯାଇଥିବା ଘଟଣାର ଗୁରୁତ୍ୱ ଡ୍ରାଇଭର ବୁଝିଥିଲା । କହିଥିଲା ସାର୍, ବାଟ ଟିକିଏ ବୁଲାଣିଆ ହେବ ସିନା, ଝୁମରୁର ଗାଁଟା ମହୁଲପାଲି ଆଉ ବେଶୀ ଦୂର ନୁହେଁ । ଏତେ ବାଟ ଆସିଛନ୍ତି, ଝିଅଟାର ଗାଁ ପାଖରୁ କ'ଣ ଫେରିଯିବା ?

ଅଳ୍ପ ସମୟ ପରେ ଆମ ଗାଡ଼ି ଯାଇ ପହଞ୍ଚିଲା ମହୁଲପାଲି ଗାଁରେ । ବର୍ଷା ଛାଡ଼ିଯାଇଥିଲା । ଶାଳ ମହୁଲର ଘଞ୍ଚ ବଣ । ଗଛଲତା ଫାଙ୍କରେ ଛିଟିକି ପଡୁଥିଲା ଛୋଟିଆ

ଜହ୍ନର ରୂପେଲି କିରଣ । ଅଳ୍ପ ଦୂରରୁ ଭାସି ଆସୁଥିଲା ମାଦଳର ଶବ୍ଦ । ବଣପାହାଡ଼ ଦେହରେ ଉଠୁଥିଲା ସେଇ ମାଦଳ ଶବ୍ଦର ପ୍ରତିଧ୍ୱନି । ପାହାଡ଼ ତଳେ ବିସ୍ତୃତ ପାଚିଲା ଧାନର କ୍ଷେତ । ପାଚିଲା ଧାନର ଲହରୀ ଉପରେ ଭାସିଆସୁଥିଲା ଆଦିବାସୀ ଝିଅମାନଙ୍କ ସମବେତ କଣ୍ଠରୁ ମଧୁର ଗୀତର ସ୍ୱର ।

ଜିପ୍‌ର ଶବ୍ଦ ପାଇ କୁଡ଼ିଆରୁ ବାହାରି ଆସିଥିଲା ଲଗନ କିସ୍‌କୁ, ଝୁମରୁର ବାପା । ମୋତେ ଦେଖି ଜୁହାର କରି କହିଲା, ବାବୁ ତୁ ଝୁମରୁକୁ ଖୋଜୁଛୁ ? ସେ ଆଜି ହାଟର ସାଙ୍ଗ ଝିଅମାନଙ୍କ ସଙ୍ଗେ ଚାଲିଆସିଛି ।

ଝୁମରୁ ଆସିଛି ? ଘରେ ପହଞ୍ଚିଛି ତ ? ଶୁଭ ଖବରଟି ପାଇ ମୁଁ ସ୍ୱସ୍ତିର ନିଃଶ୍ୱାସ ମାରିଲି । ବାଘ ମୁହଁରୁ ପାରିହେଇ, ଏଇ ହାଡ଼ଭଙ୍ଗା ଶୀତ ବର୍ଷାର ରାତିରେ ଆମ ଶ୍ରମ ସାର୍ଥକ ହେଲା । ତା' ହୋଇନଥିଲେ, ପୋଲିସ ପାଖକୁ ଧାଇଁବାକୁ ପଡ଼ିଥାନ୍ତା । ହଜାରେ ପ୍ରଶ୍ନର କୈଫିୟତ୍ ଦେବାକୁ ପଡ଼ିଥାନ୍ତା ପୋଲିସ୍ ଆଗରେ ।

ଝୁମରୁ କାହିଁ ? ମୁଁ ପଚାରିଲି । ମନେହେଲା, ଝୁମରୁକୁ ଥରେ ଆଖିରେ ନ ଦେଖିଲା ଯାଏଁ ମୋ ମନରେ ଶାନ୍ତି ନାହିଁ । ମୋ ପ୍ରଶ୍ନ ଶୁଣି ପିକା ଟାଣୁ ଟାଣୁ ଲଗନ କହିଲା, ବାବୁ ସେ କ'ଣ ଘରେ ରହିବାର ଝିଅ ? ହେ ଦେଖ, ସେଇ ଜାହିରା ପାଖେ ଗାଁର ଝିଅମାନଙ୍କ ସଙ୍ଗେ ସେ ନାଚୁଛି, ଗୀତ ଗାଉଛି ।

ମୁଁ ଚାହିଁ ଦେଖିଲି, ଚାରିଆଡ଼େ ଆରଣ୍ୟକ ଜ୍ୟୋତ୍ସ୍ନାରେ ମଧୁର ପ୍ଲାବନ ସତେ । ନିସର୍ଗ ଛାଇ ଆଲୁଅର ମାୟାଜାଲରେ ବିଶ୍ୱ ପ୍ରକୃତି ବିଭୋର ହୋଇ ଯାଇଛି । ମଧୁର ନୃତ୍ୟ ଛନ୍ଦରେ କିଶୋରୀମାନଙ୍କର ଲୀଳାୟିତ ଦେହସବୁ ଦୂରରୁ ଦିଶୁଥିଲା ସିଲହଟ୍ ଛବିଭଳି । ସମବେତ କଣ୍ଠରୁ ମନଛୁଆଁ ସଙ୍ଗୀତର ସ୍ୱର ଲହରୀରେ ଶିହରିତ ହେଉଥିଲା ସମସ୍ତ ବଣ ପାହାଡ଼ । ସେଇଠି ଝୁମରୁ ମଧ ନାଚୁଥିଲା ଏବଂ ଗୀତ ଗାଉଥିଲା ପ୍ରାଣ ଖୋଲି ।

ଝୁମରୁ ପାଗଳୀ ହୋଇନଥିଲା । ମନ୍ଦ ପ୍ରକୃତିର ପ୍ରେତାତ୍ମା ପ୍ରଭାବରେ ତା'ର ମନ ବିକୃତ ହୋଇନଥିଲା । ବିଶ୍ୱ ପ୍ରକୃତିର ଏଇ ସ୍ୱାଭାବିକ ପରିବେଶରେ ସେ ସ୍ୱଚ୍ଛନ୍ଦରେ ମିଶାଯାଉଥିଲା ତାର ପିଲାଦିନର ସାଙ୍ଗମାନଙ୍କ ସଙ୍ଗେ । ଆମ ଆଧୁନିକ ସମାଜର କୃତ୍ରିମ ପରିବେଶରେ ତା'ର ଶ୍ୱାସରୁଦ୍ଧ ହୋଇଯାଉଥିଲା । ଏଠି ସେ ପୁନର୍ଜୀବନ ପାଇଛି । ସେଇୟା ଯଥେଷ୍ଟ ।

ଝୁମରୁକୁ ଡାକିଦେବି ବାବୁ ? ପଚାରିଥିଲା ଲଗନ୍ କିସ୍‌କୁ ।

ନା ନା । ସାଙ୍ଗ ଝିଅମାନଙ୍କ ସଙ୍ଗେ ନାଚୁଛି, ନାଚୁଥାଉ । ହଁ, ଲଗନ୍, ଝୁମରକୁ ଖାଲି କହିଦେବୁ, ମୁଁ ଆସିଥିଲି ।

ଝୁମରୁକୁ ଡାକି ତା ମନରେ ବିରକ୍ତି ସଞ୍ଚାର କରିବାକୁ ମୁଁ ଚାହୁଁନଥିଲି । ଜାଣିଥିଲି, ଏଇ ପରିବେଶହିଁ ତା ମାନସିକ ରୋଗର ଏକମାତ୍ର ଔଷଧ । ସମୟ କ୍ରମେ ତା'ର ଭୁଲ ସେ ବୁଝିପାରିବ । ତା'ପରେ ଆମେ ଫେରିଆସିଥିଲୁ । ମହାବଳ ବାଘର ଭୟ ମଧ୍ୟ ମନରୁ ଉଭେଇ ଯାଇଥିଲା । ସେଇ ଭୟଙ୍କର ଶୀତ କଥା ଆମେ ପାସୋରି ଦେଇଥିଲୁ । ଝୁମରୁ କେବଳ ଗାଁକୁ ଫେରିନାହିଁ । ସେ ସୁସ୍ଥ ଅଛି । ସାଙ୍ଗମାନଙ୍କ ଗହଣରେ ମନଖୁସିରେ ନାଚୁଛି, ଗୀତ ଗାଉଛି ।

କାହାର ଛାଇ ପଡ଼ିବାରୁ ମୋର ଚମକ ଭାଙ୍ଗିଗଲା । ଚାହିଁ ଦେଖିଲି ଥାଳିରେ କଟା ଫଳ ଧରି ଝିଅଟିଏ ଠିଆ ହୋଇଛି ଏବଂ ତାର ଦୁଇ ଆଖିରୁ ଝରି ପଡୁଛି ଅକୁହା ଖୁସିର ନିର୍ମଳ ଝରଣା । ସେ ସେଇ ଝୁମରୁ ।



# ନରକଙ୍କାଳ

ବନ୍ଟୁ ମରି ଯାଇଚି, ଏକଥା ମାନିବାକୁ ହରି ଜେନା ରାଜି ନୁହେଁ । କଠୋର ଶୁଭିଲେ ବି ଏକଥା ସତ । ବନ୍ଟୁ ଆଉ ନାହିଁ । ବାପ ହରି ଜେନାର ମନେ ହେଲା ତା' ନିଜ ଜୀବନର ସବୁ ଆଶା ଭରସା ପାଣି ଫୋଟକା ଭଳି ଉଭେଇ ଗଲା । ସେ ନିଜ ଜୀବନରେ ଯାହା କରି ପାରିଲା ନାହିଁ, ପୁଅ ଭିତରେ ସେଇଟା ସେ ଦେଖିଥିଲେ ଜୀବନରେ ଶାନ୍ତି ପାଇଥାନ୍ତା । ବନ୍ଟୁକୁ ମଣିଷ ପରି ମଣଷଟିଏ ଗଢ଼ିଥାନ୍ତା । ସେଇ ସଙ୍କଳ୍ପ ନେଇ ସେ ଗାଁ ଛାଡ଼ିଥିଲା । ନହେଲେ ସେ ଏ ସହରକୁ ଆସିଥାନ୍ତା କାହିଁକି ? ସେ ଜାଣିଚି, ଏଇଟା ମଣିଷ ପାଇଁ ନୁହେଁ ଏଇଟା କେବଳ ଇଟା ପଥରର ଜଙ୍ଗଲ । ଘରର କାନ୍ଥର ଇଟା ପଥର ଭଳି ମଣିଷ ସବୁ ହୃଦୟହୀନ । ମାୟା, ମମତା, ସ୍ନେହ, ସହାନୁଭୂତି ଏଠି ସେ ସବୁ କିଛି ନାହିଁ । ହେଲେ, ଖାଲି ବନ୍ଟୁକୁ ମଣିଷ କରିବା ପାଇଁ ଗାଁର ମମତା ଛାଡ଼ି ହରି ଜେନାକୁ ଏଠିକି ଆସିବାକୁ ପଡ଼ିଥିଲା । ମଣିଷ ଭଳି ବଞ୍ଚିବା ପାଇଁ ଗାଁରେ ଆଉ କ'ଣ ଥିଲା ଯେ ! ସୁଖ ସୁବିଧା କାଣିଚାଏ ନଥିଲା, ଏବେବି ନାହିଁ । ଥିଲେ କ'ଣ ଜନମ ମାଟିକୁ ଛାଡ଼ି ଏଇ ଇଟା ପଥରର କାରାଗାରକୁ ସେ ଆସିଥାନ୍ତା ?

ଗାଁ ସ୍କୁଲରୁ ମାଇନର ପାସ୍ କଲା ପରେ ବନ୍ଟୁ ମଧ ତା' ବାପ, ଗୋସବାପଙ୍କ ଭଳି ମୂଲ ଲାଗିଥାନ୍ତା । ନହେଲେ ବଞ୍ଚିବ କେମିତି ? କିନ୍ତୁ ହେଡ୍‌ମାଷ୍ଟର ପତିତପାବନ ସାର କହିଥିଲେ, ହରିଆରେ, ବନମାଳି ଭଲ ପାଠ ପଢୁଛି । ବୃତ୍ତି ପାଇ ସାରା ଜିଲାରେ ଆମ ସ୍କୁଲର ନାଁ ରଖିବ । ନେଇଯା, ସହରର ହାଇସ୍କୁଲରେ ନାଁ ଲେଖିଦବୁ । ହରି ଜେନା ମୂଲିଆଟିଏ । ଦିନ୍ ଆଣିଲେ ଖାଇବ ନହେଲେ ଉପାସ । ସହରର ଖର୍ଚ୍ଚ ତୁଲେଇବ କେମିତି ? ହେଲେ ବୁଢ଼ୀ ଜେଜେମାର ସେଇ ଏକା ଜିଦ୍ । ନାତି ଟୋକା ବାପ ଜେଜେଙ୍କ ଭଳି କ'ଣ ମୂଲ ଲାଗି ପେଟ ପୋଷିବ ? ସେ ପାଠ ପଢ଼ିବ, ଚାକିରି କରିବ, ହାକିମ ହେବ । ତୁଣ୍ଡ ଫିଟେଇ ନ କହିଲେ ବି ବନା ବୋଉ ମନେ ମନେ ସେଇୟା ଚାହୁଁ ଥିଲା । ଜେଜେମାଆ ଆଉ ପତିତପାବନ ସାରଙ୍କ କଥାକୁ ଏଡ଼େଇ ଦେଇ ପାରି ନଥିଲା ହରି ଜେନା । ସେ ବି ନିଜ ମନର ଗହୀର ଭିତରକୁ ଚାହିଁ ଦେଇ ଚମକି ପଡ଼ିଥିଲା । ସେଠି ମିଞ୍ଜି ମିଞ୍ଜି ହୋଇ ଜଳୁଥିଲା, ଗୋପନ ଆଶାର ଦୀପଟିଏ ମା ଆଉ ପତିତପାବନ ସାର୍ ସେ ଦୀପରେ ତେଲ ଢାଳି ଦେଲେ । ଲିଭି ଆସୁଥିବା ଦୀପର ସଳିତାକୁ ଟେଟେଇ ଦେଲେ । ପୁଅ ସଙ୍ଗେ ହରି ବି ଗାଁ ଛାଡ଼ି ବାହାରି ଆସିଥିଲା ଏ ସହରକୁ ।

ହରି ଜେନାର ମନକୁ ଆକଟ କରିବାକୁ ଗାଁରେ କିଛି ନଥିଲା । ଜମି ନା ବାଡ଼ି ?

ସେଥିପାଇଁ ବାପ ମଧୁସୂଦନକୁ ମନେ ମନେ ସେ କେତେ ଅଭିଶାପ ଦେଇଛି । ଏମିତି ବାପ, ମାଣେ କି ଗୁଣେ ପୁଅ ମାଇପଙ୍କ ପାଇଁ କଲା ନାହିଁ । ବିଧବା ମା, ବନାବୋଉ, ବନମାଳୀ ଆଉ ଟିକି ଝିଅ ସୁନାକୁ ନେଇ ମୂଲିଆ ହରି ଜେନା କେମିତି ଗୁଜୁରାଣ ମେଣ୍ଟେଇବ ? ବାପ ମଧୁସୂଦନ ଆଖି ବୁଜି ଦେଲା ପରେ ହରି ଜେନା ବାପ ଜେଜେଙ୍କୁ ଦୋଷ ଦେଇଚି । ହେଲେ ପୁଅ ବନମାଳୀ ବାପକୁ ଦୋଷ ନ ଦେଉ । ସେଥିପାଇଁ ବନମାଳିକୁ ମଣିଷ ଭଳି ମଣିଷଟିଏ ଗଢ଼ିବାକୁ ଅଣ୍ଟା ଭିଡ଼ି ଥିଲା ହରି ଜେନା । ସେ ବି ଦିନେ ଗାଁ ସ୍କୁଲରୁ ମାଇନର ପାସ୍ କରିଥିଲା । କିନ୍ତୁ ବାପ ମଧୁସୂଦନର ହିମ୍ମତ ନଥିଲା, ପୁଅକୁ ସହରରେ ପାଠ ପଢ଼େଇବା ପାଇଁ । ସେଇ ବାପ ପାଖରୁ ହରିଆ କମ ଗାଳିମନ୍ଦ ଖାଇ ନାହିଁ । ଲୁଚି ପିନ୍ଧି ଗାଁ ଟୋକାଙ୍କ ସଙ୍ଗେ କବାଡ଼ି ଖେଳି ଦିନ କଟେଇ ଦେବ ଏକଥା ବାପ ଚାହୁଁ ନଥିଲା । ମାଇନର ପାଠ ପଢ଼ି ସେଇ ଗାଁରେ ମୂଲ ଲାଗିବ ଏ ଲାଜ ଚାହୁଁ ନଥିଲା । ମାଇନର ପାଠ ନଥିଲା । ପୁଅର ମନ କଥା ବୁଝିବାକୁ ଚାହିଁ ନଥିଲା ମଧୁସୂଦନ । ହେଲେ ପୁଅ ବନମାଳୀର ଦୁଃଖ ସହି ନପାରି ସହରକୁ ଚାଲି ଆସିଥିଲା ତା'ର ବାପ ହରି ଜେନା । ମଜୁରୀ ଖଟୁ ଖଟୁ ବ୍ୟାଙ୍କରୁ ଋଣ ନେଇ ସେ ରିକ୍ସାଟିଏ କିଣିଥିଲା । ବସ୍ତିରେ ଛୋଟିଆ ଘରଟିଏ ଭଡ଼ାନେଇ ଦୁଃଖ କଷ୍ଟେ ଚଳୁଥିଲେ ସେମାନେ । ବାପର ହାଡ଼ଭଙ୍ଗା ଖଟଣିର ମୂଲ ଦେବାକୁ ପଛେଇ ନଥିଲା ବନମାଳୀ । ସ୍କୁଲରୁ ଭଲଭାବେ ପାସ୍ କରି କଲେଜରେ ବି.ଏ. ପଢୁଥିଲା ।

କିନ୍ତୁ, ଅକସ୍ମାତ୍ ଦିନେ ପେଟର ବେମାରି ବାହାରିଲା । ଯନ୍ତ୍ରଣାରେ କଉମାଛ ଭଳି ଛଟପଟ ହେବାକୁ ଲାଗିଲା । ଓଷଦ ପାଣି ମାନିଲା ନାହିଁ । ତିନିମାସ ପରେ ବନୁକୁ ନେଇଗଲା ଡାକ୍ତରଖାନାକୁ । ଦୁଃଖ କଷ୍ଟରେ ସଞ୍ଚିଥିବା ପଇସାକୁ ସେ ପାଣିପରି ଖର୍ଚ୍ଚ କଲା । ସମସ୍ତେ ପଇସା ଖର୍ଚ୍ଚ କଲେ ଆଜିକାଲି ଅସାଧ ବେମାରି ଭଲ ହୋଇ ଯାଉଛି । ହରିଜେନା କହିଲା, ପଇସା ଖର୍ଚ୍ଚ ହେଉ, ବନୁର ପେଟମରା ବେମାରି ଭଲ ହୋଇଯାଉ ।

ରକ୍ତ, ଗୁହ, ମୂତ ସବୁ କିଛି ପରୀକ୍ଷା ହେଲା । ଏକ୍ସରେ ହେଲା । ଜଣାଗଲା, ବନୁ ପେଟରେ ପଥର ହେଇଚି । ଅପରେସନ କରିବାକୁ ପଡ଼ିବ । ସେକଥା ଶୁଣି ହରି ଜେନା ମୁଣ୍ଡରେ ବଜ୍ର ପଡ଼ିଗଲା । ସବୁକିଛି ପରୀକ୍ଷା ଏକ୍ସ୍‌ରେ, ଔଷଧ କିଣିବାରେ ସଞ୍ଚିଥିବା ପଇସାତକ ସରିଥିଲା । ଅପରେସନ୍ ପାଇଁ ନଗଦ ଦି'ହଜାର ଟଙ୍କା ସେ ଆଣିବ କେଉଁଠୁ ? ତାର ଏକମାତ୍ର ଅବଲମ୍ବନ ରିକ୍ସା ଖଣ୍ଡିକ । ସେଇଟା ଗଲେ ପେଟକୁ ଦାନା ମିଳିବନି । କିନ୍ତୁ ପୁଅକୁ ବଞ୍ଚେଇବାକୁ ହେଲେ ସେଇଟା ବିକିବାକୁ ପଡ଼ିବ । ଗାଁରେ ବନୁ ବୋଉ, ଶାଶୁ-ଝିଅକୁ ନେଇ କେମିତି ଚଳିବ କିଏ ଜାଣେ ? ନିରୁପାୟ ହରି ଶେଷକୁ ରିକ୍ସା ବିକିଦେଲା । ପେଟକୁ କାଟି ଡାକ୍ତରମାନେ ଜାମୁକୋଳି ଭଳି ଯୋଡ଼ିଏ ପଥର ବାହାର କଲେ । ବଡ଼ ଦିଦି କହିଲେ, ଏଥର ତୁମ ପୁଅ ଭଲ ହୋଇଯିବ । ଗାଁରୁ ବନୁବୋଉ

ଆଉ ମା ଆସି ବନୁକୁ ଦେଖିଗଲେ । ବନୁ କହିଥିଲା, ପେଟରେ ଆଉ ଯନ୍ତ୍ରଣା ନାହିଁ । ପେଟର ଘା ଶୁଖିଗଲେ, ସେ ଗାଁକୁ ଯିବ ।

କିନ୍ତୁ କ'ଣ ହେଲା ? ପେଟର ଘା ଶୁଖିଲା ନାହିଁ । ପୂଯ ହୋଇଗଲା । ସବୁ ଚେଷ୍ଟା ବିଫଳ ହେଲା । ସେଦିନ ପାହାନ୍ତା ବେଳକୁ ବନୁ ରଡ଼ି ଛାଡ଼ିଲା । ହରି ଚମକି ଉଠି ଧାଇଁଲା ବଡ଼ ଦିଦିଙ୍କ ପାଖକୁ । ବଡ଼ ଦିଦି ଡାକ୍ତରଙ୍କୁ ଡାକି ଆଣିଲେ । ଡାକ୍ତର, କମ୍ପାଉଣ୍ଡର ଆଉ ଦିଦିମାନେ ଘେରିଗଲେ । ପରୀକ୍ଷା କରି ଇଂଜକ୍‌ସନ ଦିଆଗଲା । ଡାକ୍ତର ନାଡିକା ଦେଖିଲେ । ତାଙ୍କ ମୁହଁ ଗମ୍ଭୀର ହେଇଗଲା । ମୁଣ୍ଡ ହଲେଇ ନୀରବରେ ଡାକ୍ତର ବାହାରିଗଲେ । ବଡ଼ ଦିଦି ମୁହଁ ଶୁଖେଇ ପକେଇ କହିଲେ, ନା, ବଞ୍ଚେଇ ହେଲାନାହିଁ । କିନ୍ତୁ ବଡ଼ ଦିଦିଙ୍କ କଥାକୁ ମାନିନେଇ ପାରିଲାନି ହରି । ପୁଅର ଧୀର ଶାନ୍ତ ମୁହଁକୁ ଚାହିଁ ତାର ମନେହେଲା, ଡାକ୍ତରବାବୁ ଭୁଲ କହୁଛନ୍ତି । ବଡ଼ ଦିଦି ବୁଝିପାରୁ ନାହାନ୍ତି ବନୁ ନିଶ୍ଚିନ୍ତରେ ଶୋଇଛି ।

ଯେତେ ନିଷ୍ଠୁର ହେଲେ ବି କଥାଟା ନିରୁତା ତ, ଲିଭିଗଲା ଦୀପ ଆଉ ଜଳିବ ନାହିଁ । ଏବେ କ'ଣ କରିବ ହରି ଜେନା ? ବନାବୋଉକୁ, ମା'କୁ ସେ ଜବାବ ଦେଇଥିଲା, ପୁଅକୁ ନେଇ ଯିବ ଗାଁକୁ । ଦୁନିଆଟା ଅନ୍ଧାର ଦିଶିଲା । ଅନ୍ଧକାର ପାତାଳପୁରୀକୁ ସେ ଓହ୍ଲେଇ ଗଲା । ଉଠିବାକୁ ବଳ ପାଇଲା ନାହିଁ । ମନେହେଲା, ସହର ସେପଟେ କିଆବଣ,ଧାନବିଲ, ଗହମ କ୍ଷେତ, ଆଖୁ କିଆରି ପାରି ହେଇ ନଈ ସେପାରିରୁ ସେ ଶୁଣି ପାରୁଛି ବନୁବୋଉ ଆଉ ଜେଜେମାଙ୍କ କରୁଣ ଆର୍ତ୍ତନାଦ । ବନୁ, ବନୁରେ, କାହିଁ ଗଲୁରେ ବନୁ... ବନୁ ମୋ ବନୁରେ.... !

ବଡ଼ଦିଦି ଡାକୁଛନ୍ତି । ହରି ଜେନାର ଚେତା ପଶିଲା ।

ମଉସା, ଖଟ ଖାଲି କରିଦିଅ । ଶୀତ କାକରରେ ଗଛମୂଳେ ରୋଗୀଟି ପଡ଼ିଛି । ଜରୁରୀ କେସ୍ । ବଡ଼ଦିଦି ବ୍ୟସ୍ତରେ ଜଣେଇ ଦେଲେ ।

ସତକଥା । ଖଟ ଖାଲି କରିବାକୁ ପଡ଼ିବ । ଜରୁରୀ ରୋଗୀ ଶୀତ କାକରରେ ଗଛ ମୂଳରେ ଅପେକ୍ଷା କରୁଛି । ବନୁର ପାଳି ଶେଷ ହୋଇଗଲାଣି । ଏବେ ଗଛମୂଳେ, କି ଖରା କାକର ବନୁର କିଛି ଅନିଷ୍ଟ କରି ପାରିବନି ।

ରଜାପୁଅ ମଲାପରେ ମଧ୍ୟ ହରିଜେନା ଜୀବନର ଦୁଃଖର କାହାଣୀ ସରିନାହିଁ । ତାର ଢେର କାମ ବାକି । ଶବକୁ ମଶାଣିକି ନେବାକୁ ହେବ । ଦାହ କରିବାକୁ ପଡ଼ିବ । କିନ୍ତୁ ହରି ଜେନାର ଆଉ ସମ୍ବଳ କାହିଁ ? ଶବକୁ ମଶାଣିକୁ ନେବ କେମିତି ? ଶେଷ କୃତ୍ୟ କରିବ କିପରି ? ଲୁଗା କିଣିବ, କାଠ କିଣିବ କିପରି ? ଇଟା ପଥରର ସହର କ'ଣ ତା'ର ଦୁଃଖ ବୁଝିବ ? ଯେ ତ ପଇସାର ସହର, ପୁଅର ଚିକିତ୍ସା ପାଇଁ ସେ ସମସ୍ତଙ୍କୁ

ପଇସା ଗଣି ଦେଉଚି । କାହାରିଠୁ ଆଶା କରିନି । କିନ୍ତୁ ସେ କଥା ଭାବିଲେ ଆଉ ଚଳିବ ନାହିଁ । ହରି ଜେନାକୁ କିଛି କରିବାକୁ ପଡ଼ିବ । ଖଟ ଖାଲି କରିବାକୁ ପଡ଼ିବ । ବସ୍ତିକୁ ଯାଇ ଧାର ଉଧାର କରି କିଛି ପଇସା ନ ଆଣିଲେ ନ ଚଳେ । ବଡ଼ଦିଦିଙ୍କୁ ସେଇ କଥା ଜଣେଇ ସିଡ଼ିରେ ଟରଟର ହେଇ ଓହ୍ଲେଇ ଯାଉଥିଲା ହରିଜେନା । ସିଡ଼ି ମୁହଁରେ ହେମ ଦିଦି ଡାକିଲେ: ମଉସା, ବିହାରୀ ବାବୁ ଡାକୁଛନ୍ତି ।

ହରି ଜେନାର ପାଦ ଅଟକି ଗଲା । ହେମ ଦିଦିଙ୍କ ବୟସ ଅଳ୍ପ । ଦେଖିବାକୁ ଭାରି ସୁନ୍ଦରୀ । କିନ୍ତୁ, ହରିକୁ ଦେଖି ସେ ମୁହଁକୁ ଶୁଖେଇ ପକେଇଲେ । କହିଲେ, ଜାଣିଚ ମଉସା, ବିହାରୀବାବୁ ସକାଳ ପହରୁ ତମକୁ ଚାହିଁ ବସିଛନ୍ତି ।

ହରି ଜେନାକୁ ଡର କାହିଁ ଶୁଣିବାକୁ ? ବିହାରୀବାବୁ ପୁଣି କିଏ ? ଏଭଳି କୌଣସି ଡାକ୍ତରଙ୍କ ନା ଶୁଣି ନାହିଁ ହରି । ପୁଣି ହେମଦିଦିଙ୍କ କଥାକୁ କଣ ଭାଙ୍ଗି ଦେଇ ହେଉଚି ? ସୁତରାଂ ଦିଦିଙ୍କ କଥା ଅନୁସାରେ ସେ ପରଦାକୁ ଆଡ଼େଇ ପଶିଗଲା ସେଇ ଏନାଟମୀ ବିଭାଗକୁ । ଏଠି ପାଠ ପଢୁଥିବା ନୂଆ ଡାକ୍ତରମାନେ ମଲା ମଣିଷର ଖପୁରି, ହାଡ଼, କଙ୍କାଳ ବିଷୟରେ ପାଠ ପଢ଼ନ୍ତି । କାଚ ବାକ୍ସରେ ଖପୁରି, ହାଡ଼ ଆଉ ନରକଙ୍କାଳ ଗୁଡ଼ାକ ବିଜୁଳି ଆଲୁଅରେ ଝଲସୁ ଥିଲେ । ସେଇ ମାଳ ମାଳ ହାଡ଼ ଆଉ ନର କଙ୍କାଳ ମାନଙ୍କ ଭିତରୁ ଆଗେଇ ଆସିଲେ ଜଣେ ଅପରିଚିତ ଲୋକ । ଆଗେଇ ଆସି ସେ କହିଲେ, ନମସ୍କାର ହରିବାବୁ । ଆସନ୍ତୁ, ଆସନ୍ତୁ, ଏଇ ଚୌକିରେ ବସନ୍ତୁ ।

ଆଶ୍ଚର୍ଯ୍ୟ କଥା ! କିଏ ଏଇ ବିହାରୀବାବୁ ? ଜୀବନରେ ଆଜି ହରି ପହିଲେ ଶୁଣିଲା ନୂଆ କଥାଟିଏ । ସଫାସୁତୁରା ସାର୍ଟ ପିନ୍ଧିଛନ୍ତି ଭଦ୍ରଲୋକ । ପତଳା ଡେଙ୍ଗା ସାବନା ରଙ୍ଗ, ମୁହଁରେ ଦର ପାଚିଲା ନିଶ, ଆଖିରେ ମୋଟା କାଚର ଚଷମା । ରିକ୍ସାବାଲା ହରି ଜେନାକୁ ସେ ନମସ୍କାର ଜଣେଇ ଆପଣ ବୋଲି ସମ୍ବୋଧନ କରୁଛି । ଚୌକିରେ ବସିବାକୁ ଅନୁରୋଧ କରୁଚନ୍ତି । ସେ ଅପ୍ରସ୍ତୁତ ହୋଇ ଚାହିଁଲା ବିହାରୀ ବାବୁଙ୍କ ମୁହଁକୁ । ବିହାରୀବାବୁ ଭଙ୍ଗା ଓଡ଼ିଆରେ କିନ୍ତୁ କହି ଚାଲିଥିଲେ, ହରିବାବୁ, ଭାରି ଦୁଃଖର ବିଷୟ । ଆପଣଙ୍କର ଏକମାତ୍ର ପୁଅ, ବନମାଳୀ, ଆହା, ସୁସ୍ଥ, ସବଳ, ସୁନ୍ଦର ଯୁବକଟିଏ ! ଯେମିତି ଭଲ ଛାତ୍ର ସେମିତି ସ୍ପୋର୍ଟସମ୍ୟାନ୍ । ଏଇ ବୟସରେ ଚାଲିଗଲା, ଶତ୍ରୁର ମଧ ଛାତି ଫାଟିଯିବ ।

ଜଣେ ଅଜଣା ଅଶୁଣା ଲୋକ ମୁହଁରୁ ବନୁପାଇଁ ଦରଦର କଥା ଶୁଣି ଅବାକ୍ ହୋଇଗଲା ହରି ଜେନା । ମନେହେଲା, ବିହାରୀବାବୁ ଅତି ଆପଣାର ଦରଦୀ ବ୍ୟକ୍ତିଟିଏ । ଶୋକରେ ଭାଙ୍ଗି ପଡୁଥିବା ହରି ମନରେ ସାହସ ସଞ୍ଚୟ କରି ପଚାରିଥିଲା, ଆପଣ ମୋ ବନମାଳୀକୁ ଚିହ୍ନିଛନ୍ତି ।

କେବଳ ମୁଁ ନୁହେଁ ହରିବାବୁ, ଏ ଡାକ୍ତରଖାନାର ସବୁ ଡାକ୍ତର, ସିଷ୍ଟରମାନେ ଜାଣିଛନ୍ତି । ବନମାଳୀ ଚାଲିଗଲା, ସେଥିରେ କେବଳ ଆପଣଙ୍କର କ୍ଷତି ନୁହେଁ ହରିବାବୁ, କଲେଜ, ସାରା ସହର, ଏ ଜାତି, ଏ ଦେଶର ଯାହା କ୍ଷତି ହେଲା ତାହା ମୁହଁରେ କହି ହେବନି... କହୁ କହୁ ବିହାରୀବାବୁଙ୍କ କଣ୍ଠ ରୁଦ୍ଧ ହୋଇଗଲା । ମୋଟା କାଚର ଚଷମା ଖୋଲି ରୁମାଲରେ ଆଖି ପୋଛିଲେ ବିହାରୀବାବୁ । ହରି ଜେନାର ବାପର କଳିଜା ଭିତରେ କ'ଣ ହୋଇଗଲା । ଦୁନିଆ ସମ୍ବନ୍ଧରେ ତାର ଧାରଣା ବଦଳିଯିବାକୁ ଲାଗିଲା । ଦୁନିଆରୁ ଦୟାମାୟା ପୂରାପୂରି ଲୋପ ପାଇଯାଇନାହିଁ ।

ସେଇ ବିହାରୀବାବୁ ସହାନୁଭୂତିର ସ୍ପର୍ଶ ଦେଇ ହରି ଜେନାର ଦୁଇ ହାତକୁ ଧରି ଯେତେବେଳେ କହିଲେ, ହରିବାବୁ, ଏଠି ମାସେ କାଳ ସମସ୍ତେ ଆଖିରେ ଦେଖିଚନ୍ତି, ପୁଅ ପାଇଁ ଆପଣ କ'ଣ ନ କରିଛନ୍ତି । ହେଲେ, ଭାଗ୍ୟରେ ଯାହା ହେବାର ଥିଲା ହେଇଗଲା । ସେଠି ମଣିଷର ହାତ ନାହିଁ । ବାପ ମନରୁ ଦୁଃଖ ପୋଛିବାକୁ ଦୁନିଆରେ କାହାରି କ୍ଷମତା ନାହିଁ । ହେଲେ ହରିବାବୁ, ମୋ କଥାଟିଏ ରଖିବେ ? ହରିଜେନାର ମନେହେଲା, ଜୀବନରେ ପହିଲେ ଏମିତି ସେ ବିନୟକଥା ଶୁଣିଲା । ବିହାରୀ ବାବୁଙ୍କ କଥା ନୁହେଁ, ଅମୃତ । ତା' ମନ ତରଳି ଗଲା । ବିହାରୀ ବାବୁଙ୍କ ଭଳି ମହତ ହୃଦୟର ଲୋକ ପାଇଁ ଛାର ରିକ୍ସାବାଲା ହରିଜେନା କଣ କରିପାରିବ ? ତା' ମୁହଁରୁ ସବୁ ଭାଷା ଉଭେଇଗଲା । ସେ ଛଳ ଛଳ ଆଖିରେ ଚାହିଁଲା ମୋଟା କାଚର ଚଷମାତଳେ ବିହାରୀ ବାବୁଙ୍କର ସେଇ ଅଦ୍ଭୁତ କରୁଣା ସୁନ୍ଦର ଆଖିଯୋଡ଼ିକୁ ।

ହରିବାବୁ, ମୋତେ ଶବଟିକୁ ଦେଇଦିଅ । ବିହାରୀବାବୁ ଅନୁରୋଧ କଲେ ।

ହଁ, ହଁ, ମଉସା, ଶବଟିକୁ ଦେଇଦିଅ । ହେମଦିଦି ମଧ୍ୟ ସମର୍ଥନ କଲେ ।

କେବଳ ହରିଜେନା କାହିଁକି, ଦୁନିଆର କୌଣସି ବାପ ଏଭଳି କଥା କେବେ ଶୁଣି ନଥିବ । ସେ ବୁଝି ପାରିଲା ନାହିଁ, ହେମଦିଦି, ଆଉ ବିହାରୀବାବୁ ଏମାନେ ଜାଣିଲେ କେମିତି ଯେ ଶବ ସତ୍କାର କରିବାକୁ ତା' ପାଖରେ କିଛି ସମ୍ବଳ ନାହିଁ । ଗଭୀର କୃତଜ୍ଞତାର ଲୁହ ଢଳ ଢଳ ହରିଜେନାର ଆଖିରୁ କ'ଣ ପଡ଼ିଲେ କିଜାଣି, ଏଇ ଅଜଣା ଆଶଙ୍କାରେ ଚମକି ଉଠିଲେ ବିହାରୀବାବୁ । ସେ ବ୍ୟସ୍ତ ହୋଇ କହିଲେ, ନାହିଁ ନାହିଁ ହରିବାବୁ, ମୁଁ ଖାଲି ହାତରେ ଶବ ନେବିନାହିଁ । ମୁଁ ସେଥିପାଇଁ ତୁମକୁ ଦୁଇଶ' ଟଙ୍କା ଦେବି ।

ଦୁଇଶ' ଟଙ୍କା ! ଦୁନିଆରେ ଏମିତି ଆଶ୍ଚର୍ଯ୍ୟ ଘଟଣା ଘଟିପାରେ ଏକଥା ହରିଜେନାକୁ ଜଣାନଥିଲା । ତାର ମନେ ହେଲା, ବିହାରୀବାବୁ ମଣିଷ ନୁହନ୍ତି ଜଣେ ଦେବଦୂତ ।

ଦୁଇଶ' ଟଙ୍କା, ଆପଣ ମନକୁ ପାଉନି ? ପଚାରିଥିଲେ ବିହାରୀବାବୁ ।

କେମିତି ମନକୁ ପାଉବ ବିହାରୀବାବୁ ? ଡେଡ୍‌ବଡ଼ିର ବୋନ୍‌ରେ କିଛି ଡ଼ିଫେକ୍ଟ ନାହିଁ । କୋଡ଼ିଏ ବର୍ଷର ସୁସ୍ଥ, ସବଳ, ସୁନ୍ଦର ଯୁବକ । ଝରଣାର ଜଳଧାରା ଭଳି ହେମଦିଦିଙ୍କ ମଧୁର କଣ୍ଠସ୍ୱର ଶୁଭୁଥାଏ । ହେଲେ, ହରି ବୁଝିପାରୁ ନଥାଏ, ହେମଦିଦି କ'ଣ କହୁଛନ୍ତି ।

ହେଉ ହେଉ ହରିବାବୁ, ମୁଁ ତିନିଶ ଟଙ୍କା ଦେବାକୁ ରାଜି । ବିହାରୀବାବୁ କହିଲେ ।

ହରି ଜେନା କ'ଣ କହିବ କିଛି ବୁଝିପାରିଲା ନାହିଁ । କିନ୍ତୁ ବିହାରୀବାବୁ ପକେଟ୍‌ରେ ହାତ ପୂରାଇ ଟଙ୍କା ବାହାର କରି ପାଞ୍ଚଶ' ଟଙ୍କା ବଢ଼େଇ ଦେଇଥିଲେ ହରି ଜେନାର ହାତକୁ । ତା' ପରେ ସେ ଅନୁରୋଧ କରିଥିଲେ, ଏଇ ନିଅନ୍ତୁ, ନୂଆ ଲୁଗା ଆଉ ରଜନୀଗନ୍ଧା ଫୁଲର ଗଜରାମାଳ । ପୁଅକୁ ନୂଆ ଲୁଗାରେ ଘୋଡ଼ାଇ ଏଇ ଫୁଲମାଳଟି ପିନ୍ଧାଇ ଦେଇ ଶେଷ ଦର୍ଶନ କରନ୍ତୁ । ଚାଲନ୍ତୁ, ବନମାଳୀବାବୁଙ୍କ ଆତ୍ମାର ଶାନ୍ତି ପାଇଁ ପ୍ରାର୍ଥନା କରିବା ।

କେତୋଟି ମିନିଟ ମଧ୍ୟରେ ଘଟଣା ସବୁ ଘଟିଗଲା । ବିହାରୀବାବୁଙ୍କ ଲୋକମାନେ ଖଟ ଖାଲି କରି ଶବକୁ ବୋହି ନେଇଗଲେ । ଡ଼ାକ୍ତରଖାନା ଗେଟ୍ ନିକଟରେ ଅପେକ୍ଷା କରୁଥିଲା ଭ୍ୟାନ୍‌ଟିଏ । ହରି ଜେନାକୁ ନମସ୍କାର ଜଣାଇ ସେଇ ଭ୍ୟାନ୍‌ରେ ବସି ଚାଲିଗଲେ ବିହାରୀବାବୁ ।

ଆକାଶ ପାତାଳ ଭାବିବାକୁ ଲାଗିଲା ହରି ଜେନା । ସେ ବୁଝିପାରିଲା ନାହିଁ, କାହିଁକି ବନୁର ଶବକୁ ପଇସା ଦେଇ ବିହାରୀବାବୁ କିଣିନେଲେ । ଶବଟିକୁ ନେଇ ସେ କ'ଣ କରିବେ ? ସେଇ କଥା ହେମଦିଦିଙ୍କୁ ନପଚାରି ସେ ରହିପାରିଲା ନାହିଁ ।

ହେମ ଦିଦି କହିଥିଲେ, ତୁମେ ବୁଝି ପାରିଲନି ମଉସା, ବିହାରୀବାବୁ ଜଣେ ନରକଙ୍କାଳର ପୁରୁଣା ବ୍ୟବସାୟୀ ।

ବିସ୍ମୟରେ ହରି ଜେନାର ଆଖି ଖୋସି ହେଇଗଲା । ଆଶ୍ଚର୍ଯ୍ୟ ହୋଇ ସେ ଚାହିଁଥିଲା ହେମଦିଦିଙ୍କ ମୁହଁକୁ । ମଲାମଣିଷଙ୍କ ଖପୁରି, ଆଉ କାଚଘରେ ହାଡ଼ ମାଳମାଳ କଙ୍କାଳ ଗୁଡ଼ିକ ସତେଯେମିତି ଅକସ୍ମାତ ଚେଇଁ ଉଠିଲେ । ଆଉ ସୁନ୍ଦରୀ ହେମଦିଦିଙ୍କ ମୁହଁଟି କେମିତି କେମିତି କୁତ୍ସିତ ଦିଶିଲା ଭଳି ମନେହେଲା । ଅଣନିଃଶ୍ୱାସିଆ ମନେହେଲା ହରି ଜେନାକୁ । ସେ ତରତର ହୋଇ ବାହାରି ଆସିଲା । ସହରର ଅସୁମାରି ଜନଗହଳି ଭିତରେ ସେ କିନ୍ତୁ ଆଜି ନିଜକୁ ହଜାଇଦେଇ ପାରିଲାନାହିଁ । ତାର ମନେହେଲା, ବାଟଘାଟ, ଦୋକାନ ବଜାର କେଉଁଠି ହେଲେ ରକ୍ତମାଂସର ମଣିଷକୁ ସେ ଦେଖି ପାରୁନାହିଁ । ଯେଉଁ

ରକ୍ତମାଂସର ସୁନ୍ଦର ରୂପରେ ମୁଗ୍ଧ ହୋଇ ମଣିଷ ପ୍ରେମ କରନ୍ତି, ସ୍ନେହ କରନ୍ତି, ଭଲ ପାଆନ୍ତି ଆଜି କାହାର କାଉଁରୀ ହାଡ଼ର ସ୍ପର୍ଶରେ ସେ ରୂପ ଯେମିତି ଉଭେଇ ଯାଇଛି । ସବୁଠି ସେ ଦେଖୁଚି ସେଇ ଭୟଙ୍କର ବୀଭତ୍ସ ଦୃଶ୍ୟ । ମୁଣ୍ଡ ନୁହେଁ ଖପୁରି, ମଣିଷ ନୁହନ୍ତି, କେବଳ ନରକଙ୍କାଳ । ଆଉ କୌଣସି ଅଦୃଶ୍ୟ ସ୍ଥାନରେ ବସି ମୋଟା ଚଷମା ତଳେ ଲକ୍ଷ୍ୟ କରୁଛନ୍ତି ବିହାରୀବାବୁଙ୍କ ଭଳି ନରକଙ୍କାଳର ବ୍ୟବସାୟୀମାନେ ।।



# ମଲାନଈର ଇତିକଥା

ଏଇ ସେ ମଲାନଈ । ତା'ରି କୂଳରେ ମଶାଣି । ଧଳା ପାଉଁଶ ଆଉ କଳା କୋଇଲା ଏଠି ମିଶି ଏକାକାର ହୋଇଯାଇଛି । ସୁଦର୍ଶନବାବୁଙ୍କ ଆଖି ଆଗରେ ଥୁଆ ହୋଇଛି ବୋଉଙ୍କର ଶବାଧାର । ଅଜସ୍ର ଫୁଲରେ ଢ଼ାଙ୍କିଯାଇଛି ବୋଉଙ୍କ ଶୀର୍ଣ୍ଣ ଦେହଟି । ଦାମିକା ଫୁଲ ଭିତରୁ ଦିଶୁଥିଲା ବୋଉଙ୍କର ମୁହଁଟି । ଏଇ ନିର୍ଜନ ମଶାଣିରେ ଏକାନ୍ତରେ ବୋଉଙ୍କ ମୁହଁରେ ସେ ଖୋଜୁଥିଲେ ପରିତୃପ୍ତିର ସଙ୍କେତ । ମଶାଣି ନୁହେଁ ତ, ଧଳାପାଉଁଶ, କଳା କୋଇଲା, କଙ୍କାଳ ଆଉ ମୁଣ୍ଡର ଖପୁରିର ବିଛଣା । ତାରି ଉପରେ ବସି ସେ ଦେଖୁଥିଲେ ତାଙ୍କ ଜନମକଲା ମା'ଙ୍କର ମୁହଁଟିକୁ । କିନ୍ତୁ ଅକସ୍ମାତ୍ ମନର ଅନ୍ଧାର କୋଣରେ ସଞ୍ଜଦୀପ ଭଳି ଜଳି ଉଠିଥିଲା ଚନ୍ଦନାର ମୁହଁଟି ।

ମଲାନଈ, ବୋଉ, ଆଉ ଚନ୍ଦନା, ଏଇ ତିନିଗୋଟି ସତ୍ତା ମଧ୍ୟରେ ଆଜି କୌଣସି ପାର୍ଥକ୍ୟ ଖୋଜି ପାଉ ନଥିଲେ । ଏବଂ ସେଇ ନିର୍ଜନ ଏକାନ୍ତ ମୁହୂର୍ତ୍ତରେ ନିଜକୁ ମନେହେଲା, ଜୁଇର ଦରପୋଡ଼ା ଅଲୋଡ଼ା ଖଣ୍ଡେ କାଠ ମାତ୍ର ।

ଜୀବନର ବାର୍ଦ୍ଧକ୍ୟରେ ମଲାନଈକୁ ଦେଖି ମନେ ପଡୁଛି, ଏ ନଈ ଛାତିର ପିଞ୍ଜରା ହାଡ଼ଭଳି ଏକାନ୍ତ ଆପଣାର । ପିଲାଦିନେ ସେ କେତେଥର ଯାଇଛନ୍ତି ନଈ ସେପାରି ତାଷ ଗାଁ ପଦ୍ମପୋଖରୀକୁ । ସାଙ୍ଗରେ କେବେ ବାପା, କେବେ ପୁଣି ବୋଉ ଆଉ ସାନ ଭାଇ ଗୋବର୍ଦ୍ଧନ । ଜୀବନ ମଉସା, ତାଙ୍କର ଭାଗଚାଷୀ । ଶାନ୍ତି ସବୁଜ ନଡ଼ିଆମାଳ । ତାରି ଭିତରେ ଧାନ ଖଳା । ସେଇଠି ବିତିଯାଇଛି କେତେ ଶୀତ ଛୁଟି । ସେଇ ସବୁଜ ଧାନ କ୍ଷେତ, ପାଚିଲା ଗହମ କ୍ଷେତ, ଆଖୁକିଆରି ସବୁ କିଛି ମନେ ହେଉଥିଲା ସୁନ୍ଦର । କିନ୍ତୁ ସେଇ ମଲାନଈ ନାଁଟା କଣ୍ଟା ଭଳି ମନକୁ ବିନ୍ଧୁଥିଲା । ଫସଲ ଅମଳ କରି ଡଙ୍ଗାରେ ନଈ ପାରିହେଲାବେଳେ ବୋଉଙ୍କୁ ସୁଦର୍ଶନ ପଚାରୁଥିଲେ, ଦେଖ୍ ବୋଉ, ଏଇ ସୁନାକେରି କେରି ଧାନ ବିଲ, ଶାଗୁଆ ଆଳୁ କିଆରି, ଗହଳ ଆମ୍ବ ପଣସର ତୋଟା ତାରି ପାଖରେ ବହିଯାଉଛି ଏଇ କାଚଆଖି ଭଳି ନଈର ଜଳଧାର । ଏ ଦୃଶ୍ୟ କେଡ଼େ ସୁନ୍ଦର । ଅଥଚ, ଏ ନଈର ନାଁ ଲୋକେ ଦେଇଛନ୍ତି କ'ଣ ନାଁ ମଲାନଈ । କି ଦୁଃଖର କଥା କହିଲୁ ?

ପୁଅ କଥା ଶୁଣି, ଦୀର୍ଘଶ୍ୱାସ ଛାଡ଼ି କରୁଣ କଣ୍ଠରେ ବୋଉ କହୁଥିଲେ, ହଁରେ ଦର୍ଶନ, ସବୁଦିନେ ଯେ ମଲାନଈ ନଥିଲା । ପୁରାଣରେ ଯାର ନାଁ ଥିଲା, ମନ୍ଦାକିନୀ ।

ମନ୍ଦାକିନୀ ? ବାଃ, ଚମତ୍କାର ନାଁ ଟିଏ ତ । ଆନନ୍ଦରେ ନାଚି ଉଠିଥିଲା ସୁଦର୍ଶନର କିଶୋର ପ୍ରାଣ ।

ହଁ, ମନ୍ଦାକିନୀ । ଏଇ ନଈରେ ଦିନେ ଲକ୍ଷ୍ମୀ ଠାକୁରାଣୀ ବୋଇତରେ ଜଳ କେଳି କରୁଥିଲେ । ମେଘ ଭଳି ଧଳା ପାଲ ଟେକିଦେଇ ଶହ ଶହ ବୋଇତ ଏଇ ନଈରେ ଦରିଆ ପାରିକି ଯାଉଥିଲେ । ବେପାର ବଣିଜ କରି ଏ ଦେଶର ପୁଅ ଧନ ଦରବ ଘରକୁ ଆଣୁଥିଲେ । ତୁ ଶୁଣିଥିବୁ, ଏ ଦେଶର ସରୁ ସୂତାରେ ତିଆରି ଶାଢ଼ି, କଅଁଳ ରେଶମ କନାର ପୋଷାକରେ ଗୋରା ଗୋରା ଦେହକୁ ସଜାଇ ନ ପାରିଲେ ବିଲାତର ରାଜକୁମାରୀମାନେ କୁଆଡ଼େ ଅଭିମାନରେ ମୁହଁ ଶୁଖାଇ ବସୁଥିଲେ ।

ହଁ ବୋଉ, ସମସ୍ତଙ୍କୁ ଯୁଦ୍ଧରେ ହରେଇ ଇଂରେଜ ବେପାରୀମାନେ ଏଠୁ ଲୁଗାପଟା ରେଶମ କନାର ବଣିଜ କରି ଇଉରୋପ ବଜାରରେ ଭଲ ରୋଜଗାର କଲେ । ମଳା ନଈର ନୀଳ ଆକାଶକୁ ଚାହିଁ ବୋଉ କହୁଥିଲେ, ହଁ ସେଇ ନିଆଁଗିଳା ଇଂରେଜ ବେପାରୀଦଳ ହିଂସାରେ ଆମ ଦେଶର ଲୁଗାବୁଣାକୁ ବାସନ୍ଦ କରିଦେଲେ, ବୁଣାକାରମାନଙ୍କ ଆଙ୍ଗୁଳିକୁ ନିଷ୍ଠୁର ଭାବେ କାଟି ପକେଇଲେ । ଲୁଣମରା ବେଆଇନ ହେଲା । ବୁଝିଲୁ, ବଣିଜ ବେପାର କରୁ କରୁ ଏ ଦେଶକୁ ଶାସନ କଲେ । କହିଲେ, ଲିଭରପୁଲରୁ ବିଲାତି ଲୁଣ କିଣି ତୁମେ ତୁମ ପଖାଳ ଖାଇବ, ମାଞ୍ଚେଷ୍ଟର କାରଖାନାର ବିଲାତୀ ଲୁଗା ଆସିଲେ ତୁମେ ଲାଜ ଢ଼ାଙ୍କିବ । କୋଉ ଦେଶର ନ୍ୟାୟ, କୋଉ ଦେଶର ବିଚାର କହିଲୁ ?

ବୁଝିଲୁ ବୋଉ, ଶାସକ, ଶୋଷଣ କରେ, ପ୍ରଜାଙ୍କ ଉପରେ ନିର୍ଯାତନା କରେ । ସେତ ନ୍ୟାୟ ବିଚାର କରେ ନାହିଁ । କିନ୍ତୁ ବୋଉ, ପ୍ରକୃତି ଉପରେ କାହାର ହାତ ଅଛି ? ଆମ ମନ୍ଦାକିନୀ ନଈର ମୁହାଣ ପୋତି ଗଲା । ସମୁଦ୍ର ଜୁଆର ନଈରେ ପଶି ପାରିଲା ନାହିଁ । ନଈଟା ଧୀରେ ଧୀରେ ମରିଗଲା ।

ବୋଉ ରାଗିଯାଇ କହିଥିଲେ,ନଈଟା ମରିଯିବ କାହିଁକିରେ ଦର୍ଶନ ? ଏ ଗଙ୍ଗା ମାତା ଭଳି ମନ୍ଦାକିନୀ ନଈକୁ ଜାଣି ଜାଣି ସେମାନେ ମାରିଦେଲେ । କାହିଁ, ତାଙ୍କ ଦେଶର ଟେମସ ନଈ ମରିଯାଇ ନାହିଁ । ସେ ନଈରେ ଜୁଆର ହେଉଛି । କଥା କ'ଣ କି, ସେମାନେ ନଈ ମୁହାଣରୁ ବାଲି ସଫା କରୁଛନ୍ତି । ତାଙ୍କ ଦେଶର ଲଣ୍ଡନ କହ କି ଲିଭରପୁଲ ମାଞ୍ଚେଷ୍ଟର କହ, ସବୁ ବନ୍ଦର ଆଜିଯାଏ ଜିଇଁ ରହିଛି ।

କଥାଟା ବୁଝିଯାଇଥିଲା ସୁଦର୍ଶନ । ମୁହାଣ । ସଫା କଲେ ମଳାନଈରେ ପୁଣି ବେପାର ହେବ । ତେଣୁ ସେ ବୋଉକୁ କହିଥିଲା, ବୋଉ, ଦେଶ ବର୍ତ୍ତମାନ ଇଂରେଜ କବଳରୁ ବାହାରି ଆସିଲାଣି । ପେଡ଼ି ପୁଟୁଳା ଧରି ଇଂରେଜମାନେ ଲେଉଟି ଗଲେଣି । ଦେଖିବୁ, ଏଇ ମଳାନଈକୁ ଆମେ ପୁଣି ମନ୍ଦାକିନୀ କରି ଦେବୁ । ଏଇ ସହରକୁ କୂଳରେ ଧରି ମଳାନଈ ପୁଣି ଟେମସ ନଈ ଭଳି ହସି ଉଠିବ ।

କିଏ ଜାଣେ, ଏ ମଲାନଈ ପୁଣି ମନ୍ଦାକିନୀ ହେବ ? ସେ ଦିନକୁ ଆମେ ବଞ୍ଚିଥିଲେ ହେଲା । ନା କ'ଣ କହୁଚ ମାଉସୀ ? ସେଇ ଡଙ୍ଗାରେ, ପଡ଼ିଶାଘର ମାଉସୀ ମଧ ଯାଉଥିଲେ । ତାଙ୍କୁ ସାକ୍ଷୀ ରଖି ବୋଉ ଏକଥା କହିଲେ ।

ମାଉସୀ କହିଥିଲେ, ତମ ପୁଅ କହୁଛି ଯେତେବେଳେ, ଆମେ ମିଛ ମଣିବୁ କାହିଁକି ? ଆଖିରେ ଆମେ ଦେଖି ନାହୁଁ, ହେଲେ କାନରେ ଆମେ ଶୁଣିଛୁ । ତୁମ ଜେଜେ ଶାଶୁଙ୍କ ଅମଳର କଥା । ସେତେବେଳେ ତୁମ ଘରର ଲୋକେ ବୋଇତ କାରବାର କରୁଥିଲେ । ତୁମ ଜେଜେଶାଶୁ ବାପଘରୁ କ'ଣ ଯୌତୁକ ଆଣିଥିଲେ ଜାଣିନ ?

ହଁ ମୋ ଶାଶୁ କହୁଥିଲେ, ସେ ପରା ଯୋଡ଼ି ନୌକା ଆଣିଥିଲେ ଯୌତୁକ ହିସାବରେ । ସେଥିରେ ଥିଲା ହାତୀଦାନ୍ତର କାମ । କହିଲେ ବୋଉ ।

ମାଉସୀ କହିଲେ, ହଁ, ସାହିର ବୁଢ଼ୀମାନେ କହନ୍ତି । ସେଇ ହାତୀଦାନ୍ତର ବୋଇତରୁ ତୁମ ଜେଜେ ଶାଶୁ ଓହ୍ଲେଇଲା ବେଳେ ଏ ସହରର ଲୋକେ କହିଲେ, ବୋହୂ ନୁହେଁତ, ସାକ୍ଷାତ୍ ଲକ୍ଷ୍ମୀ ପ୍ରତିମାଟିଏ ।

ହଁ ମାଉସୀ, ମୁଁ ନୂଆବୋଉ ହୋଇ ଯେବେ ୟାଙ୍କ ଉଆସରେ ପାଦଦେଲି, ମୋ ଶାଶୁ ମୋତେ ପିନ୍ଧେଇ ଦେଲେ ମୋ ଗଳାରେ ଏଇ ସୁନାହାରଟିକୁ, ଆଉ ମୋ ଲୁଗା କାନିରେ ବାନ୍ଧି ଦେଇଥିଲେ ଲୁହା ସିନ୍ଦୁକର କଞ୍ଚି କାଠି । ମୋ ଶାଶୁଙ୍କଠୁ ଶୁଣିଚି ଜେଜେ ଶାଶୁ କହିଥିଲେ, ଯେଉଁ ଝିଅ ଏ ଘରକୁ ବଡ଼ ବୋହୂ ହୋଇ ଆସିବ, ସେହି ପାଇବ ଏଇ ଷୋହଳ ତୋଳା ଓଜନର ସୁନାହାର ଆଉ ଘରର ଲୁହା ସିନ୍ଦୁକର ଚାବିକାଠି ।

ମାଉସୀ ଆଉ ବୋଉଙ୍କ ମୁହଁରୁ ତାଙ୍କ ଲକ୍ଷ୍ମୀ ପ୍ରତିମାଭଳି ଜେଜେ ଶାଶୁଙ୍କର କାହାଣୀ ଶୁଣି, ମନ ଇଚ୍ଛା ହସି ସୁଦର୍ଶନ କହିଥିଲେ, ବୋଉ, ପୁରୁଣା ଖାନଦାନୀ ଘରେ ଏମିତି ପରୀଗପ ସମସ୍ତେ ଶୁଣିଥାନ୍ତି । ସେ କଥାକୁ ତୁ କ'ଣ ସତ ବୋଲି ବିଶ୍ୱାସ କରୁ ?

ବୋଉ କହିଥିଲେ, ସତ ହେଉ କି ମିଛ ହେଉ । ଏଇଥା ଆମ କୁଳର ପ୍ରଥା । ହଁ ଦର୍ଶନ, ତୁ ମନେ ରଖିଥା । ତୁ ଏ ଘରର ବଡ଼ପୁଅ । ଯେଉଁ ଝିଅ ଏ ଖାନଦାନୀ ଘରର ବଡ଼ ବୋହୂ ହେଇ ମୋ ପାଖକୁ ଆସିବ, ତାରି ଗଳାରେ ମୁଁ ନିଜ ହାତରେ ପିନ୍ଧେଇ ଦେବି ଏ ସୁନାର ହାର ଆଉ ତାରି ଲୁଗା କାନିରେ ବାନ୍ଧି ଦେବି ସିନ୍ଦୁକର ଚାବିକାଠି । ମୁଁ ଦିନ ଗଣୁଛି, କେବେ ମୋ' ଜେଜେ ଶାଶୁଙ୍କ ଭଳି ସୁନାନାକୀ ଲକ୍ଷ୍ମୀ ଭଳି ଝିଅଟିଏ ଏ ଘରର ବଡ଼ବୋହୂ ହୋଇ ଆସିବ । ଏ ସଂସାରର ବୋଝ ତା' ହାତକୁ ଟେକିଦେଇ ମୁଁ ଶାନ୍ତିରେ ଆଖି ବୁଜି ଦେବି ।

ସୁଦର୍ଶନ କହିଥିଲା, ବୋଉ, ଆଗ ଏ ମଲାନଈକୁ ମୁଁ ମନ୍ଦାକିନୀ କରେ । ଧଳାପାଳ

ନୁହେଁ ବଡ଼ ବଡ଼ ଜାହାଜ ଆସି ଏ ବନ୍ଦରରେ ଲାଗୁ । ତା'ପରେ ସେଇ ଜାହାଜରେ ଦରିଆପାରିକି ଯାଇ ତୋ' ସୁନାନାକି ଲକ୍ଷ୍ମୀ ପ୍ରତିମାକୁ ଖୋଜି ବାହାର କରିବା । ସୁଦର୍ଶନର ପିଲାଳିଆ କଥା ଶୁଣି ବୋଉ କହିଥିଲେ, ବୁଝିଲୁ ଦର୍ଶନ, ନେତାଙ୍କ ଭଳି ଭାଷଣ ଦେବା ଭାରି ସହଜ, କିନ୍ତୁ କଥାକୁ କାମରେ ଦେଖେଇବା ସହଜ ନୁହେଁ । ଦେଖୁନୁ, ଧାନଚାଉଳ, ପନିପରିବା, ପାନ-ମାଛ ସବୁକିଛି ଆସୁଛି ନଈସେପାରି ଗାଁ ମାନଙ୍କରୁ । ଅଥଚ ସ୍କୁଲ କଲେଜ, ରେଳମଟର, ପୋଷ୍ଟ ଅଫିସ, ଡାକ୍ତରଖାନା, ସବୁକିଛି ସୁଖସୁବିଧା ରହିଲା ଏଇ ସହର ବଜାରରେ । ଗାଁ ମଫସଲର ଦୁଃଖ କିଏ ବୁଝୁଛି ? ନଈବଢ଼ି ବେଳେ ଏ ମଲାନଈର ଚେହେରା କେମିତି ରାକ୍ଷସୀ ପାଲଟିଯାଏ ସେ ଦୃଶ୍ୟ କିଏ ନ ଦେଖିଛି ? ପାଣି କାଦୁଅ ଚକଟି ନଈବଢ଼ିବେଳେ ସେଇ ପଦ୍ମପୋଖରୀ, ହରିପୁର, ଫୁଲଝରି, ହୀରାମତି ଗାଁର ଚାଷୀ ମୂଲିଆମାନେ ତୁମ ସହରକୁ ଆସିବେ କେମିତି ? ଏଇ ସହରରୁ କେତେ ନେତା ବିଧାନସଭାକୁ ଗଲେଣି, କେତେ ଏମ.ପି. ଇନ୍ଦ୍ରପ୍ରସ୍ଥକୁ ଗଲେଣି । ବୁଝିଲୁ ଫାଙ୍କା ପ୍ରତିଶ୍ରୁତି ଦେବାରେ ପଇସା ପଡ଼େନି । ଇନ୍ଦ୍ରପ୍ରସ୍ଥର ଶୀତତାପ ନିୟନ୍ତ୍ରିତ ରାଜଭବନକୁ ଗଲେ ସମସ୍ତେ ଇନ୍ଦ୍ର ପାଲଟି ଯାଆନ୍ତି ।

ବୁଝିଲୁ ବୋଉ, ବିଜୟଲକ୍ଷ୍ମୀ ପଣ୍ଡିତଙ୍କ ଭଳି ବିଶ୍ୱଜାତି ସଂଘରେ ତୁ ଭଲ ଭାଷଣ ଦେଇପାରିବୁ ।

ରଖିଦେ ତୋର ସେ ଖୋସାମଦିଆ କଥା । ନାକ ଫୁଲାଇ ମୁହଁ ମୋଡ଼ି ଦେଉଥିଲେ ବୋଉ ।

ମଲାନଈ କୂଳର ମଶାଣି ଭୂଇଁରେ ସୁଦର୍ଶନ ପୁଣି ଚାହିଁଲେ ବୋଉଙ୍କ ମୁହଁଟିକୁ । ଦାରୁଣ ଅଶାନ୍ତିର ନିଆଁରେ ଅସ୍ଥିର ହେଲା ତାଙ୍କର ମନ । ଏମ.ପି. ସୁଦର୍ଶନବାବୁ ମନେ ମନେ ଚିନ୍ତା କରିବାକୁ ଲାଗିଲେ, ଦିନେ ଯେଉଁ ବୋଉ, ବିଜୟଲକ୍ଷ୍ମୀ ପଣ୍ଡିତଙ୍କ ଭଳି ଦେଶ ଓ ଦଶର କଥାକୁ କହିପାରୁଥିଲେ ସେ ଆଜି ନୀରବରେ ଶୋଇଛନ୍ତି । ସେ ନିଜେ ଯଦି ବୋଉଙ୍କ ଶବ ଭଳି ମଉନ ରହି ପାରନ୍ତେ । ଏଇ ମଲାନଈର ଜଳର ସୁଅଭଳି ଜୀବନର ସବୁ ଅଳିଆ ଆବର୍ଜନାକୁ ନୀରବରେ ବହିନେଇ ସେ ଯଦି ସମୁଦ୍ରକୁ ଫିଙ୍ଗିଦେଇ ପାରନ୍ତେ, ତା' ହେଲେ ହୁଏତ ସେ କାଣିଚାଏ ଶାନ୍ତି ପାଇପାରନ୍ତେ । ନା, ମଲାନଈରେ ସୁନା ବୋଇତର ସ୍ୱପ୍ନ ସ୍ୱପ୍ନରେ ହିଁ ରହିଗଲା । ତଳେ କେବଳ ମଶାଣିର ଧଳା ପାଉଁଶ ଆଉ କଳାକୋଇଲାର ପୃଥିବୀ । ଆଉ ମଲାନଈ ଛାତିରେ କଳା ଧୂଆଁର ଦୂଷିତ ଆକାଶ । ଦୂଷିତ ଆକାଶରେ ମୃତ୍ୟୁର ହାହାକାର ଧ୍ୱନି ଏଇ ମଲାନଈର ଜଳସ୍ରୋତରେ ଏବେ ମଧ ଆର୍ତ୍ତନାଦ କରୁଛି, ଚନ୍ଦନାର ଅତୃପ୍ତ ଆତ୍ମା ।

ହଁ, ସେ ଫୋନ ପାଇଥିଲେ । ବୋଉଙ୍କ ମୃତ୍ୟୁ ଖବର ପାଇ ପାର୍ବତ୍ୟ ଜଳପ୍ରପାତ ଭଳି ଅସ୍ଥିର ହୋଇଥିଲା ଏମ.ପି. ସୁଦର୍ଶନଙ୍କ ମନ । କିନ୍ତୁ, କ'ଣ କରିବେ, ସେତେବେଳେ

ଚାଲିଥାଏ ଲୋକସଭାର ଜରୁରୀ ଅଧିବେଶନ । ଫ୍ଲାଇଟ୍ ମିଳିବାର ସଂଭାବନା ନାହିଁ । ସୁତରାଂ ଘରେ ପହଞ୍ଚିଲା ବେଳକୁ ମଝିରେ ବିତିଯାଇଥିଲା ଦୀର୍ଘ ତିନିଦିନ ତିନିରାତି ।

କାରରୁ ଓହ୍ଲେଇ ବୋଉଙ୍କ ଶୋଇବା ଘରେ ପାଦ ନ ଦେଉଣୁ ଅଭିଯୋଗର ଝଡ଼ ବୁହାଇଦେଲା ଭଉଣୀ ସୁମିତା : ଭାଇ, ତୁମେ ଦିଲ୍ଲୀରୁ ଆସି ଘରକୁ ପହଞ୍ଚିବାଯାଏ ବୋଉଙ୍କ ମୃତଦେହକୁ ବରଫରେ ସାଇତି ରଖିବା ପାଇଁ ଫୋନ୍‌ରେ କହିଦେଇ ନିଶ୍ଚିନ୍ତ ରହିଗଲ କେମିତି ? ଘରର ବୋହୂ, ଝିଅ, ନାତି ନାତୁଣୀ, ଭଣଜା-ଭାଣିଜୀ ଏମାନଙ୍କ କଥା ତୁମର ମନେପଡ଼ିଲା ନାହିଁ ? ବାସିମଡ଼ା କ'ଣ ଘରେ ରହେ ? ଶବ ସତ୍କାର ନ ହେଲେ କ'ଣ ଘରେ ଚୁଲି ଜଳିବ ? କହିଲ, ପିଲାମାନେ ଦିନପରେ ଦିନ ଭୋକଉପାସରେ ଚଳିବେ କେମିତି ?

ନୀରବରେ ଶୁଣୁଥିଲେ ବଡ଼ଭାଇ । ଛୋଟ ପିଲାମାନଙ୍କ ଶୁଖିଲା ମୁହଁକୁ ଦେଖି ମନରେ ଅନୁଶୋଚନା ହେଲା କିନ୍ତୁ ମଣିଷର ଦୁର୍ବଳତମ ବିନ୍ଦୁରେ ଆଘାତ ଦେଲେ ଯେ ତୀବ୍ର ଯନ୍ତ୍ରଣା ହୁଏ ଏ କଥା କଣ ସୁମିତାକୁ ଜଣାନାହିଁ ? ବିଷାକ୍ତ ଶର ଭଳି ବିନ୍ଧୁଥିଲା ଭଉଣୀର ଶେଷ ମନ୍ତବ୍ୟ: ହଁ, ପିଲାଛୁଆଙ୍କ ବାପ ହେଇଥିଲେ ସେ କଷ୍ଟ ଜାଣନ୍ତେ ।

ଛାତିକୁ ପଥର କଲେ ସୁଦର୍ଶନ । ମାସେ କାଳ ଶାଶୁଘର ଛାଡ଼ି, ବୋଉଙ୍କ ପାଖରେ ସୁମି ଥିଲା । ତା'ର ଅସଲ କାରଣ ଜଣାଥିଲା ସୁଦର୍ଶନଙ୍କୁ । ଶାଶୁ ଘରକୁ ବୋହିବା ତାର ପ୍ରକୃତି । ବୋଉଙ୍କ ଗଳାର ସୁନାହାର ଆଉ ସିନ୍ଦୁକର ଚାବିକାଠି ତାର ଲକ୍ଷ୍ୟ । ତା' ମନରେ ପୁଅ ସ୍ୱାମୀର ଗାନ୍ଧରୀ ଅହଂକାର ରହିଛି । ସୁଦର୍ଶନ କହିବାକୁ ଚାହିଁଲା, 'ଗାନ୍ଧାରୀର ତ୍ୟାଗକଥା ଭୁଲିଲେ ଚଳିବନି ସୁମି ।' କିନ୍ତୁ ସୁମି ମନରେ ଆଘାତ ଦେବାକୁ ସେ ଚାହିଁ ନଥିଲେ ।

ସେ ଭାବିଲେ, ମଲାନଈର ମୁହାଣ ପୋତି ହୋଇପଡ଼ିଛି । ତା' ପାଇଁ କିଛି କରିବା ଏଯାଏ ସମ୍ଭବ ହେଲାନାହିଁ । ବୋଉଙ୍କ ମନଲାଖି ସୁନାନାକି ଲକ୍ଷ୍ମୀପ୍ରତିମା ଭଳି ସୁନ୍ଦରୀ ଝିଅଟିଏ ଏ ଘରକୁ ବଡ଼ ବୋହୂ କରି ଆଣିପାରି ନାହାନ୍ତି । ସାନଭାଇକୁ ବାହା କରିବାକୁ ଅନୁମତି ଦେଲେ । ସୁଦର୍ଶନ ଦିଲ୍ଲୀରୁ ଧାଇଁ ଆସିଥିଲେ କେବଳ ବୋଉଙ୍କୁ ଅନ୍ତିମ ଦର୍ଶନ କରିବାକୁ । ପୋଡ଼ି ଦେଲେ ତ ସରିଯିବ ।

ହଁ, ବୋଉଙ୍କ ପାଇଁ ଦି'ଟୋପା ଲୁହ ଢ଼ାଳିବାକୁ ଘରେ କେବଳ ଜଣେ ହିଁ ଥିଲା । ସେ ହେଲା, ନୀତା । ସବା ସାନ ଭଉଣୀ । ନୀତା, ବୋଉଙ୍କ ପାଦ ପାଖରେ ଏଯାଏଁ ନୀରବରେ ଲୁହ ଝରାଉ ଥିଲା । ବଡ଼ଭାଇକୁ ଦେଖି, ନୀତାର ମନର ରୁଦ୍ଧ ଦୁଆର ଭାଙ୍ଗି ଚୁରମାର ହୋଇଗଲା । ବଡ଼ପାଟିରେ ନୀତା କାନ୍ଦିବାକୁ ଲାଗିଲା । ସାନ ଭଉଣୀର ଆର୍ତ୍ତ ଚିତ୍କାରରେ ବଡ଼ଭାଇଙ୍କ ପଥରର ଛାତି ଫାଟି ଚୂନା ହୋଇଗଲା କି କ'ଣ ! ସୁଦର୍ଶନଙ୍କ

ମନେ ପଡ଼ିଲା, ବୋଉ କେତେ ଆଶା କରିଥିଲା, ସାନ ଝିଅର ହାତକୁ ଦି'ହାତ କରି ଶାନ୍ତିରେ ଆଖି ବୁଜିବ । ଆଜି ବାପା ନାହାନ୍ତି । ବୋଉ ବି ଚାଲିଗଲା । ନୀତାର କଥା ବୁଝିବ କିଏ ? ସୁଦର୍ଶନ ବିଚାରିଲେ, ନୀତାକୁ ଟିକିଏ ସାନ୍ତ୍ୱନା ଦେବା ଦରକାର ।

ଅନ୍ଧାର ଘରର ଶୂନ୍ୟତା ଭିତରେ ସାନ୍ତ୍ୱନାର ଭାଷା ଖୋଜିବାକୁ, ଚେଷ୍ଟା କଲେ ସୁଦର୍ଶନ । କିନ୍ତୁ, ସେ ଭାଷାକୁ ଆବିଷ୍କାର କରିବା ପୂର୍ବରୁ କିଏ ଡ଼ାକିଲା, 'ସାର୍ !' ଫେରି ଦେଖିଲେ, ପି.ଏ. । ବାବୁନି, ସେ ଜରୁରୀ ଖବର ଦେଲା । ଏମ୍.ପି.ଙ୍କ ପାଇଁ ବାହାରେ ଅପେକ୍ଷା କରିଛନ୍ତି ବହୁ ଗଣ୍ୟମାନ୍ୟ ଲୋକ । ଲୋକପ୍ରିୟ ଜନନେତା ସଚେତନ ହେଲେ । ହାତଯୋଡ଼ି ବାହାରକୁ ଗଲେ । ବାହାରେ ଦେଖି ଭାବବିହ୍ୱଳ ହେଲା ଏମ୍.ପି.ଙ୍କ ମନ । ସଡ଼କ, ଅଗଣା, ଡ୍ରଇଙ୍ଗ ରୁମ୍ ଜନାରଣ୍ୟ ହୋଇଗଲାଣି । ବିଶିଷ୍ଟ ସାମ୍ବାଦିକ, ନାମଜାଦା ବ୍ୟବସାୟୀ, ପରିଚିତ ସାହିତ୍ୟିକ, ବନ୍ଧୁ କବି ସମସ୍ତେ ତାଙ୍କ ଚାରିପାଖରେ ସମବେତ । ସମବେଦନା, ଶୋକବାର୍ତ୍ତା, ସହାନୁଭୂତି, ସାନ୍ତ୍ୱନା ଆଉ ଆଶ୍ୱାସନାର ବାଣୀ ସେମାନେ ଅଜାଡ଼ି ଦେଲେ । ଅଜସ୍ର ଫୁଲ ଆଉ ମୂଲ୍ୟବାନ ଫୁଲମାଳ ଦେଇ ଢ଼ାଙ୍କିଦେଲେ ବୋଉଙ୍କ ଶବାଧାରକୁ ।

ସୁଦର୍ଶନ ଭାବିଲେ, ବୋଉଙ୍କ ଆତ୍ମା ନିଶ୍ଚୟ ଶାନ୍ତି ପାଇବ । ହେଲେ ସୁମିତାର ମନ୍ତବ୍ୟ, ମନେହେଲା ବିଷ ଛୁଞ୍ଚି ଭଳି ଯନ୍ତ୍ରଣାଦାୟକ । ଯେତେ ବିଳମ୍ବ ହେବ, ଘରର ସମସ୍ତେ ସେତିକି ବେଶୀ କଷ୍ଟ ପାଇବେ । ବାବୁନିକି କହିଦେଇ, ସେ ଯାଇ କାରରେ ବସିପଡ଼ିଲେ । ବାବୁନି ପାଖରେ ବସିଲା । ସେ ସ୍ୱସ୍ତିର ନିଃଶ୍ୱାସ ମାରିଲେ । ତାଙ୍କୁ ଜଣା ଅଛି, ବାବୁନି କରିତକର୍ମା ଯୁବକଟିଏ । ତାଙ୍କର ଡ଼ାହାଣ ହାତ । କିଛି ମୁହଁ ଫିଟେଇ କହିବାକୁ ପଡ଼ିନାହିଁ । ନିକଟ ଆତ୍ମୀୟ, ବିଶିଷ୍ଟ ସାମ୍ବାଦିକ ଓ ଫଟୋଗ୍ରାଫର ସମସ୍ତେ ଶୋକଯାତ୍ରାରେ ସହର ପରିକ୍ରମା କରି ଶ୍ମଶାନ ଯାଏ ଯିବେ । ସେଥିପାଇଁ ଅଧ ଡଜନେ କାର ପ୍ରସ୍ତୁତ କରି ରଖିଛି ବାବୁନି । ସେମାନେ ବୋଉଙ୍କୁ ଅନ୍ତିମ ସମ୍ମାନ ଦେବାକୁ ଆଗ୍ରହୀ, ନିଶ୍ଚିନ୍ତ ହୋଇ ସୁଦର୍ଶନ ଭାବିଲେ, ବାବୁନି ଭଳି ତରୁଣଟିଏ ପାଖରେ ରହିଲେ ବରଗଛର ଓହଳ ଭଳି ମନରେ ଦମ୍ଭ ରହେ । କିନ୍ତୁ ମାମୁଁ ପହଞ୍ଚିଗଲେ । କପାଳରେ ରାମାନନ୍ଦୀ ଟିତା । ବେକରେ ଗୋଛାଏ ତୁଳସୀମାଳ । କାନ୍ଧରେ ଚନ୍ଦନପୁରୀ ନାଲି ଗାମୁଛା । ଚନ୍ଦନପୁରୀ ଗାମୁଛାରେ ମୁହଁକୁ ଢ଼ାଙ୍କି କାର ଭିତରେ ମୁଣ୍ଡ ଗଳାଇ ନିଜସ୍ୱ ଢ଼ଙ୍ଗରେ ମାମୁ କହିଥିଲେ, 'ଜରୁରୀ କଥା ପଦେ ଥିଲା ଦର୍ଶନ ।' ସୁତରାଂ ଭଣଜା କାରରୁ ତୁରନ୍ତ ଓହ୍ଲେଇ ପଡ଼ିଲେ । ମୁହଁରେ ଗାମୁଛାର ଆବରଣ ଥିଲେ ମଧ ନିଜ ପାଦ ଉପରେ ଦେହର ଭାରସାମ୍ୟ ରଖିବା ମାମୁଙ୍କ ପକ୍ଷରେ କଷ୍ଟକର ହେଉଥିଲା । ପରିବାରର ଏଇ ଘଡ଼ିସନ୍ଧି ବେଳ । ସବୁ ଦାୟିତ୍ୱ ମାମୁଙ୍କ ଉପରେ । ମାମୁ ସଂକ୍ଷେପରେ କହିଥିଲେ, ଦେଖ ଦର୍ଶନ, ଏଇଟା ତୋ' ପାଟିର ଶୋଭାଯାତ୍ରା ନୁହେଁ । ଦେଶର ରାଜନୈତିକ ଘଡ଼ିସନ୍ଧିବେଳେ ଦିଲ୍ଲୀ ଛାଡ଼ି ତୁ ବୋଉକୁ

ଶେଷ ସମ୍ମାନ ଦେବାକୁ ଆକୁଳ ହେଇ ଧାଇଁ ଆସିଛୁ । ତୋ' ଆସିଲା ବାଟକୁ ଚାହିଁ ତୋ ବୋଉଙ୍କ ମରଦେହକୁ ଶୀତଳ ବରଫ ଖଣ୍ଡରେ ସାଇତି ରଖାଯାଇଛି । ମୁଖାଗ୍ନି କରିବୁ । ବୋଉଙ୍କ ଅନ୍ତିମ ସତ୍କାରର ପବିତ୍ର ଦାୟିତ୍ୱ ତୋର ।

ସୁଦର୍ଶନ ଦେଖିଲେ ମାମୁଁଙ୍କର ଭାବାବେଗର ସୁଅ ମଲାନଈର ସୁଅକୁ ବଳିଯିବ । ବାଧା ଦେବା ଆହୁରି ବିପଦ । ବିନୟରେ ସେ କହିଲେ, ନାହିଁ ମାମୁ, ତୁମେ ମୁରବି । ବୋଉଙ୍କ ଆତ୍ମାର ଶାନ୍ତି ପାଇଁ ତୁମେ ଯାହା ଭଲ ବୋଲି ବିଚାରିବ ସେହି କଥା ହେବ ।

ସୁତରାଂ ମାମୁଁ ସମସ୍ତଙ୍କୁ ସତର୍କ କରି ଜଣାଇ ଦେଲେ । ବୋଉଙ୍କ ଶେଷ ସମ୍ମାନ ପାଇଁ ଏ.ପି. ମହୋଦୟ କ'ଣ ଚାହାନ୍ତି । ଆପଣମାନଙ୍କ ସାହାଯ୍ୟ, ସହାନୁଭୂତି ଆଉ ବଦାନ୍ୟତା ପାଇଁ ମାତୃଦାୟଗ୍ରସ୍ତ ଚିରଋଣୀ । ଆପଣମାନଙ୍କ ଠାରୁ କ୍ଷମା ମାଗି ସେ ପାରିବାରିକ କାର୍ଯ୍ୟରେ ଯୋଗ ଦେବାକୁ ବାହାରିଲେ । ମାମୁଙ୍କ କଥା ମନ୍ତ୍ରଭଳି କାମ ଦେଲା । କାର, ଜିପ, ସ୍କୁଟର ସଶବ୍ଦରେ ଚାଲିଗଲେ । ବ୍ୟବସାୟୀ ଗୋଷ୍ଠି ଠାରୁ ଆରମ୍ଭ କରି, ସାମ୍ବାଦିକ, ଫଟୋଗ୍ରାଫର ଏମ.ପିଙ୍କୁ ନମସ୍କାର ଜଣାଇ ବିଦାୟ ନେଲେ । ସୁଦର୍ଶନବାବୁ ଅସହାୟ ଆଖିର ଦେଖିଲେ ବାବୁନିଙ୍କୁ ମଧ୍ୟ ମାମୁ ବିଦାୟ କରିଦେଲେ ।

କ୍ଷଣିକରେ ପରିବେଶ ବଦଳି ଗଲା । ଶବବାହକମାନେ ହରିଧ୍ୱନି, ରାମ ନାମ ଉଚ୍ଚାରଣ କରି ଖଇ କଉଡ଼ି ପକାଇବାକୁ ଆରମ୍ଭ କଲେ । 'ରାମ ନାମ ସତ୍ୟ ହୈ । ହରି ନାମ ସତ୍ୟ ହୈ । ବୋଲ ହରି, ହରିବୋଲ ।' ମୃଦଙ୍ଗ ଆଉ ମନ୍ଦିରାର ଧ୍ୱନି ଶୁଭିଲା । ନାମ ମହାମନ୍ତ୍ର ଗାନ କରି ମାମୁଙ୍କର ସଂକୀର୍ତ୍ତନ ଦଳ ଆରମ୍ଭ କରି ଦେଲେ ''ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ । ହରେ ରାମ, ହରେ ରାମ, ରାମ ରାମ ହରେ ହରେ ।' ସୁଦର୍ଶନ ଦେଖିଲେ, ସାନଭାଇ ଗୋବର୍ଦ୍ଧନ କାନ୍ଧ ଦେଇଛି ଶବାଧାରରେ । କାନ୍ଦି କାନ୍ଦି ଗୋବର ପାଣି ଢ଼ାଳି ଦେଲା ସାନ ବୋହୂ । ଶବବାହକମାନେ ଚାଲିଲେ । ସଂକୀର୍ତ୍ତନ ଚାଲିଲା । ମାମୁଙ୍କ ପାଖେ ପାଖେ ଖାଲି ପାଦରେ ଶବ ଯାତ୍ରାରେ ଚାଲିଲେ ମାତୃଦାୟଗ୍ରସ୍ତ ସୁଦର୍ଶନ ।

ୟା'ଭିତରେ ଦୀର୍ଘ ଦୁଇଘଣ୍ଟା ବିତି ଯାଇଥିଲା । ନଈଘାଟର ଭୂତନାଥ ଶିବ ମନ୍ଦିର, ଶ୍ମଶାନ କାଳୀର ପୁରୁଣା ମନ୍ଦିର ଏସବୁ ପାରି ହେଇ ସେମାନେ ପହଞ୍ଚିଥିଲେ ମଲାନଈ କୂଳର ସେଇ ଶ୍ମଶାନ ପୀଠରେ । ସଜଳ କରୁଣ ଆଖିରେ ସେ କିନ୍ତୁ ଦେଖିଲେ, ତାଙ୍କର ଅନଭ୍ୟସ୍ତ ପାଦ ଦୁଇଟି ଛିଣ୍ଡି, ଖଣ୍ଡିଆ ଖାବୁରା ହେଇ ଲହୁଲୁହାଣ ହେଇଯାଇଛି । ମାମୁଁ ଚାହିଁଲେ ସୁଦର୍ଶନର ଦୁଇ ଆଖିକୁ । କହିଲେ, 'ଦଶମାସ ଦଶଦିନ, ତୋ' ଜନମକଲା ମା'ର ଗର୍ଭ ଯନ୍ତ୍ରଣା କଥା ଥରେ କଳ୍ପନା କଲୁ । ସେ ଯନ୍ତ୍ରଣା ପାଖରେ ୟେ କ'ଣ ? ମାତୃ ଋଣ କେହି କେବେ ଶୁଝି ପାରିନାହିଁ ।'

ଶବବାହକମାନେ ଶବାଧାରକୁ ମଶାଣିରେ ଥୋଇ ଚାଲିଗଲେ ପାଖ ବରଗଛ ମୂଳକୁ । ମାମୁଁ ପାଖରେ ବସିପଡ଼ି କହିଲେ, ଦେଖ୍ ଦର୍ଶନ, ତୁ ମୁଖାଗ୍ନି କରିବୁ । ତୋ' ବୋଉର ମର ଶରୀରକୁ ଚିତାକୁ ଟେକିଦେବୁ । ଏମିତି ସୌଭାଗ୍ୟ କେଇଜଣ ପୁଅଙ୍କ ଭାଗ୍ୟରେ ଘଟେ ? ତୋ' ଭଳି ଭାଗ୍ୟ କାହାର ହେବ ? ଶେଷକୁ ସେ ସତର୍କର ଲାଲ ପତାକା ଉଡ଼େଇ କହିଦେଇ ଗଲେ, ଏଇଟା ହେଲା ମହାଶ୍ମଶାନ । ସ୍ୱୟଂ ଭୂତନାଥଙ୍କର ଅନୁଚର, ମଶାଣିଚଣ୍ଡୀଙ୍କ ଡ଼ାହାଣୀମାନଙ୍କର ଏ ହେଲା ବିଶାଳ ଚରାଭୂଇଁ । ଏଠି ଗଛର ଡ଼ାଳରେ ଡାଳରେ ସେମାନଙ୍କର ଦୂତମାନେ ଚିଲ ଶାଗୁଣା ରୂପେ ବିରାଜମାନ । ଶବକୁ ଛାଡ଼ି ତୁ କୁଆଡ଼କୁ ଯିବୁ ନାହିଁ । ଏଇ କୀର୍ତ୍ତନ ଦଳର ପରିଶ୍ରମ ତୁ ନିଜ ଆଖିରେ ଦେଖିଲୁ । ସେ ସୂର୍ଯ୍ୟବଂଧୂମାନଙ୍କୁ ବିଦା କରିବାକୁ ପଡ଼ିବ । ତୁ କିଛି ଚିନ୍ତା କରିବୁ ନାହିଁ । ମୁଁ, ଏଇ ଗଲି, ଅଇଲି ।

ମାମୁ ଚାଲିଗଲେ । ଅନ୍ୟମାନେ ମଧ୍ୟ ଆଖ ପାଖର ଗଛ ଛାଇକୁ ଚାଲିଗଲେଣି । ସୁଦର୍ଶନ ଦେଖିଲେ, ଆଗରେ ଶବାଧାର । ଆଉ ମହାଶ୍ମଶାନରେ ସେ ଏକୁଟିଆ ।

ଆଗରେ ମଲାନଈ । ସୂର୍ଯ୍ୟ କିରଣରେ ଚିକ୍ ଚିକ୍ କରୁଥିଲା ମଲାନଈର ବିସ୍ତୃତ ଜଳରାଶି । ନଈଜଳ ବୋହିଯାଉଥିଲା । ବେଳ ବି ଗଡ଼ି ଯାଉଥିଲା । ନା, ସେ ଜଳର ସୁଅକୁ ଅଟକେଇ ପାରିବେନି, ଅଟକେଇ ପାରିବେନି ସମୟର ସୁଅକୁ । କିନ୍ତୁ ମନର ଗୁହାରେ ସମୟର ଜଳ ଅଟକିଗଲା । ଘରେ ସମସ୍ତେ ଚାହିଁ ବସିଥିବେ । ଅଥଚ ଏଯାଏ ବୋଉଙ୍କ ପାଇଁ ଚିତାର ଆୟୋଜନ ହୋଇ ନାହିଁ । ମାମୁଁଙ୍କ ଦେଖା ଦର୍ଶନ ନାହିଁ । ଶବବାହକମାନେ ଦୂର ବରଗଛ ମୂଳରେ ନିଶାରେ ଢୁଳଉଛନ୍ତି । ଚିତାର କାଠ ଆସିଲେ ସେମାନଙ୍କର କାମ ଆରମ୍ଭ ହେବ । ସୁଦର୍ଶନ ବୁଝି ପାରିଲେ ନାହିଁ କାହାକୁ ପଚାରି ସେ କଥାଟା ବୁଝିବେ । ଦୂର ବରଗଛ ମୂଳରେ ଆତ୍ମୀୟସ୍ୱଜନ କେଇଜଣ ବସିଥିଲେ । କିନ୍ତୁ, ସୁଦର୍ଶନ ବୁଝିପାରୁଥିଲେ ସେମାନେ ଜାଣି ଜାଣି ଦୂରେଇ ରହୁଥିଲେ । ସେ ମଧ୍ୟ କାହାରିକି ଚିହ୍ନି ପାରୁନଥିଲେ ।

ସେଇ ମୁହୂର୍ତ୍ତରେ ମନେ ହେଲା ତାଙ୍କ ଚାରିପଟେ ଏକ ସମ୍ପୂର୍ଣ୍ଣ ଅପରିଚିତ ଦୁନିଆ । ସେ ସମ୍ପୂର୍ଣ୍ଣ ଏକୁଟିଆ । ଅନ୍ଧକାରରେ ଅସହାୟ ଶିଶୁଭଳି ସେ ମନେ ମନେ ଚିହ୍ନା ମୁହଁକୁ ଖୋଜିଲେ । ଏଇ ଦାରୁଣ ନିଃସଙ୍ଗ ମୁହୂର୍ତ୍ତରେ ବାବୁନିର ଉଜ୍ଜ୍ୱଳ ତରୁଣ ମୁହଁଟି ମନରେ ଭାସି ଉଠିଲା । ପିଲାଟିର ପ୍ରତିଭା ତାକୁ ମୁଗ୍ଧ କରିଛି । ତାକୁ ଗୋଟାଏ ଭଲ କାମରେ ଲଗେଇ ଦେଇ ପାରିଲେ ଅନ୍ତତଃ ନୀତାର ସମସ୍ୟାଟା ସହଜ ହୋଇ ପାରନ୍ତା । ବାବୁନିଟା ପାଖରେ ଥିଲେ ଭଲ ହୋଇଥାନ୍ତା । ସେ ପାଖରେ ନାହିଁ, ମନଟା ଅସ୍ଥିର ଲାଗୁଛି । ନିଜକୁ ଅସହାୟ ମନେ ହେଉଛି ।

ପରିସ୍ଥିତି ଜଟିଳ । ମୁକାବିଲା କରିବେ କେମିତି ? ମାମୁଁଙ୍କ ନାଲି ଗାମୁଛାର ସତର୍କ ବାଣୀ । ବୋଉଙ୍କ ଶବକୁ ଛାଡ଼ିବା ନୀତି ବିରୁଦ୍ଧ । କିନ୍ତୁ କାଠର ଯୋଗାଡ଼ ଏ ଯାଏ ହୋଇନି ।

ମରୁଭୂମିରେ ଜଳର ସନ୍ଧାନ ମିଳିଗଲା ପରି ଚିହ୍ନାମୁହଁଟିଏ ଦେଖି ସ୍ୱସ୍ତିର ନିଃଶ୍ୱାସ ମାରିଲେ । ସାନ ଭାଇ ଗୋବର୍ଦ୍ଧନ ବ୍ୟସ୍ତ ହୋଇ ଆସୁଥିଲା । ଖରାରେ ଝାଳନାଳ ହୋଇଥାଏ । ସାନ ଭାଇର ବୟନୀୟ ଅବସ୍ଥା ଦେଖି ମନରେ ଦୟାର ସଞ୍ଚାର ହେଲା । ସହାନୁଭୂତିରେ ଭାଇର ମନଟା କଅଁଳେଇ ଗଲା । ହଁ, ବୋଉ ଦି' ବର୍ଷ କାଳ ଶେଯରେ ପଡ଼ିଥିଲା । ତାକୁ ଦେଖା ଶୁଣାର ଦାୟିତ୍ୱ ସାନଭାଇ ଆଉ ସାନ ବୋହୂ ଉପରେ ପଡ଼ିଥିଲା । ରୋଗ କଷ୍ଟରେ ବୋଉ ମୁହଁରୁ ଗାଳିମନ୍ଦ ଛଡ଼ା ସେମାନେ ଆଉ କଣ ପାଇଲେ ? କାନ୍ଧ ଉପରେ ତିନିତିନୋଟି ଝିଅ । ସାନଭାଇ, ସେମାନଙ୍କୁ କୂଳକୁ ଲଗେଇ ପାରିନାହିଁ । ଅଥଚ ଅନୁଗତ ଲକ୍ଷ୍ମଣ ଭଳି ମୁହଁ ବୁଜି ଗୋବରା ସବୁ କାମ ତୁଲାଉଛି ।

ସହରର କାଠ ଗୋଲାମାନଙ୍କରୁ ଗୋବରା ଫେରୁଥିଲା । ମନରେ ତା'ର ତିକ୍ତ ଅଭିଜ୍ଞତା । ପ୍ରବାସୀ ସୁଦର୍ଶନ ଏତକ ଶୁଣି ଅବାକ ହେଇଗଲେ । ସହରରେ ଜାଳେଣି କାଠ ଦୁର୍ଲଭ । ଦର କାହିଁରେ କ'ଣ ! ଯାହା ମିଳୁଛି, ସେତକ ଶବଦାହ ପାଇଁ ଯଥେଷ୍ଟ ନୁହେଁ । ଗୋବରା କହିଲା, ତୁମେ ସେସବୁ ଶୁଣି କ'ଣ କରିବ ? ଲୋକେ ଗ୍ୟାସ ଜଳେଇ କିରୋସିନୀ ଜାଳି ଭାତ ଖାଉଛନ୍ତି । ଜାଳେଣି କାଠ କଥା କିଏ ବୁଝୁଛି । ଯାହେଉ, ଅନେକ କଷ୍ଟରେ ଠିକ୍ କରି ଆସିଲି । ଦି ଘଣ୍ଟା ଲାଗିବ କାଠ ଶଗଡ଼ଟା ମଶାଣିକି ପହଞ୍ଚିବାକୁ । ତୁମେ ନିଶ୍ଚିନ୍ତ ହୋଇ ବସ ଭାଇ । ମୁଁ ସେମାନଙ୍କ କଥା ବୁଝେ । ଏକଥା କହି, ସେ ଚାଲିଗଲା ସେଇ ଆତ୍ମୀୟମାନଙ୍କ ପାଖକୁ ।

ଗୋବରାର କଥା ଶୁଣି ଚିତାଚୈତନ ମାମୁଁଙ୍କ ଉପରେ ଚିଡ଼ି ଉଠିଲା ସୁଦର୍ଶନର ମନ । ସେ ସମସ୍ତଙ୍କୁ ତଡ଼ିଦେଲେ । ବାବୁନିକୁ ତଡ଼ିବା କ'ଣ ଦରକାର ଥିଲା ମାମୁଙ୍କର ? ଏଠି ବାବୁନି ଥିଲେ, କାଠର ଅଭାବ ହୋଇନଥାନ୍ତା ।

ଅକସ୍ମାତ୍ ସେଇ ଦୁର୍ଘଟଣାଟି ଘଟିଗଲା ।

ସୁଦର୍ଶନ ଦେଖୁଥିଲେ । ଅଳ୍ପଦୂରରେ ସେଇ ଆଖୁକିଆରି ପାଖେ ଆମ୍ବତୋଟାଟି । ଦଳେ ଗାଈଆଳ ଟୋକା ଗୋଠ ଜଗିଥିଲେ । ବୁଢ଼ୀଟିଏ ଆସୁଥିଲା । ଟୋକାଏ ବୁଢ଼ୀକୁ ହଠାତ୍ ଘେରିଗଲେ । କିଏ ଗୋବର ଟୋକେଇଟାକୁ ଟାଣି ପକାଇ ଦେଲା, କିଏ ଟାଣିଲା ତାର ଝୋଟଭଳି ପାଚିଲା ବାଳକୁ । ଆତ୍ମରକ୍ଷାର ବାଟ ନପାଇ, ବୁଢ଼ୀ କାନ୍ଦି ପକାଉଥିଲା । ଟୋକାମାନଙ୍କ କବଳରୁ ବୁଢ଼ୀ ମୁକୁଳିବା ସହଜ ନଥିଲା । ଦୁଷ୍ଟ ପିଲାଙ୍କୁ ଘଉଡ଼େଇ ଦେଇ ସୁଦର୍ଶନ ବୁଢ଼ୀକୁ ପାଖକୁ ଡାକି ପଚାରିଲେ, ଉଦୁଉଦିଆ ଖରାରେ ତୁମେ ଏଠି କ'ଣ କରୁଛ ମାଉସୀ ।

ସହାନୁଭୂତିର ଶୀତଳ ସ୍ପର୍ଶରେ ବୁଢ଼ୀ ନିଃଶ୍ୱାସ ମାରିଲା, ଛିଣ୍ଡା ପଣତ କାନିରେ ରେଖାଙ୍କିତ ମୁହଁର ଝାଳ ପୋଛି ବୁଢ଼ୀଟି କହିଥିଲା ବାବୁ, ଏ ଅଞ୍ଚଳରୁ ବଣ ଜଙ୍ଗଲ ସଫା ହେଇଗଲାଣି । ଜାଳକାଠ ତ ସପନ ହେଲାଣି । ଗୋବର ବି ମିଳୁନି । ଦେଖିଲନି, ମୋ ସାଉଣ୍ଟା ଗୋବରତକ ଟୋକାଏ ଛଡ଼େଇନେଲେ । ମୁଁ ଗୋଠର ଗୋବରରେ ଟିପ ଛୁଇଁନାହିଁ । ମୁଁ ଏବେ ଘରକୁ ଫେରିବି କୋଉ ମୁହଁରେ ? ଖାଲି ହାତରେ ଗଲେ ବୋହୂ କ'ଣ ଭାତ ମୁଠାଏ ଦେବ ?

ଏମ.ପି. ସୁଦର୍ଶନଙ୍କ ବୁଦ୍ଧି ବଣା ହେଇଗଲା । ବୁଢ଼ୀଟିର ମଥାର ପାଚିଲା ବାଳ ଝୋଟ ଭଳି ପବନରେ ଫୁରଫୁର ଉଡୁଥିଲା । ବିଲର ହିଡ଼ଭଳି ଛାତିର ପଞ୍ଜରା ହାଡ଼ ସବୁ ଛିଣ୍ଡା ଲୁଗା ତଳେ ସ୍ପଷ୍ଟ ଦିଶୁଥିଲା । ସ୍ୱାଧୀନତାର ପଇଁତାଳିଶ ବର୍ଷ ପରେ, ଏ ବୁଢ଼ୀ ହିଁ ଦେଶର ନମୁନା । ଦାରିଦ୍ର୍ୟର ସୀମାରେଖା କେଉଁଠି କିଏ ଜାଣେ ? ମୁଠାଏ ଗୋବର, ସେଥିପାଇଁ ଜରାଜୀର୍ଣ୍ଣ ବୁଢ଼ୀର କି ନିଷ୍ଠୁର ସଂଗ୍ରାମ ? ବିଦେଶୀ ପର୍ଯ୍ୟଟକ କ୍ୟାମେରାରେ ଏ ଦୃଶ୍ୟକୁ ସାଇତି ନ ରଖିବ କାହିଁକି ? ପୃଥିବୀର ରାଜନୀତିରେ ଏହାର ମୂଲ୍ୟ ସେ ଜାଣିଛନ୍ତି । ବିଦେଶୀ ସାମ୍ବାଦିକଙ୍କୁ ସମ୍ମୁଖୀନ ହେବା ଭାରି କଠିନ !

ସୁଦର୍ଶନବାବୁଙ୍କ ଚିନ୍ତାର ଖିଅଟା ଅକସ୍ମାତ୍ ଛିଣ୍ଡିଗଲା । ବୁଢ଼ୀର ମୁହଁଟି ଚିହ୍ନା ଚିହ୍ନା ମନେ ହେଲା । ଦୋ ଦୋ ପାଞ୍ଚ ହେଇ ସେ ପଚାରିଲେ, ମାଉସୀ, ତୁମ ଘର କେଉଁ ଗାଁରେ କି ?

ଆମ ଗାଁ, ନଈ ସେପାରି ପଦୁଅଁ ପୋଖରୀ ।

ପଦ୍ମପୋଖରୀ ? ଗାଁ ନାଁଟି ଶୁଣି ଚମକି ଉଠିଲେ ସୁଦର୍ଶନ । ତାଙ୍କ ରକ୍ତରେ ବିଜୁଳି ଖେଳିଗଲା । ନ' ବର୍ଷ ତଳେ ସେହି ଦାରୁଣ ମୁହୂର୍ତ୍ତରେ ଏଇ ବୁଢ଼ୀ ସଙ୍ଗେ ଭେଟ ହୋଇଥିଲା ସେଇ ପଦ୍ମପୋଖରୀ ଗାଁରେ ।

ଏତେ ଦୂରବାଟରୁ ଗୋବର ପାଇଁ ତୁମେ ଆସୁଛ ମାଉସୀ ?

ଯେତେ ଦୂର ବାଟ ହେଉ, ନ ଆସିଲେ ନ ଚଳେ । ଖାଲି ପଦୁଅଁପୋଖରୀ ନୁହେଁ, ସକାଳୁ ରାତିଯାଏ ହରିପୁର, ନଛିପୁର, ତାଳପଦା, କଦମପୁର ଗାଁ ମଫସଲରୁ ଲୋକେ ହିଡ଼ଭାଙ୍ଗି, କାଦୁଅ ଚକଟି ଧାଇଁଛନ୍ତି ସହରକୁ । ଧାନଚାଉଳ, ପନିପରିବା, ଦୁଧଦହି ସହର ବଜାରରେ ନ ବିକିଲେ ଗୁଜୁରାଣ ମେଣ୍ଟିବ କେମିତି ? କହୁ କହୁ ବୁଢ଼ୀଟି କହିଥିଲା, 'ହେଇଟି, ଦେଖ ସେଇ ପୁରୁଣା ଓସ୍ତଗଛ, ଦଶବର୍ଷ ତଳେ ଶୁଭ ଦିଆଗଲା । କହିଲେ କ'ଣ ନା, ମହାନଈ ଉପରେ ପୋଲ ହେବ । ତୁମ ଗାଁ ମଫସଲକୁ ପକା ସଡ଼କ ଫିଟିଯିବ । ଦିନରାତି ବସ ଚାଲିବ । ଜାଣିଛ ବାବୁ, ଶୁଭ ଦେଇଥିଲେ ଜଣେ ସହରିଆ ମନ୍ତ୍ରୀ । ଦେଖ, ଏଠି ପୋଲ ହୋଉନି କି ସେ ମନ୍ତ୍ରୀଙ୍କର ଆଉ ଦେଖା ନାହିଁ । କଥାରେ କହନ୍ତି ନାହିଁ,

ମୋତେ ଯେତେ ମାଠିବୁ ମାଠ, ମୁଁ ତ ସେଇ ଦରପୋଡ଼ା କାଠ ।

ସହର ପଛପଟେ ଢଳିଲା ଦିନକୁ ଚାହିଁ ବୁଢ଼ୀ ଚମକିପଡ଼ି ଉଠି ପଡ଼ିଥିଲା । ଯାଉ ଯାଉ ବୁଢ଼ୀ କହୁଥାଏ, ଏ ପୋଲ ହେବ ନା ଆମ ଗାଁ ବାଲାଙ୍କ ଦୁଃଖ ଯିବ ? ମୁଁ ଯାଏ ଲୋ ମା । ବୁଢ଼ୀ କିଛି ବାଟ ଆଗେଇ ଯାଇ ପୁଣି ପଛକୁ ଫେରି ଆସି କହିଥିଲା, ହଁ ବାବୁ ସେ ସହରିଆ ମନ୍ତ୍ରୀ ଆମ ଗାଁକୁ ପୁଣି ଆସିବ ଯେ, ଭୋଟ ଭିକ ମାଗିବାକୁ । ବୁଢ଼ୀର କ'ଣ ଘଟଣା ମନେ ପଡ଼ିଲା କି କ'ଣ । ଯାଉ ଯାଉ ମନକୁ ମନ ମନ୍ତବ୍ୟ କଲା, କୋଉ ମୁହଁରେ ସେ ପଦୁଅଁପୋଖରୀ ଗାଁ ମାଡ଼ିବ ? ଏକଥା କହୁ କହୁ ପବନରେ ତା'ର ଛିଣ୍ଡାପଣତ କାନିକୁ ଉଡ଼େଇ ନାଉରିଆକୁ ଡ଼ାକ ପକେଇଲା, ଏ ଏ ବାଉରି, ଡ଼ଙ୍ଗା ରଖିବୁ... । ବୁଢ଼ୀ ଧଇଁସଇଁ ହେଇ ଧାଇଁ ଯାଇଥିଲା ଡ଼ଙ୍ଗା ଘାଟକୁ ।

ସୁଦର୍ଶନ ବାବୁ ପଥର ପାଲଟି ଗଲେ । ମନେହେଲା, ବୁଢ଼ୀର କଥା ନୁହେଁ ତ କଟା ଘା'ରେ ଚୂନ । ଲାଜ, ଭୟ, ସଙ୍କୋଚରେ ସେ ଜଡ଼ ପାଲଟି ଗଲେ । ସେ ଚାରିପଟକୁ ଚାହିଁଲେ । ନାଁ, ଆଖପାଖରେ କେହି ନଥିଲେ । ଛାତିଭିତରୁ ଦୀର୍ଘଶ୍ୱାସ ବାହାରି ଆସିଲା । ଜୀବନରେ ପ୍ରଥମଥର ପାଇଁ ମାମୁଁଙ୍କୁ ମନେ ପକେଇଲେ । କୃତଜ୍ଞତାରେ ତାଙ୍କ ମୁଣ୍ଡ ନଇଁଗଲା । ଭାଗ୍ୟ ଅନୁକୂଳ, ବାବୁନି ପାଖରେ ନଥିଲା, ବାବୁନି କିମ୍ବା ଆଉ କିଏ ଥିଲେ ସେ ନିଶ୍ଚେ ଚିହ୍ନା ପଡ଼ିଯାଇଥାନ୍ତେ । କଥା ସରିଯାଇଥିଲା ।

ହଁ, ବୁଢ଼ୀ ସତ କହୁଥିଲା । ସେତୁ ନିର୍ମାଣର ଶୁଭ ଖୁବ୍ ଆଡ଼ମ୍ବରରେ ଦିଆଯାଇଥିଲା । ପୌରୋହିତ୍ୟ କରିଥିଲେ ସେ ସମୟର ମନ୍ତ୍ରୀ ସ୍ୱୟଂ ସୁଦର୍ଶନ ବାବୁ । କିନ୍ତୁ ଏଇ ବୁଢ଼ୀ ଆଗରେ ସେ ତୁଣ୍ଡ ଫିଟେଇ ସତ କହି ପାରିଲେ ନାହିଁ ।

ସମୟର ବ୍ୟବଧାନ ଯୋଗୁଁ ସେ ବଞ୍ଚିଗଲେ । ବୁଢ଼ୀ ହୁଏତ ଚିହ୍ନି ପାରିନାହିଁ କିମ୍ବା ବୟସ ଯୋଗୁଁ ଆଖିକି ଭଲ ଦିଶୁନାହିଁ । ହେଲେ, ସୁଦର୍ଶନଙ୍କ ମନେ ଅଛି, ପଦ୍ମପୋଖରୀ ଗାଁରେ ବୁଢ଼ୀହିଁ ଶୁଣେଇଥିଲା ଚନ୍ଦନାର ଜୀବନର ସେଇ କରୁଣ କାହାଣୀ ।

ହଁ, ଜୀବନମଉସା, ତାଙ୍କର ଭାଗଚାଷୀ । ଚନ୍ଦନା ଜୀବନ ମଉସାଙ୍କ ବଡ଼ ଝିଅ । ଧାନ ଅମଳ ବେଳେ ସୁଦର୍ଶନ ବାପା ବୋଉଙ୍କ ସଙ୍ଗେ ଯାଉଥିଲେ । ସାନ ଭଉଣୀ ବନ୍ଦନା ଆଉ ଚନ୍ଦନା ଦୁହେଁ ବାପା ବୋଉଙ୍କ ସେବା ଯତ୍ନ କରିବାରେ ତ୍ରୁଟି କରିନଥିଲେ । ଶୀତଦିନେ ମଲାନଈ ସୁନ୍ଦର ଦିଶୁଥିଲା । କିନ୍ତୁ ବର୍ଷା ଦିନେ ବଢ଼ିବେଳେ ମଲାନଈ ଧରୁଥିଲା ପ୍ରଳୟଙ୍କରୀ ମୂର୍ତ୍ତି । ସେଦିନ ବିପଜ୍ଜନକ ବନ୍ୟାଞ୍ଚଳକୁ ଯୁବନେତା ସୁଦର୍ଶନ ଯାଇଥିଲେ ରିଲିଫ କାମ କରିବା ପାଇଁ । ଚୁଡ଼ା ଚାଉଳ ଧରି ଡଙ୍ଗାରେ ଯାଉଥିଲେ । ଦୂରରୁ ଟିକି ପିଲାର କାନ୍ଦଣା ଶୁଭିଲା । ଡଙ୍ଗାରୁ ସମସ୍ତେ ଦେଖିଲେ, ଗୋଟାଏ ଭାସିଗଲା ଚାଳରେ ଛୋଟ ପିଲାଟି କାନ୍ଦୁଛି । ସମସ୍ତେ ସେ କରୁଣ ଦୃଶ୍ୟ ଦେଖୁଥାନ୍ତି । କିନ୍ତୁ କାହାରି ସାହସ ହେଉନଥାଏ,

ନଈର ଖର ସୁଅରେ ଯାଉ ପିଲାଟିକୁ ଉଦ୍ଧାର କରିବାକୁ । ପାଖ ଦେଇ ଗୋଟିଏ ଡଙ୍ଗା ଯାଉଥିଲା । ଆଖିର ପଲକରେ ସୁଦର୍ଶନ ଦେଖିଲେ, ସେହି ଡଙ୍ଗାରୁ ଝିଅଟିଏ ନିର୍ଭୟରେ ପହଁରିଯାଇ ପିଲାଟିକୁ ଉଦ୍ଧାର କଲା । ସୁଦର୍ଶନ ଶୁଣି ଆଶ୍ଚର୍ଯ୍ୟ ହେଲେ, ଯେ ସେ ଜୀବନ ମଉସାଙ୍କ ଝିଅ, ଚନ୍ଦନା । ଚନ୍ଦନାକୁ ସେ ଛୋଟ ବେଳେ ଦେଖିଥିଲେ । କିନ୍ତୁ ଯା ଭିତରେ ଯେ ଚନ୍ଦନା ସହରରେ ପାଠ ପଢ଼ି, ବାଳିକା ବିଦ୍ୟାଳୟରେ ଶିକ୍ଷୟିତ୍ରୀ ହେଲେଣି, ସେ କଥା ତାଙ୍କୁ ଜଣା ନଥିଲା । ସେ ସମୟରେ ଖୁବ କମ ଝିଅ ଏମ.ଏ. ଯାଏ ପାଠ ପଢ଼ିଥିଲେ । ଚନ୍ଦନାର ପ୍ରତିଭା ସୁଦର୍ଶନକୁ ମୁଗ୍ଧ କରିଥିଲା ।

ହଁ ଆଜି ମନେ ପଡୁଛି । ସେ କଥା ତ ଜୀବନରେ ଭୁଲିବା ସମ୍ଭବ ନୁହେଁ । ଦଳର ପ୍ରତିନିଧି ହିସାବରେ ଇଉରୋପକୁ ସୁଦର୍ଶନ ରାଜନୈତିକ ଭ୍ରମଣରେ ଯାଇଥିଲେ । ଦିଲ୍ଲୀକୁ ଫେରି ସେ ଚନ୍ଦନାର ଚିଠି ପାଇ ଚମକି ଉଠିଥିଲେ । ସେଇଟା ଥିଲା ଚନ୍ଦନାର ଶେଷ ଚିଠି ।

ଚନ୍ଦନା ଲେଖିଥିଲା, ମୁଁ ନିରୂପାୟ ହୋଇ ଶେଷକୁ ତୁମ ଉଆସକୁ ଗଲି । ମନରେ ସାହସ ନେଇ ମୁଁ ମଉସାଙ୍କୁ ଭେଟିଥିଲି । ମୁଁ ଆଶା କରିଥିଲି, ମୋର ଗୁରୁତର ଅବସ୍ଥା କଥା ମଉସା ବୁଝିବେ, ଏବଂ ସାହାଯ୍ୟର ହାତ ବଢ଼େଇ ଦେବେ । କିନ୍ତୁ ଦୁଃଖର କଥା, ପୁରୁଣା ସାମନ୍ତବାଦୀ ଆଭିଜାତ୍ୟର ଖୋଳଭିତରୁ ସେ ବାହାରି ପାରିଲେ ନାହିଁ । ଆଜିର ଦୁନିଆକୁ ସେ ଚିହ୍ନିବାରେ ଭୁଲ କଲେ । କହିଲେ, 'ମୁଁ ତୋତେ ଜାଣିଛି । ତୁ ଜୀବନର ଝିଅ । ତୋ' ହାତପରଷା ମୁଁ ଖାଇଚି । ଭୁଲିବି କାହିଁକି ? କିନ୍ତୁ ଜୀବନ ସଙ୍ଗେ ମୋର କେବଳ ଭାଗଚାଷର ସମ୍ବନ୍ଧ । ଜୀବନ କ'ଣ ମୋ ସଙ୍ଗେ ବନ୍ଧୁ ବାନ୍ଧିବାର ସ୍ୱପ୍ନ ଦେଖୁଛି ? ଜୀବନକୁ କହିଦେବୁ, ସେ ସେ ଭୁଲ କରିବ ନାହିଁ ।'

ସୁମିଅପା କହିଲେ, 'ଚନ୍ଦନା, ନଈରେ କାତମାରି ନୌକା ଚଳେଇବା କି ନଈ ସୁଅରେ ପହଁରିବା କାମ ଏ ନୁହେଁ । ଗୋଟିଏ ବାଳିକା ବିଦ୍ୟାଳୟରେ ଶିକ୍ଷୟିତ୍ରୀ ହେଲୁ ବୋଲି କଣ ଗଡ଼ ଜିଣିଗଲୁ ? କେତେ ଝିଅର ବାପା, ଭାଇଙ୍କ ପାଇଁ ଚାହିଁ ବସିଛନ୍ତି । ତୁ କଣ ରାଜ୍ୟସଭାରେ ଭାଷଣଦେଇ ପାରିବୁ ନା ପାର୍ଲାମେଣ୍ଟରେ ଇଂରାଜୀରେ ଲେକ୍‌ଚର ଦେଇପାରିବୁ ? ଏ ଘରର ବୋହୂ ହେବାର ଯୋଗ୍ୟତା ଚନ୍ଦନା, ଅନ୍ତତଃ ତୋର ନାହିଁ । ଏକଥା ଜାଣିଥା ।'

ମୁଁ ବୁଝିଲି, ସେମାନଙ୍କର ଭୁଲ କେଉଁଠି ? ସେମାନେ ତୁମକୁ ଚିହ୍ନିବାରେ ଭୁଲ କରିଛନ୍ତି । କିନ୍ତୁ ମୋର ବିଶ୍ୱାସ ଥିଲା, ତୁମର ବୋଉ ସେ ଭୁଲ କରିବେ ନାହିଁ । ମୋର ଦୁଇ ଆଖିରେ ତୁମର ଜିଅନ୍ତା ସତ୍ତାକୁ ମାଉସୀ ଠିକ୍ ପଢ଼ି ପାରିବେ । କିନ୍ତୁ ହାୟ, ମୁଁ ନିରାଶ ହେଲି । ସେ ରୁକ୍ଷ କଣ୍ଠରେ ମୋତେ ପଚାରିଲେ, କ'ଣ କହିଲୁ ଦର୍ଶନର ପିଲା ତୋ' ପେଟରେ ? ମୁଁ ଦର୍ଶନର ମା । ମୁଁ ତାକୁ ତୋଠୁ ଭଲ ଚିହ୍ନେ । ମୋ' ଦର୍ଶନ ମୁଣ୍ଡରେ ଅଠା ବୋଳିବାକୁ ଚେଷ୍ଟା କରିବୁ ନାହିଁ ।

ବୋଉକୁ ହଟେଇବା ମୋ ପକ୍ଷରେ ସମ୍ଭବ ହେଲାନାହିଁ । ମୋ' ଗର୍ଭରେ ତୁମର ଚଞ୍ଚଳ ରକ୍ତ ମୋତେ ଅସ୍ଥିର କରି ପକାଇଲା । ମୁଣ୍ଡ ନଇଁ ନୁହେଁ, ମଥାଟେକି ତୁମ ଉଆସର କଂସା କବାଟକୁ ଭାଙ୍ଗିବାଯାଏ ମୋତେ ଅପେକ୍ଷା କରିବାକୁ ପଡ଼ିବ । ମୁଁ ଫେରି ଆସିଲି ।

ଆମ ଗାଁର ଏଇ ନଡ଼ିଆ ମାଳରେ କେତେ ନିର୍ଜନ ଦି'ପହର ତୁମେ ବିତେଇଛ । ଆମ ଡ଼ଙ୍ଗାରେ ବସି କେତେ ଜହ୍ନରାତିରେ ଏ ନଈର ଆକାଶରେ ମେଘ ଆଉ ଜହ୍ନର ଖେଳ ଦେଖିଛ । ଏ ମଲା ନଈକୁ ମନ୍ଦାକିନୀ କରି ସୁନା ବୋଇତର ସ୍ୱପ୍ନ ତୁମେ ଦେଖିଛ । ତୁମରି ସନ୍ତାନକୁ ଗର୍ଭରେ ଧରି ମୁଁ ତୁମରି ବାଟକୁ ଚାହିଁ ବସିଛି । ବସିଲା ଥାନରୁ ଉଠିଆସିବ ।

ଚନ୍ଦନାର ସେଇ ଚିଠି ପାଇ ମନରେ ଉଠିଲା ନିଆଁର ଝଡ଼ । ସୁଦର୍ଶନ ଚମକି ଉଠିଲେ । ତିନିମାସ ଆଗରୁ ଚନ୍ଦନା ଚିଠି ଦେଇଛି । ସେ କଳ୍ପନା କରିନେଲେ, ନିର୍ବାସିତା ସୀତା ଭଳି ନଈସେପାରି ଗାଁରେ ତାଙ୍କରି ସନ୍ତାନକୁ କୋଳରେ ଧରି ଚନ୍ଦନା ବାଟ ଚାହିଁ ବସିଛି । ମୁହୂର୍ତ୍ତକରେ ସେ ମନ ଠିକ୍ କଲେ: ଚନ୍ଦନା ଆଉ ତା'ର ସନ୍ତାନକୁ କୋଳରେ ଧରି ବୋଉଙ୍କ ଆଗରେ ସୁଦର୍ଶନ ଠିଆ ହେବ । କହିବ, ବୋଉ, ଏଇ ତୋର ବଡ଼ ବୋହୂ । ସୁନାହାର ନୁହେଁ, କି ଲୁହା ସିନ୍ଦୁକର ଚାବି ଲୋଡ଼ାନାହିଁ । ତୋଠୁ ଆଶୀର୍ବାଦ ନେବାକୁ ଆମେ ଦୁହେଁ ଆସିଛୁ ।

ସୁଦର୍ଶନ ସିଧାସଳଖ ଗଲେ ପଦ୍ମପୋଖରୀ ଗାଁକୁ । କିନ୍ତୁ କୋଳରେ କଅଁଳ ପିଲାକୁ ଧରି ଚନ୍ଦନା ବାହାରି ଆସିଲା ନାହିଁ । ଘର ଭିତରୁ ପିଲାର କାନ୍ଦଣା ବି ଶୁଭୁନଥିଲା । ମଶାଣି ଭଳି ସବୁ ନୀରବ । ଚୁପ୍‌ଚାପ୍, ମନରେ ଜମିଗଲା ଅଜଣା ଆଶଙ୍କା । କିନ୍ତୁ କବାଟ ଖୋଲି ଯେ ଘରୁ ବାହାରି ଆସିଲେ, ସେ ଚନ୍ଦନାର ମା, ଦୁଆର ଆଗରେ ସୁଦର୍ଶନକୁ ଦେଖି, ତାଙ୍କ ମୁହଁରୁ ଭାଷା ଫୁଟିଲା ନାହିଁ । ସେ ପଥର ପାଲଟି ଯାଇଥିଲେ ।

କିନ୍ତୁ ସାଇପଡ଼ିଶାରୁ ମାଇପେ ଧାଇଁ ଆସିଥିଲେ । ସେମାନଙ୍କ ଭିତରେ ଥିଲା ଏଇ ବୁଢ଼ୀଟି, ସେ କହିଥିଲା, ବାବୁ, ତମେ ଚନ୍ଦନାକୁ ଖୋଜୁଛ ? ସେ ମୋର ନେଖାରେ ନାତୁଣୀ ହେବ । ମୋ' ନାତୁଣୀର କପାଳ ମନ୍ଦ । ସେ ବାମନ ହେଇ ଜହ୍ନକୁ ହାତ ବଢ଼େଇଥିଲା, ଫଳ ପାଇଗଲା । ଯେଉଁଦିନ ସେ ଗର୍ଭକଷ୍ଟ ପାଇଲା ସେଦିନ ଏଠି ଯୋଉ ମେଘବର୍ଷା, ଝଡ଼ତୋଫାନ କହିଲେ ନସରେ । ତା' ମା ମୋତେ କହିଲା, ମାଉସୀ, ମୋ ଝିଅ ଭାରି କଷ୍ଟ ପାଉଛି, ଟେକୁ ଲାଗିଲା । ତା' ବାପ ଯାଇଚି ସହରରୁ ଡାକ୍ତର ଆଣିବ ।

ତନ୍ମୟ ହୋଇ ଶୁଣୁଥିଲେ ସୁଦର୍ଶନ ବାବୁ । ବ୍ୟଗ୍ର ହେଇ ସେ ପଚାରିଲେ, କ'ଣ ଡାକ୍ତର ଆସିଲେ ସେ ଯଉ ନଈବଢ଼ି । ଅକାତକାତ ପାଣି । ଚାରିଆଡ଼େ ସମୁଦ୍ର ଲହଡ଼ି । ବର୍ଷାଝଡ଼ରେ ସହରକୁ ମଣିଷ ଯିବ କେମିତି ନା ସହରରୁ ମଣିଷ ଆସିବ କେମିତି ?

ତା'ପରେ ?

ତା'ପରେ ଆଉ କ'ଣ ? ପିଲା ଜନମ କରି ନପାରି ମୋ ନାତୁଣୀ ଅଣନିଃଶ୍ୱାସିଆ ହୋଇ ମୋରି କୋଳରେ ଢ଼ଳିପଡ଼ିଲା । ଏତକ କହି ବାହୁନି ବାହୁନି ବୁଢ଼ୀ କାନ୍ଦିବାକୁ ଲାଗିଲା ।

ଜମି ଯାଇଥିବା ମାଉକିନିଆ ଭିତରୁ କିଏ ଜଣେ କହିଥିଲା, କହିଲ ବାବୁ, ଏଇ ମଳାନଈ ଉପରେ ପୋଲଟିଏ ଥିଲେ ଝିଅଟା ଏମିତି ହନ୍ତସନ୍ତ ହେଇ ଜୀବନ ହରେଇଥାନ୍ତା ? ପୁଣି କିଏ ହତାଶ ସ୍ୱରରେ କହିଥିଲା, ଗାଁ ମଫସଲରେ କେତେ ବୋହୂ ଝିଅ ଅକାଳରେ ପୋକ ମାଛି ଭଳି ମରୁଛନ୍ତି । ଆମ ଗରିବଙ୍କ ଦୁଃଖ କିଏ ବୁଝୁଛି ?

ସେଦିନ ସୁଦର୍ଶନଙ୍କ ଛାତିଭିତରୁ ମୁଠାଏ ନିଆଁ ବାହାରି ମିଶି ଯାଉଥିଲା ଏଇ ମଳାନଈର ଆକାଶରେ । ରାକ୍ଷସୀ ମଳାନଈକୁ ସେ ଅଭିଶାପ ଦେଉଥିଲେ ସେଦିନ ।

ଏକଦା ମନ୍ତ୍ରୀ, ଆଜିର ଏମ.ପି. ସୁଦର୍ଶନ ବାବୁ ଜୀବନର ବାର୍ଦ୍ଧକ୍ୟରେ ସଂଧ୍ୟାର ଆକାଶକୁ ଚାହିଁ ଦୀର୍ଘଶ୍ୱାସ ଛାଡ଼ିଲେ । ମଳାନଈ ଆଡ଼କୁ ଚାହିଁ ଦେଖିଲେ । ନା, ଅଶୀବର୍ଷର ସେଇ ଥୁରୁଥୁରୁ ବୁଢ଼ୀର ଝୋଟଭଳି ଧଳାବାଳ ତାଙ୍କୁ ଦିଶୁନଥିଲା କି ତା' ଛିଣ୍ଡା ପଣତ କାନି ପବନରେ ଫୁରୁଫୁରୁ ହେଇ ଉଡ଼ୁନଥିଲା । ସେ ହୁଏତ ଅନେକ ବେଳୁ ଡଙ୍ଗାରେ ବସି ନଈ ସେପାରି ଗାଁକୁ ଚାଲିଗଲାଣି । କିନ୍ତୁ ତା'ର ସେଇ କଥାଗୁଡ଼ିକ ମଶାଣିର ପବନରେ ଘୁରିବୁଲୁଛି । ମନେହେଲା, ତା'ର ବୋଉ ଯେମିତି ସେଇ ବୁଢ଼ୀର ଦେହ ଭିତରେ ଜିଇଁଛି । କାରଣ ବୋଉଙ୍କ ଆତ୍ମାର ଅତୃପ୍ତ ସ୍ୱର ହିଁ ଶୁଭୁଥିଲା ବୁଢ଼ୀଟିର କଥାରେ । ମଶାଣିରେ ବସି ଏକାନ୍ତରେ ବୋଉଙ୍କ ମୁହଁରେ ସେ ଯାହା ଖୋଜୁଥିଲେ, ତା ସେ ପାଇଗଲେ । ସହର ସେ ପାରିରୁ ନଇଁଗଲା ସୂର୍ଯ୍ୟର ଲାଲ କିରଣ ଝରିପଡୁଥିଲା । ସେ ଆଲୁଅରେ ସେ ଦେଖିଲେ, ସେଇ ବୁଢ଼ୀଟିର ମୁହଁଭଳି ତା' ବୋଉଙ୍କ ମୁହଁରେ ମଧ ଫୁଟି ଉଠିଥିଲା ଏଇ ମଳାନଈର ଜୀବନ ଯନ୍ତ୍ରଣାର ରେଖାସବୁ ।

ବିସ୍ମିତ ହେଲେ ସୁଦର୍ଶନ । କାରଣ ତାଙ୍କର ଅଜଣାରେ ଦୁଇ ଆଖିରୁ ଧାର ଧାର ଲୁହ ଝରି ପଡୁଥିଲା । ଲୋକଙ୍କ ଆଗରେ ସେ ଲୁହ ଝରିପାରୁ ନଥିଲା । ସେଇ ଲୁହ ପଥର ଛାତିକୁ ଫଟେଇ ଗୋପନରେ ଝରିଯାଉ । ସେ ବାଧା ଦେବେ ନାହିଁ । ସେ ତ ସମାଜର ଇନ୍ଧନ ହେଇ ପାରିଲେ ନାହିଁ କି ଅଙ୍ଗାର ହୋଇ ପାରିଲେ ନାହିଁ । ସେ କେବଳ ମଶାଣିର ଦରପୋଡ଼ା କାଠଟିଏ ।



# ମରଣ ମୁହଁରୁ

ସେଦିନ ସଂଜକୁ କଲେଜରୁ ଫେରି ଶୁଣିଲି ଝିଅ ରୀନାର ଏକସିଡ଼େଣ୍ଟ ହୋଇଛି । ରୀନା ଆମର ଏକମାତ୍ର ଝିଅ । ଏକସିଡେଣ୍ଟ କଥା ଶୁଣି ମୁଁ ଚମକି ଉଠିଲି । ରିକ୍ସାରେ ସେ ସ୍କୁଲରୁ ଫେରୁଥିଲା । କାର ଧକ୍କାରେ ରିକ୍ସା ଓଲଟି ପଡ଼ିଲା । କାରଟି ଝିଅ ଉପରେ ମାଡ଼ି ଯାଇଥାନ୍ତା । କିନ୍ତୁ ରୀନା ରକ୍ଷା ପାଇ ଯାଇଛି । ଭାଗ୍ୟକୁ ସେଇଠି ରେଜ୍ଜାକ ଥିଲା । ସେ କାରଟିକୁ ଅଟକେଇ ସେଇ ଗାଡ଼ିରେ ରୀନାକୁ କ୍ଲିନିକ୍‌କୁ ନେଇ ଚିକିତ୍ସା କରେଇ ଆଣି ଘରେ ଛାଡ଼ି ଦେଇ ଯାଇଛି । ତୁରନ୍ତ ଘର ଭିତରକୁ ଯାଇ ମୁଁ ରୀନା ପାଖକୁ ଧାଇଁଲି । ଦେଖିଲି ରୀନାର ମୁଣ୍ଡ ଫାଟିଯାଇଛି । ଦେହରେ ଏଠି ସେଠି ଛିଣ୍ଡି ଯାଇଛି । ତେବେ ସେ ଗୁରୁତର ଆଘାତ ପାଇନାହିଁ । ଅଳ୍ପକେ ରକ୍ଷାପାଇ ଯାଇଛି । ଏକଥା ଶୁଣି ମୋ ଛାତି ଭିତରୁ ଦୀର୍ଘଶ୍ୱାସଟାଏ ବାହାରିଗଲା । ଭଗବାନଙ୍କ ନିକଟରେ ମନେ ମନେ କୃତଜ୍ଞତା ଜଣାଇଲି ।

ଶ୍ରୀମତୀ କିନ୍ତୁ ତାଗିଦା କରି କହିଲେ, ଶୁଣ, ତୁମେ ନିଜେ ଯାଅ । ରେଜ୍ଜାକ ସଙ୍ଗେ ଦେଖାକରି ତାକୁ ଧନ୍ୟବାଦ ଜଣେଇ ଆସ । ଶ୍ରୀମତୀଙ୍କ କଥା ଶୁଣି ବିରକ୍ତିରେ ମୁଁ ଚାହିଁଲି ତାଙ୍କ ମୁହଁକୁ । ମନକୁ ମନ କହିଲି, ଜଣେ ଖୁନୀ ଆସାମୀ ପାଖକୁ ଯାଇ ଧନ୍ୟବାଦ ଜଣେଇବାକୁ କହୁଛ ? ମୋ ମନ କଥାକୁ ସେ ବୁଝି ପାରିଲେ କି ନାହିଁ କେଜାଣି ଓଲଟି ସେ କହିଥିଲେ, ଏମିତି ଚାହୁଁଛ କ'ଣ ମ ? ରେଜ୍ଜାକ ଆମ ଝିଅ ପାଇଁ ଆଜି ଯାହା କରିଛି ସେଥିପାଇଁ ଆମେ କୃତଜ୍ଞ ହେବା କଥା । ଏ ଯୁଗରେ ଏଭଳି ନିଃସ୍ୱାର୍ଥପର କାମ କିଏ କରୁଛି ?

ମୁଁ କ'ଣ କହିବାକୁ ଯାଉଥିଲି । କିନ୍ତୁ ମୋତେ ଉତ୍ତର ଦେବାକୁ ସୁଯୋଗ ନ ଦେଇ ରୀନା କହି ଉଠିଲା, ବାପା, ରେଜ୍ଜାକ ଚାଚା ସେଠି ନଥିଲେ ମୋ ଅବସ୍ଥା କ'ଣ ହୋଇଥାନ୍ତା, କେଜାଣି ?

କାହିଁକି ? ବ୍ୟଗ୍ର କଣ୍ଠରେ ମୁଁ ପଚାରିଥିଲି ।

ରିକ୍ସାରୁ ଛିଟିକି ପଡ଼ି ମୁଁ ଅଚେତ ହୋଇ ପଡ଼ିଥିଲି । ରୀନାକୁ କୋଳକୁ ଟାଣି ନେଇ ଆଦରରେ ପଚାରିଲି, କ'ଣ କହିଲୁ ମା, ତୁ ସେନ୍ସଲେଶ ହୋଇ ଯାଇଥିଲୁ ? ତା'ହେଲେ ରେଜ୍ଜାକର ଉପକାରକୁ ଭୁଲି ହେବନି ମା ।

ତମେ ରେଜ୍ଜାକ୍ ଚାଚା ଘରକୁ ଯିବନି ବାପା ? ମୋଠୁ କଥା ଆଦାୟ କରିବାକୁ

ଚାହିଁଥିଲା ରୀନା । ଅଭିମାନୀ ଝିଅକୁ ଆଶ୍ୱାସନା ଦେଇ ମୁଁ କହିଥିଲି, ଯିବି, ଯିବିରେ ମା । ତୁ କହୁଛୁ ଯେତେବେଳେ ନ ଗଲେ ଚଳିବ ?

ସତ କଥା କହିବାକୁ ଗଲେ, ମୋ' ସାମନାରେ କେହି ରେଜ୍ଜାକ ଅଲିର ନାଁ ଧରିଲେ ଘୃଣାରେ ମୋ ଦେହ ଜଳି ଉଠୁଥିଲା । ସେଦିନ ଘରେ ରେଜ୍ଜାକର ନାଁ ଶୁଣି ମୋ ଆଖି ଆଗରେ ତା'ର ସେଇ ଛ'ଫୁଟ ସାଢ଼େ ଛ' ଫୁଟ ଦୀର୍ଘ ବିଶାଳ ଦେହଟା ଭାସି ଉଠିଲାନି ଯେ ସେଇ ନାରକୀୟ ଘଟଣାର ଦୃଶ୍ୟ ମଧ କଳ୍ପନାରେ ଭାସି ଉଠିଥିଲା ମୋ ଆଖି ଆଗରେ । ସହରର ଶେଷ ସୀମାରେ ସେଇ ବିସ୍ତୃତ ଧାନବିଲରେ ନିର୍ଜନ ଛପର ଘରେ ଜଣେ ସତୁରୀ କି ପଞ୍ଚସ୍ତରୀ ବର୍ଷର ବୁଢ଼ୀକୁ ହତ୍ୟା କରିବାର ସେଇ ଜଘନ୍ୟ ଦୃଶ୍ୟ !

ରେଜ୍ଜାକ ଅଲିକୁ ମୁଁ ଚିହ୍ନିଥିଲି । ଏଇ ସହରରେ ସେ ମାଂସ ଦୋକାନ କରୁଥିଲା । ମୁଁ ତା' ଦୋକାନରୁ ନିୟମିତ ମାଂସ କିଣୁଥିଲି । ରେଜ୍ଜାକର ଅନେକ ଗୁଡ଼ିଏ ଝିଅ । ସେମାନଙ୍କ ଭିତରୁ କେଇଜଣ ସ୍କୁଲରେ ଶ୍ରୀମତୀଙ୍କର ଛାତ୍ରୀ ଥିଲେ । ସେଇ ସୂତ୍ରରେ ରେଜ୍ଜାକ ଆମକୁ ଭଲ କିସମର ମାଂସ ଦେଉଥିଲା ବୋଲି ଆମର ବିଶ୍ୱାସ ଥିଲା । ଏଣୁ ବାହା-ଭୋଜି ସମୟରେ ମୋର ବଂଧୁମାନେ ମାଂସ ଯୋଗାଇଦେବାର ଦାୟିତ୍ୱ ମୋତେ ଦେଇ ନିଶ୍ଚିତ ରହୁଥିଲେ । ଏବଂ ମୁଁ ଯାଇ ହାଜର ହେଉଥିଲି ରେଜ୍ଜାକର ଘରେ ।

ଦିନେ ସେଇ ଜଘନ୍ୟ ସଂବାଦଟି ପ୍ରଚାରିତ ହେଲା ସାରା ସହରରେ । ଜଣେ ନିଃସହାୟା ବୁଢ଼ୀ । ତାକୁ କିଏ ବା କେଉଁମାନେ ନିର୍ମମ ଭାବେ ହତ୍ୟା କରି ତା'ର ସଞ୍ଚିତ ଟଙ୍କା ପଇସା ଗହଣା ଆଦି ସବୁ କିଛି ଲୁଟି ନେଇ ଯାଇଛନ୍ତି । ଦୁଇ ଜଣ ଆସାମୀଙ୍କ ସଙ୍ଗେ ରେଜ୍ଜାକ ମଧ ଧରାହୋଇ ହାଜତକୁ ଯାଇଛି ।

ଏଭଳି ଏକ ଜଘନ୍ୟ ହତ୍ୟାକାଣ୍ଡରେ ରେଜ୍ଜାକ ଲିପ୍ତ ଥିଲା, ଏ ଖବର ଶୁଣି ସ୍ୱତଃ ମନେହେଲା, ଯେଉଁ ଲୋକ ଛେଳିମେଣ୍ଢା ଆଦି ପଶୁକୁ କାଟିପାରେ ତା ପକ୍ଷରେ ମଣିଷକୁ ମାରିବା କିଛି ବିଚିତ୍ର କଥା ନୁହେଁ ।

ଦୀର୍ଘଦିନ ବିଚାର ଚାଲିଥାଏ । କୋର୍ଟରେ ଗହଳି କହିଲେ ନସରେ । ପ୍ରାୟ ଦୁଇବର୍ଷ ପରେ ବିଚାରରେ ଦୁଇଜଣ ଆସାମୀ ଫାଶୀଦଣ୍ଡ ପାଇଲେ । କିନ୍ତୁ ରେଜ୍ଜାକ୍ ବେକସୁର ଖଲାସ ପାଇଗଲା । ରେଜ୍ଜାକ୍ ଜେଲରୁ ମୁକୁଳି ଆସିଲା ସତ, ହେଲେ ଆମେ ବିଚାରିଲୁ, ପ୍ରତ୍ୟକ୍ଷ ସାକ୍ଷୀପ୍ରମାଣ ଅଭାବରୁ ବୋଧହୁଏ ସେ ରକ୍ଷା ପାଇଗଲା । କିନ୍ତୁ ଆମ ମନରେ ଟିକିଏ ବି ସନ୍ଦେହ ନଥିଲା; ରେଜ୍ଜାକ୍ କେବେହେଲେ ନିର୍ଦ୍ଦୋଷ ହୋଇ ପାରେନା । ସୁନାକୁ ଥରକୁ ଥର କଷଟି ପଥରରେ କଷି ପରଖିବାକୁ ହୁଏ । କିନ୍ତୁ ମଣିଷକୁ ଥରେ ଚିହ୍ନିଲେ ଯଥେଷ୍ଟ ।

ରେଜାକ ଏ ଅଞ୍ଚଳର ଲୋକ ନୁହେଁ । ସୁଦୂର ପଶ୍ଚିମ ମୂଲକର ଲୋକ । ସେ ଜେଲରୁ ଫେରିଲା ପରେ ତା' ସଙ୍ଗେ ମୁଁ ଦେଖା କରିନାହିଁ । ହେଲେ ତା'ର ସେଇ ବିଶାଳ ଦେହରେ ମଣିଷକୁ ମାରିବାର ହିଂସ୍ର ମନଟା ମୋ ଆଖି ଆଗରେ ଭାସି ଉଠୁଥିଲା । ରେଜାକ୍‌ର ସେଇ ଜଘନ୍ୟ ଆସୁରିକ ରୂପକୁ ମୁଁ ଏଡ଼େଇ ଯିବାକୁ ଚେଷ୍ଟା କରୁଥିଲି ।

କିନ୍ତୁ ସେଦିନ ଏକ ନିଶ୍ଚିତ ମରଣ ମୁହଁରୁ ମୋ ଝିଅକୁ ସେ ବଞ୍ଚେଇଥିଲା । ତେଣୁ ମୋ ସ୍ତ୍ରୀ କିମ୍ବା ଝିଅ ରୀନାର ଅନୁରୋଧକୁ ଏଡ଼େଇ ଯିବା ମୋ' ପକ୍ଷରେ ସମ୍ଭବ ନ ଥିଲା । ଏମିତି ଏକ ନିଛାଟିଆ ଜାଗାରେ ରେଜାକ୍ ରହୁଥିଲା ଯେ ରାତି ଅନ୍ଧାରରେ ସେଠାକୁ ଯିବାକୁ ମୋ ମନ ଚାହୁଁ ନଥିଲା । ରେଜାକ୍ ମନରେ ଥିବା ଅମାନୁଷିକ ଘୃଣ୍ୟ ପ୍ରକୃତି ମୋ ମନକୁ ଭୟଙ୍କର ଭାବେ ଆନ୍ଦୋଳିତ କରୁଥିଲା । ତଥାପି ଝିଅ ପାଇଁ ବାପକୁ ସବୁକିଛି କରିବାକୁ ପଡ଼େ । ଶେଷକୁ ଦେଖିଲି, ଯାଉ ଯାଉ ମୁଁ ପହଞ୍ଚିଗଲି ରେଜାକ୍ ଅଲିର ଦୁଆର ପାଖରେ ।

ଖୁବ୍ ଆଦର ଓ ସମ୍ମାନ ଦେଖାଇ ରେଜାକ୍ ମୋତେ ଅଭ୍ୟର୍ଥନା କଲା । ମନେହେଲା, ମୋ' ଆସିବା ବାଟକୁ ସେ ଚାହିଁ ବସିଥିଲା । ରାସ୍ତାର ବତିଖୁଣ୍ଟର ସ୍ୱଚ୍ଛ ଆଲୁଅରେ ମଧ ମୋତେ ଚିହ୍ନିପାରି, ଉତ୍‌ଫୁଲ୍ଲ ମନରେ କହିଥିଲା, ଆଇୟେ, ଆଇୟେ ବାବୁଜୀ, ପଧାରିୟେ, ତସରିବ୍ ଲିଜୀଏ । ଖଟିଆରେ ବସେଇ ନମ୍ରତାର ସହିତ ସେ କହିଥିଲା, ଯେ ରାତ୍ ଅନ୍ଧେରେ ମେ ଇତ୍‌ନେଦୂର ଆନେକୀ ତକ୍‌ଲିଫ୍ ଆପ୍‌ନେ କ୍ୟୋଁ ଉଠାୟୀ । ସୁବହ, ମୈ ଖୁବ୍ ଯାକର ଆପ୍‌କେ ସାଥ ମୁଲାକାତ୍ କରକେ ବାତଚିତ୍ କରନେକା ଇରାଦା ଥା । ଠିକ୍ ହେ, ଖୋଦାକୀ ମେହେରବାନୀ । ଆପକୋ ତକ୍‌ଲିଫ୍ ଉଠାନୀପଡ଼ୀ ।

ମୁଁ କହିଥିଲି, ନାହିଁ ରେଜାକ୍, ମୋ ଝିଅପାଇଁ ଆଜି ତୁମେ ଯାହା କରିଛ ସେଥିପାଇଁ ତୁମ ପାଖକୁ ଆସି ଥରେ ଦେଖା କରିବାରେ କଷ୍ଟ କଣ ? ନାହିଁ ବାବୁଜି, ମୈ ତୋ ଏକ୍ ଇନ୍‌ସାନ ହୁଁ । ମେରେ ସାମ୍‌ନେ ଏକ୍ ଏକ୍‌ସିଡ଼େଣ୍ଟ ହୋଗୟା । ଏକ୍ ଇନ୍‌ସାନ୍ ହୋତେ ହୁଏ ମୁଝେ ତୋ କୁଛ କରନା ହୈ । ବାବୁ ଆପ୍‌କୀ ବେଟୀ ଔର ମେରୀ ବେଟୀ ମେ ଫରକ୍ କ୍ୟା ହୈ ? ମେରୀ ନଜରମେ ତୋ ବଚ୍ଚେଲୋଗ୍ ଫରିସ୍ତେ ହୋତେ ହେଁ । ଏକ ମାସୁମ୍ ଲଡ଼କୀକି ଖିଦ୍‌ମତ୍ କରନେକା ମୌକା କିତ୍‌ନେ ଆଦମୀକୋ ମିଲତା ହେଁ ?

ଲଣ୍ଠନରେ ସେଇ ସ୍ୱଚ୍ଛ ଆଲୁଅରେ ମୁଁ ଦେଖିବାକୁ ଚେଷ୍ଟାକଲି ରେଜାକ୍ ଅଲିର ପାଚିଲା ଆମ୍ବପରି ମୁହଁଟିକୁ । ଯେଉଁ ଲୋକ ଜଣେ ନିରୀହ ବୁଢ଼ୀକୁ ନୃଶଂସଭାବେ ଗୋପନରେ ହତ୍ୟା କରିପାରେ ସେ ଗୋଟିଏ ଆରଣ୍ୟକ ହିଂସ୍ରଜନ୍ତୁ । ଏଭଳି ଜଣେ ହିଂସ୍ର ପଶୁ ମୁହଁରୁ ମୁଁ କ'ଣ ଶୁଣୁଛି ? ଶିଶୁଟିଏ ତା' ନଜରରେ ଜଣେ ଫରିସ୍ତା, ଏଞ୍ଜେଲ, ଦେବ ଶିଶୁ ? ମନକୁ ମନ ମୁଁ ପ୍ରଶ୍ନ କଲି, ଆଉ ଜଣେ ଅସହାୟା ବୁଢ଼ୀ ? ତାକୁ ନିର୍ଦ୍ଦୟ ଭାବେ ହତ୍ୟା କରି ଖତଗଦା ଭିତରେ ପୋତି ଦେବାରେ କେଉଁ ମାନବିକତାର ଚିହ୍ନ ରହିଛି ?

କିନ୍ତୁ ରେଜ୍ଜାକ୍ ଅଲି ସେତେବେଳେ ଭାବାବେଗରେ କହିଚାଲିଥିଲା, ଆପ୍ ଯକିନ୍ କୀଜିଏ ବାବୁଜୀ, ଆପକେ ବେଟୀ, ମେରେ ବେଟୀମେ କୋଇ ଫରକ୍ ନହିଁ । ବଢେଲୋଗ୍ ଫିରିସ୍ତେ ହୋତେ ହେଁ । ବୁଢ଼ୀର ହତ୍ୟାକାଣ୍ଡ ପରେ ରେଜ୍ଜାକ୍‌ର ମୁହଁକୁ ମୁଁ ନିଠେଇ ଚାହିଁବାର ସୁଯୋଗ ପାଇଲି । ମନେହେଲା, ରେଜ୍ଜାକ୍ ଭିତରେ କେବଳ ଆସୁରିକ ସତ୍ତା ନୁହେଁ ମାନବିକ ସତ୍ତାର ଆଭାସ ମଧ୍ୟ ଥିଲା ।

ତା'ପରେ ରେଜ୍ଜାକ୍ ମୋତେ ପଚାରି ଥିଲା, ବାବୁଜୀ, ଅଭି ଆପକେ ବେଟୀ କୈସୀ ହେଁ ?

ମୁଁ କହିଥିଲି, ହଁ, ଡାକ୍ତରଖାନାରୁ ଆଣି ତୁମେ ଘରେ ଛାଡ଼ିଆସିବା ପରେ ରୀନା ଶୋଇପଡ଼ିଥିଲା । ଏବେ ସେ ଭଲ ଅଛି । ବୁଝିଲ ରେଜ୍ଜାକ୍, ଝିଅ ତୁମର ଭାରି ପ୍ରଶଂସା କରୁଥିଲା । କହୁଥିଲା, ରେଜ୍ଜାକ୍ ଚାଚା ସେଠି ନଥିଲେ ମୋ ଅବସ୍ଥା କଣ ହେଇଥାନ୍ତା କିଏ ଜାଣେ ! ରିକ୍ସାରୁ ପଡ଼ିଗଲାପରେ ମୋର ଚେତାବୁଦ୍ଧି ଯାଇଥିଲା । ହାଁ ହାଁ ବାବୁଜୀ, ଆପକୀ ବେଟୀତୋ ବିଲ୍‌କୁଲ୍ ବେହୋସ ହୋ ଗୟୀଥି । ଖୋଦାକେ ମେହେରବାନୀ । ମୈ ୱହାଁ ମହଜୁଦ୍ ଥା । ଆଚ୍ଛା ବାବୁଜୀ, ଅଭି ଆପକୀ ବେଟୀ ଠିକ୍ ହୈ ତୋ ? ସେ ପଚାରିଥିଲା ଏବଂ ରୀନା ଭଲଥିବାର ଶୁଣି ଭାରି ଖୁସି ହେଲା । ତାର ପରିଶ୍ରମ ଯେ ବ୍ୟର୍ଥ ହୋଇନାହିଁ ସେଥିପାଇଁ ସେ ଆଶ୍ୱସ୍ତ ହୋଇଥିଲା ।

କଥାରେ କଥାରେ ମୁଁ ପଚାରିଥିଲି ଆଚ୍ଛା, ରେଜ୍ଜାକ୍ ତୁମେ କିପରି ଅଛ ? ମୋ ପ୍ରଶ୍ନ ଶୁଣି ସେ ଏକ ଦୀର୍ଘଶ୍ୱାସ ଛାଡ଼ି ମୁଣ୍ଡରେ ହାତଦେଇ ବସିଲା । ହଠାତ୍ ଏପରି ବିମର୍ଷ ହେବାର ଦେଖି ମୁଁ ପୁଣି ପଚାରିଲି, ତୁମେ ଏପରି ଦୀର୍ଘଶ୍ୱାସ ଛାଡ଼ିଲ ଯେ, କ'ଣ ହେଲା ?

ବାବୁଜୀ, ଆଦମୀ ଏକ ମର୍‌ତେ ବଦ୍‌ନାମ ହୋ ଜାନେସ ଉସ୍‌କା ଜିନ୍ଦଗୀ ବିଲ୍‌କୁଲ୍ ବର୍‌ବାଦ୍ ହୋ ଯାତା ହୈ । ଉସ୍‌କେ ଜୀନେକା କୋଇ ମତରବ୍ ନହୀ ରହତା ହୈ । ରେଜ୍ଜାକ୍ ଅଲି ଦୁଃଖରେ କହିଥିଲା ।

ୱହ ମୁସୀବତ୍‌କୀ କାହାନୀ ମୈ କ୍ୟା କହୁଁ ? ୱହ ବୁଢ଼ୀକି ମର୍ଡରକେଶ୍‌ମେ ମୁଝେ ଫସାୟା ଦିଆ ଗୟା । ଜେଲ୍‌ସେ ଲୌଟନେକେ ବାଦ୍ ହାମାରା ଜାନ୍‌ପହଚାନ୍‌କେ ଲୋଗ୍‌ଭୀ ମୁଝେ ନଫରତ୍ କର୍‌ନେ ଲଗେ, ମୁଝସେ ମୁହଁ ମୁଡ଼କେ ଚଲେ ଗୟେ । ଦୁନିଆକୀ ନଜର୍‌ମେ ମୈ ଗିର୍‌ଗୟା । ଇସ୍‌ଲିଏ ମେରା ମନ୍‌ମେ ଜୋ ଦୁଃଖ, ଦିଲ୍ କୋ ତକ୍‌ଲିଫ୍ ହୁଆ ଉସେ ମୈ କୈସେ ସମ୍‌ଝାଉଁ ।

ମୁଁ କହିଥିଲି, ରେଜ୍ଜାକ୍, ପୃଥିବୀରେ ଏଇୟା ହିଁ ସ୍ୱାଭାବିକ କଥା । ଲେକିନ୍ ବାବୁଜୀ, ମେ ତୋ ଗୁନାହଗାର ନହାଁ । ମୈ କତଲ ନାହିଁ କିୟା । ମୈ ବିଲକୁଲ୍ ବେକସୁର ଥା ।

ବେକସୁର ! ରେଜାକର କଥା ଶୁଣି ମୁଁ ଆଶ୍ଚର୍ଯ୍ୟ ହେଲି । ସେ କହୁଛି, ସେ ବିଲକୁଲ ବେକସୁର । ସଂପୂର୍ଣ୍ଣ ନିର୍ଦ୍ଦୋଷ । ରେଜାକ୍‌ର କଥା ସଂପୂର୍ଣ୍ଣ ବିଶ୍ୱାସ କରିବାକୁ ମୋତେ କଷ୍ଟ ହେଲା । ସେ ବୁଢ଼ୀର ହତ୍ୟା ଘଟଣାରେ ରେଜାକ୍‌ର ଭୂମିକା ମୁଁ ଜାଣେ ନାହିଁ । ମୁଁ କେବେ କୋର୍ଟକୁ ଯାଇନାହିଁ । ସେଇ ନିଷ୍ଠୁର ହତ୍ୟା ଘଟଣାର ଅନ୍ତରାଳରେ କି ରହସ୍ୟ ରହିଲା କିଏ ଜାଣେ ? ସେ କାହାଣୀ ନ ଜାଣିବା ପର୍ଯ୍ୟନ୍ତ ମୋ ମନର କୌତୂହଳର ନିଆଁ ଲିଭିବ କିପରି ? ତେଣୁ ମୁଁ କହିଥିଲି, ରେଜାକ୍, ସେ ନଖଣ ଆଉ ମଧୁ ଦୁଇଜଣ ଆସାମୀ ବିଚାରରେ ଫାଶୀଦଣ୍ଡର ହୁକୁମ ପାଇଛନ୍ତି । ଶୁଣାଯାଉଛି ସେମାନେ ଉପର କୋର୍ଟରେ ଅପୀଲ କରିବେ ।

ରେଜାକ୍ ତୁରନ୍ତ କହିଥିଲା, ବାବୁଜି, ଅପୀଲ କର୍‌ନେସେ କ୍ୟା ହୋଗା ? ଅନ୍ଧେରା କବ୍‌ତକ୍ ରହେଗା । ସୁବହ ହୋନେସେ ଅନ୍ଧେରା ଛୁଟ୍‌ଯାଏଗା । ସଚାଇ କଭି ଛୁପ୍‌ତି ନହୀଁ ।

ବିସ୍ମୟରେ ମୁଁ ଚାହିଁଲି ରେଜାକ୍‌ର ରେଖାଙ୍କିତ ମୁହଁକୁ । କହିଲି, ମୁଁ ତୁମ କଥା ବୁଝି ପାରିଲି ନାହିଁ, ରେଜାକ୍ ।

ସେ କହିଥିଲା, ବାବୁଜୀ, ଓ୍ୱହ ବୁଢ଼ୀକେ ସାଥ୍ ଏକ୍ ଛୋଟୀସି ଲଡ଼କୀ ଥୀ । ହଁ, ଶୁଣିଥିଲି । ଗେହ୍ଲେଇ ବୋଲି ସାନଝିଅଟିଏ, ସେଇ ବୁଢ଼ୀର ଝିଅର ଝିଅ ନାତୁଣୀ ମୁଁ କହିଥିଲି ।

ହାଁ ବାବୁଜୀ । ଓ୍ୱହୀ ଲଡ଼କୀ ମେରା ଜାନ୍ ବଚାୟା । ରେଜାକ୍ କହିଥିଲା । ବିସ୍ମିତ ହୋଇ ମୁଁ ପଚାରିଥିଲି, କିପରି ?

ତା'ପରେ ସେଇ ବୁଢ଼ୀର ହତ୍ୟା ସମ୍ପର୍କରେ ରେଜାକ୍ ଯେଉଁ ବର୍ଣ୍ଣନା ଦେଇଥିଲା ତାହା ମୋଟାମୋଟି ଏଇପରି :

ସେ କହିଥିଲା, ବାବୁ ଆପଣମାନେ ଜାଣନ୍ତି ମୋର ସାତୋଟିଯାକ ସନ୍ତାନ କେବଳ ଝିଅ । ଏ ଅଞ୍ଚଳର ଲୋକଙ୍କ ସଙ୍ଗେ ଆମର ବାହାସାଦି ଚଳେନାହିଁ । ସେଇ ସୁଦୂର ପଶ୍ଚିମକୁ ଯାଇ ବହୁ କଷ୍ଟରେ ଯୋଡ଼ିଏ ଝିଅକୁ ବାହା ଦେଇଥିଲି । ଏବେ ଅମୀନା ଆଉ ସାକିନା, ଦିହେଁ ବଡ଼ହେଇ ଘରେ ବସିଛନ୍ତି । ଅନେକ ଟଙ୍କା ଦରକାର । ନଖଣ ଆଉ ମଧୁ ଗାଁ ମଫସଲରୁ ଛେଳି ମେଣ୍ଢା ସଂଗ୍ରହ କରି ଆମକୁ ସହରରେ ଯୋଗାଇଥାନ୍ତି । ସେମାନେ, ସେଇ ବୁଢ଼ୀ ପାଖରୁ ଟଙ୍କା କରଜ ଆଣନ୍ତି । ସେମାନେ ଖବର ଦେଲେ, ସେଇ ବୁଢ଼ୀ ପାଖରେ ବହୁତ ଟଙ୍କା ଅଛି । ମହାଜନୀ କାରବାର କରି ସେ ସୁନାରୂପାର ଢ଼େର ଗହଣା ରଖିଛି । ସେମାନେ କହିଥିଲେ, ପାଚିଲା ବୁଢ଼ୀ । କୋଉଦିନ ଟଳିପଡ଼ିବ । ଯେଉଁ ଜାଗାରେ ରହୁଛି, ସେଇଟା ଭାରି ନିଛାଟିଆ ।

ସେମାନଙ୍କ ପାଖରୁ ବୁଢ଼ୀର ଟଙ୍କା ପଇସା କଥା ଶୁଣି, ବାବୁ, ଆପଣଙ୍କୁ ମିଛ କାହିଁକି କହିବି, ମନରେ ଭାରି ଲୋଭ ହେଲା । ଟଙ୍କା ମିଳିଗଲେ ଝିଅ ଦିଟାକୁ ଉଠେଇ ଦେଇପାରିବି । ଦିନେ ସେମାନଙ୍କ ସଙ୍ଗେ ମୁଁ ବୁଢ଼ୀଘରକୁ ଗଲି । ସବୁକିଛି ଆଖିରେ ଦେଖିଲି । ସତକଥା । ପାଚିଲା ବୁଢ଼ୀ, ତିନି କୁଳରେ କେହି ନାହାନ୍ତି । ନିଜର ଧାନ ବିଲ ମଝିରେ ଖୋପଡ଼ି କରି ରହୁଛି ।

ଆମକୁ ଦେଖି, ବୁଢ଼ୀ ତା' ନାତୁଣୀ ଗେହ୍ଲେଇକୁ ଡାକି କହିଲା, ଆଲୋ ଗେହ୍ଲେଇ, ଟିକିଏ ଚା ବନେଇଲୁ । ନଖଣ ସଙ୍ଗେ କିଏ ସବୁ ଆସିଲେଣି । ବୁଢ଼ୀ ଘରେ ଦଶବାର ବର୍ଷର ସେଇ ଝିଅଟିକୁ ଦେଖି ମୁଁ ଚମକି ପଡ଼ିଲି । ସେମାନେ କହିବା ଅନୁସାରେ ବୁଢ଼ୀ ଏକୁଟିଆ ରହୁନଥିଲା । ନଖଣ, ମଧୁ ହେରିକା ଟଙ୍କା କରଜ ନେବା ବିଷୟରେ କଥା ଆରମ୍ଭ କଲେ । କିନ୍ତୁ, ମୁଁ ପଚାରିଲି, ଆଈ, ସେଇ ଝିଅଟି କିଏ ?

ସେଇଟା ପରା ଗେହ୍ଲେଇ, ମୋ ନାତୁଣୀ । ମୋ ଝିଅର ଝିଅ । ପାକୁଆ ପାଟିରେ ଆଈ ମୋତେ କହିଥିଲା ।

ସେ କ'ଣ ତୁମ ପାଖରେ ରହୁଛି ? ମୁଁ ସିଧାସଳଖ ପ୍ରଶ୍ନ କରିଥିଲି । ମୋ ପ୍ରଶ୍ନ ଶୁଣି ବୁଢ଼ୀ ଦୁଃଖରେ ଭାଙ୍ଗିପଡ଼ି କହିଲା, ଗେହ୍ଲେଇ ମୋ ପାଖରେ ରହିବ ନାହିଁତ ଆଉ କାହା ପାଖରେ ରହିବରେ ମିଆଁ ?

ନାନା, ମୁଁ ସେ କଥା କହୁନାହିଁ । ମୁଁ କହୁଥିଲି, ତା'ର ତ ବାପ ମା ଥିବେ ।

ବୁଢ଼ୀ ଦୀର୍ଘଶ୍ୱାସ ଛାଡ଼ି କହିଥିଲା, ମୋ ଝିଅ ଜୋଇଁ ଜୀବନରେ ବଞ୍ଚିଥିଲେ ମତେ ଏତେ ଦହଗଞ୍ଜ ସହିବାକୁ ପଡ଼ିନଥାନ୍ତା । ବୁଝିଲୁ ମିଆଁ, ଯମ ମୁହଁରେ ଅରୁଚା ଧରିଚି । ଝିଅ ଜୋଇଁକୁ ମୋ ଆଖି ଆଗରେ ନେଇଗଲା ଆଉ ମତେ ତା' ମୁହଁକୁ ପିତା ଲାଗୁଚି । ମୁଁ ମରିପାରୁଚି କାହିଁ ? ଖାଲି ଏଇ ଗେହ୍ଲେଇ ପାଇଁ ମୋର ଜିଇଁବା କଥା । ବର୍ଷ କେଇଟା ଗଲେ, ନାତୁଣୀଟାକୁ କାହା ହାତରେ ଛନ୍ଦିଦେଲେ, ମୁଁ ଶାନ୍ତିରେ ଆଖି ବୁଜି ପାରିବି । ସେଇ ଜୋଇଁ ଟୋକା ହାତକୁ ମୋ ଘରଦୁଆର ଜିମା ଦେଇଦେଲେ ମୋର ଛୁଟି ଜାଣିଥାରେ ମିଆଁ ।

ମୁଁ କହିଥିଲି, ତୁ ମିଛଟାରେ ଚିନ୍ତା କରୁଛୁ ଆଈ । ତୋ' ନାତୁଣୀ ପାଇଁ କ'ଣ ଜୋଇଁର ଅଭାବ ହେଇଛି ।

ମୋ କଥା ଶୁଣି, ଘୋଲିଆ ଆଖିରେ ମୋ ମୁହଁକୁ ଚାହିଁଥିଲା ଆଈ । କହିଥିଲା, ମିଆଁ ତୋର ଯୋଉ କଥା । ହଇରେ, ମୋ ନାତୁଣୀ କ'ଣ ତୋ ଝିଅମାନଙ୍କ ପରି ଗୋରୀ ନା ସୁନ୍ଦରିଆ ? ଆଜିକାଲି ଏ ମହରଗ ଯୁଗକୁ ଝିଅଟିଏ ଉଠେଇବା କ'ଣ ସହଜ କଥା ହେଇଚି ?

ସତ କହୁଚି ଆଈ, ତୋ ନାତୁଣୀ ଦେଖିବାକୁ ମୋ ସାନଝିଅ ଅମୀନା ଭଳି । ଦେହର ରଙ୍ଗଟା ଟିକିଏ ନୀରସା, ହେଲେ କ'ଣ ହେବ, ତୋ'ଭଳି ଆଈକୁ ଭଲ ଜ୍ୱାଇଁର ଅଭାବ ହେବନି ।

ସେତିକିବେଳେ ଚା ଗିଲାସ ଧରି ରୋଷେଇ ପିଣ୍ଡାରୁ ଆଇଲା ଗେହ୍ଲେଇ । ବୁଢ଼ୀ କହିଲା, ହେଇ ନେରେ ମିଆଁ ସାଇବ, ଘରେ ଆଉକିଛି ନାହିଁ, ଚା ଟିକିଏ ପିଇଦେ ।

ବୁଢ଼ୀ ଘରୁ ଫେରିଲୁ । ବାଟରେ ନଖଣ ଆଉ ମଧୁ କହିଲେ, ଦେଖିଲୁତ ରେଜାକ୍ ମିଆଁ ? ସେ ଦରମଲା ବୁଢ଼ୀକୁ ଆମେ କଉଦିନୁ ଖତମ କରି ସାରନ୍ତୁଣି । ହେଲେ ତା'ର ସେଇ ନାତୁଣୀ ଟୋକିଟା ଅଡୁଆ କରୁଚି । ଆମେ ଭାବୁଛୁ, ନାତୁଣୀ ଆଉ ଆଈ ଦି'ଟାକୁ ଏକା ସଙ୍ଗେ ଖତମ କରିଦେଲେ କେମିତି ହୁଅନ୍ତା ? କଣ କହୁଚୁ ?

ସେମାନଙ୍କ କଥା ଶୁଣି ମୁଁ ଚମକି ପଡ଼ିଥିଲି । ବୁଢ଼ୀ ମଶାଣିକି ପାଦ କାଢ଼ି ବସଚି । ତା' କଥା ଭିନ୍ନେ ଆଉ ଦଶବାର ବର୍ଷର ଟିକି ଝିଅଟା, ତା' କଥା ଭିନ୍ନେ । ଗେହ୍ଲେଇର ବୟସ ମୋ ସାନ ଝିଅ ଅମୀନାର ବୟସ ହେବ । ମୁଁ ସେଇକଥା ସେମାନଙ୍କୁ କହିଥିଲି । କହିଥିଲି, ୱହ ଛୋଟୀସି ମାସୁମ ଲଡ଼କୀକି ଜାନ ଲେନେସେ କ୍ୟା ଫାଏଦା ? ଉସକେ ସାମନେ ଲମ୍ବୀ ଉମର ହେ । ଚକ୍‌ଲେଟ ୟା ମିଠାଇକା ଲାଲଚ୍ ଦେଖାକର ଉସେ ବଜାର ଲେ ଯାଓ, ମିଠାଇ ଖିଲାଓ, ଫ୍ରକ୍ ଖରିଦ । ଇଧର କାମ ଖତମ ହୋ ଯାଏଗା ।

ମୋ କଥା ସେମାନଙ୍କ ମନକୁ ପାଇଗଲା । କଥା ହେଲା, ସେମାନେ ଗେହ୍ଲେଇକୁ ଭୁଲେଇ ଡାକିନେଇ ଯିବେ ବଜାରକୁ, ଫ୍ରକ କିଣିଦେବେ ।

କିନ୍ତୁ ଗୋଟାଏ ଦୁଶ୍ଚିନ୍ତା ମୋ ମନକୁ ଅସ୍ଥିର କରି ପକେଇଲା । ସେଇ ଅଳ୍ପ ସମୟର ଦେଖାରେ ଗେହ୍ଲେଇ ପ୍ରତି ମୋର କେମିତି ମମତା ଜନ୍ମିଗଲା । ବାପ ମା ଛେଉଣ୍ଡ ନୀରାଶ୍ରୀ ଝିଅଟିଏ । ଘରେ ସେଦିନ ରାତିରେ ମୋର ସାନ ଝିଅ ଅମୀନାକୁ ସାଙ୍ଗରେ ନେଇ ଖାଇବାକୁ ବସିଥାଏଁ । ଅମୀନାକୁ ଦେଖି ଗେହ୍ଲେଇର ସେଇ ନିଷ୍ପାପ ସରଳ ମୁହଁଟା ମୋ ଆଖି ଆଗରେ ଥରକୁ ଥର ଭାସି ଉଠିଲା । ମୁଁ ମୁହଁକୁ ରୋଟି ନେଇ ପାରିଲି ନାହିଁ । ଭାବିଲି, ଆଈକୁ ଆଶ୍ରା କରି ଗେହ୍ଲେଇ ନିରାପଦରେ ବଞ୍ଚିଛି । କିନ୍ତୁ ବୁଢ଼ୀକୁ ଖତମ କରିଦେଲେ, ତାପରେ ସେଇ ଝିଅଟିର ଅବସ୍ଥା କ'ଣ ହେବ ? ବାବୁଜୀ, ତୁମେ ତ ଜଣେ ଝିଅର ବାପ, ତୁମେ ମୋ କଥା ଠିକ୍ ବୁଝି ପାରିବ । ମୋତେ ସେଦିନ ଜଳ ଜଳ କରି ଦିଶିଗଲା । ବୁଢ଼ୀ ଅନ୍ତେ, ସେଇ ଝିଅଟିର କଅଁଳ ଦେହଟାକୁ ଚିଲ ଶାଗୁଣାମାନେ ଖିନ୍‌ଭିନ୍ କରି ପକେଇବେ । ସେ କଥା ଭାବି ମୋର ଭୋକଶୋଷ ଉଭେଇଗଲା । ମୋ ଆଖିକି ନିଦ ଆସିଲା ନାହିଁ ।

ତା' ଆରଦିନ ନଖଣ ଆଉ ମଧୁକୁ ଡାକିଲି । ଏକାନ୍ତରେ ଜଣେଇ ଦେଲି ମୋର ଶେଷ ନିଷ୍ପତ୍ତି । ପହିଲେ ମୋ କଥା ଶୁଣି ଦୁହେଁ ଗୁମକରି ବସିଗଲେ । ପଚାରିଲେ, ମିଆଁ ସାହେବ, ଏଇଟା କ'ଣ ତୋର ଶେଷ କଥା ? ମୁଁ ଜବାବ ଦେଲି, ହଁ ଭାଇ, ଏଇଟା ମୋର ଶେଷ କଥା । ମୋତେ ମାଫ କର । ମୋ ଦେଇ ଏକାମ ହେଇପାରିବ ନାହିଁ । ମୋର ଶେଷ କଥା ଶୁଣି ଦିହେଁ ରାଗରେ ଜଳି ଉଠିଲେ, ମୁଁ କହିଥିଲି ତୁମେ ମୋ ଉପରେ ରାଗିଲେ କ'ଣ ହେବ ? ମୁଁ ଛୁଆପିଲା ଧରି ଏ ସହରରେ ରହୁଛି ଟଙ୍କା ସୁନା ମୋତେ ନମିଳୁ ପଛକେ; ମୁଁ ପାରିବି ନାହିଁ ।

ମୋର ଉତ୍ତର ଶୁଣି, ସେମାନେ ମନଇଚ୍ଛା ମୋତେ ଗାଳିଦେଲେ । କାଫେର, ବେଇମାନ, ନିମକହାରାମ ଯାଇଚ୍ଛା ତାହା ମୋତେ ସେମାନେ କହିଗଲେ । ମୋ ନିଜ ଝିଅମାନଙ୍କ କଥା ମନେପକେଇ ସେମାନଙ୍କର ସବୁ କଥାକୁ ସହିଗଲି । ସେମାନେ ମୋଠୁ ବିଦାୟ ନେଇଗଲେ । ମୁଁ ଶାନ୍ତିରେ ନିଃଶ୍ୱାସ ମାରିଲି ଏବଂ ମନେ ମନେ ବିଚାରିଲି, ଘଟଣାଟା ସେଇଠି ଶେଷ ହେଲା ।

କିନ୍ତୁ ଦିନେ ଶୁଣିଲି, ବୁଢ଼ୀ ଖୁନ୍ ହୋଇଯାଇଛି । ମୁଁ ଆଶ୍ଚର୍ଯ୍ୟ ହେଇଗଲି । କାରଣ ମୁଁ ଭାବିଥିଲି ସେ ଟୋକା ଦିଟାର ମନର ତାକତ ହବନି ବୁଢ଼ୀକୁ ଖୁନ୍ କରିବାକୁ । କିନ୍ତୁ, ଟଙ୍କା ଆଉ ଗହଣାର ଲୋଭ ସେମାନଙ୍କୁ ପାଗଳ କରିଦେଇଥିଲା ବୋଧହୁଏ ।

ରେଜାକର କଥା ଶୁଣି ମୁଁ ସ୍ତମ୍ଭୀଭୂତ ହେଲି । ପଚାରିଲି, ତା'ହେଲେ ପୋଲିସ୍‌ବାଲା ତୁମକୁ ଧରିନେଇ ଯାଇଥିଲେ କାହିଁକି ?

ମୁଁ ସେଇକଥା କହୁଛି ବାବୁଜୀ । ବୁଢ଼ୀର ମର୍ଡର ପରେ ପୋଲିସ୍ ପହିଲେ ନଖଣ ଆଉ ମଧକୁ ଧରିନେଇଗଲେ । ସେମାନେ ମୋ ଉପରେ ବଦଲା ନେବା ମତଲବରେ ପୋଲିସ୍‌କୁ ମୋ ନାଁ କହି ଦେଲେ । ତେଣୁ ସଂଦେହରେ ପୋଲିସ୍ ମୋତେ ଧରିନେଇଥିଲା । କିନ୍ତୁ ବାବୁଜୀ, ମୁଁତ ଗୁନହଗାର ନଥିଲି । ମୁଁ ଥିଲି ବେକସୁର । ତେଣୁ ଖୋଦା ମୋତେ ମେହେରବାନୀ କଲେ ।

କିପରି ? ମୁଁ ପ୍ରଶ୍ନ କଲି ।

ବୁଢ଼ୀର ସେଇ ନାତୁଣୀ, ଗେହ୍ଲେଇ ଆସାମୀକୁ ଚିହ୍ନଟ କରିବା ପାଇଁ ପୋଲିସ୍ ଗେହ୍ଲେଇକୁ ନେଇଯାଇଥିଲା ହାଜତକୁ । ନଖଣ, ମଧୁ ଆଉ ମୋତେ ଆମ ତିନିଜଣଙ୍କୁ ଗେହ୍ଲେଇ ଚିହ୍ନଟ କରିଥିଲା । କହିଥିଲା, ଟଙ୍କା କରଜ ନେବାକୁ ଏମାନେ ଆମ ଘରକୁ ଆଈ ପାଖକୁ ଆସୁଥିଲେ ।

ତା'ପରେ ? ମୁଁ ପଚାରିଥିଲି ।

ଉସ୍‌କେ ବାଦ ଫରିସ୍ତେକୀ କାହାନୀ । ଗେହ୍ଲେଇ କହିଥିଲା, ଘଟଣାଦିନ ତାଙ୍କ ଘରକୁ ନଖଣ ଆଉ ମଧୁ ଦୁଇଜଣ ଯାଇଥିଲେ । ସେଦିନ ସେ ରେଜାକ୍ ଚାଚାକୁ ତାଙ୍କ ଘରେ ଦେଖି ନଥିଲା । ବାସ୍ ସେଇ ଝିଅ ଗେହ୍ଲେଇର ସାକ୍ଷୀ ଉପରେ ମୁଁ ମରଣ ମୁହଁରୁ ରକ୍ଷା ପାଇଗଲି । ମୁଁ କହୁନଥିଲି, ବଚେଲୋଗ ଫରିସ୍ତେ ହୋତେହେଁ । ଓ୍ୱେ କଭି ଝୁଟ୍ ନହୀ ବୋଲତେ ।

ସେତିକିବେଳେ ମୁଁ ଦେଖିଲି, ଝିଅଟିଏ ଚା କପ ଧରି ଠିଆ ହୋଇଚି । କ୍ଷଣକର ଛାଇ ଆଲୁଅରେ ମୋର ମନେ ହେଲା, ମୋ ସାନ ଝିଅ ରୀନା । ପର ମୁହୂର୍ତ୍ତରେ ମୋର ଭୁଲ ଭାଙ୍ଗିଗଲା । ରେଜାକ କହିଲା, ମେରୀ ବେଟୀ, ଅମୀନା । ଚା ଲିଜିୟେ ବାବୁଜୀ । ମୁଁ, ଅମୀନା ହାତରୁ ଚା ନେଲି । ମନେହେଲା, ଅମୀନା ଆଉ ରୀନା ଭିତରେ ତଫାତ କିଛି ନାହିଁ । ଗେହ୍ଲେଇକୁ ମୁଁ ଦେଖିନଥିଲି । କିନ୍ତୁ ଏବେ ମନେ ହେଲା, ଗେହ୍ଲେଇ ମଧ ମୋର ଖୁବ୍ ପରିଚିତ ଝିଅ । ସରଳ ମନ ଆଉ ନିଷ୍ପାପ ହୃଦୟ ଘେନି ତିନିହେଁ ସମାନ । ମୁଁ ଉପଲବଧି କଲି, ରେଜାକ ଅଲିର କଥା ମିଛ ନୁହେଁ । ବାସ୍ତବରେ ସେମାନେ ହିଁ ଫରିସ୍ତା, ଏଞ୍ଜେଲ ଦେବଦୂତ । କାରଣ ନିଷ୍ପାପ ମନ ନେଇ କୋର୍ଟରେ ଦେବଶିଶୁ ଭଳି ଗେହ୍ଲେଇର ଆବିର୍ଭାବ ହୋଇନଥିଲେ ନିଶ୍ଚିତ ମରଣ ମୁହଁରୁ କ'ଣ ରେଜାକ ରକ୍ଷା ପାଇଥାନ୍ତା ।

